# ସାମୟିକ

# ଗଳ୍ପ ସଂକଳନ

( ୩ )

॥ ସଂପାଦକ ॥

ଶ୍ରୀ ଶିଶିର ମହାପାତ୍ର

●

---

॥ ପରିଚାଳନା ସଂପାଦକ ॥

ଶ୍ରୀ ସୁବାସ ମହନ୍ତାବ

●


କାର୍ଯ୍ୟାଳୟ

କୋଣ୍ଡ୍ରା ବଜାର

କଟକ-୩

●

ମୂଲ୍ୟ : ଦୁଇଟଙ୍କା

# ● ଏ ସଂଖ୍ୟାରେ ●

## ।। ଆଲୋଚକ ।।

ଶ୍ରୀନିବାସ ଉଦ୍‌ଗାତା ।। ଅଧ୍ୟାପକ ବୈଷ୍ଣବ ଚରଣ ସାମଲ ।।

## ।। କଥାକାର ।।

ଅଧ୍ୟାପକ ନିମାଇଁ ପଟ୍ଟନାୟକ ।। କୈଳାଶ ଲେଙ୍କା ।। ଅଧ୍ୟାପକ ରତ୍ନାକର ଚଇନି ।। ପୂର୍ଣ୍ଣାନନ୍ଦ ଦାଣୀ ।। ଦେବୀ ମୁଖାର୍ଜୀ ।। ଡଃ ଗୋପାଳ ମିଶ୍ର ।। ଅଧ୍ୟାପିକା ବୀଣାପାଣି ମହାନ୍ତି ।। ଗୌର ପଟ୍ଟନାୟକ (ବେକାର) ।। ସତ୍ୟନାରାୟଣ ମହାପାତ୍ର ।। ବିଜୟିନୀ ଦାସ ।। ଅଧ୍ୟାପକ ହରିହର ମିଶ୍ର ।। ଭଗବାନ ଜୟସିଂହ ।। ଦୟାଲାଲ ଯୋଷୀ ।। ଅଶୋକ କୁମାର ଚନ୍ଦନ ।। ଭାନୁପ୍ରକାଶ ଯୋଷୀ ।। ରମାକାନ୍ତ ରଥ ।। ଅକ୍ଷୟ କୁମାର ମିଶ୍ର ।। କନ୍ହେଇଲାଲ ଦାସ ।। ଅଧ୍ୟାପକ ଧ୍ରୁବ ଖଣ୍ଡିଆ ।। ଧୀରେନ୍ଦ୍ର କୁମାର ।। ଶିଶିର ମହାପାତ୍ର ।। ତ୍ରିଲୋଚନ ମହାକୁଡ଼ ।। କମଳାକାନ୍ତ ପଣ୍ଡା ।। ଧୀରେନ୍ ଆର୍ଯ୍ୟ ।। ଅଧ୍ୟାପକ ଫଣୀ ମହାନ୍ତି ।। ସୁଧାଂଶୁବାଳା ପଣ୍ଡା ।।

## ।। ଅନୁବାଦକ ।।

ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

## ।। ମିନି ରଚନା ।।

ଅଧ୍ୟାପକ ସନତ୍ ଦାସପଟ୍ଟନାୟକ

## ।। ପୁସ୍ତକ ସମୀକ୍ଷା ।।

ସମୀକ୍ଷକ

## ।। ପ୍ରଚ୍ଛଦପଟ୍ଟ ଶିଳ୍ପୀ ।।

ଶିବ ପାଣିଗ୍ରାହୀ

## ।। ମୁଦ୍ରକ ।।

ସ୍ୱର୍ଣ୍ଣପ୍ରଭା ପ୍ରିଣ୍ଟର୍ସ, କଟକ—୨

---

ଏ ସଂଖ୍ୟା "ଗଳ୍ପ ସଙ୍କଳନ" ପାଇଁ ବହୁ ଉପାଦେୟ ଗଳ୍ପ ଓ ପ୍ରବନ୍ଧ ପାଇଥିଲେ ମଧ୍ୟ ସୀମିତ ସ୍ଥାନ ପାଇଁ ସେ ସମସ୍ତ ପ୍ରକାଶ କରିପାରି ନଥିବାରୁ ଦୁଃଖିତ । ପରବର୍ତ୍ତୀ ସଂଖ୍ୟାଗୁଡ଼ିକରେ ତାହା ପ୍ରକାଶ କରିବୁ ।

ସମ୍ପାଦକ




# ପ୍ରଗତିବାଦୀ ସାହିତ୍ୟ

ସମୟର ସ୍ରୋତରେ ଯୁଗର ପରିବର୍ତ୍ତନ ହେଉଅଛି । ବିଭିନ୍ନ ଯୁଗରେ ଏହି ଯୁଗ ସାହିତ୍ୟ ସୃଷ୍ଟି ହୋଇ ଆସୁଛି । ପୌରାଣିକ ଯୁଗରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ସାହିତ୍ୟର ଗତିଧାରାରେ ବହୁତ ପରିବର୍ତ୍ତନ ହୋଇଛି ସତ୍ୟ, ମାତ୍ର କଥାବସ୍ତୁ ପ୍ରାୟ ସମାନ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଗତ ଶହେବର୍ଷର ତଥାକଥିତ ଆଧୁନିକ ସାହିତ୍ୟ ପ୍ରାଚୀନର ପରମ୍ପରାକୁ ହରାଇ ଏକ ନବଦିଗନ୍ତ ବାଛିନେଇଛି । ପ୍ରକୃତରେ ଆଧୁନିକତା ବୋଲି କିଛି ନାହିଁ । ମାତ୍ର ଏହି ତଥାକଥିତ ଆଧୁନିକ ସାହିତ୍ୟ ପ୍ରକୃତରେ ସୃଷ୍ଟି ହୋଇଅଛି ବିଲାତର କୃଷି ବିପ୍ଳବ, ଶିଳ୍ପ ବିପ୍ଳବ ସହ ସାହିତ୍ୟରେ ରେନେସାଁ, ନୂତନ ପୃଥିବୀ ଆବିଷ୍କାର, ଉପନିବେଶ ସ୍ଥାପନ ସହ ବିଭିନ୍ନ ଜ୍ଞାନାନ୍ୱେଷୀଙ୍କ ମଧ୍ୟରେ ଜ୍ଞାନର ସମନ୍ୱୟ ପ୍ରତ୍ୟେକ ସାହିତ୍ୟକୁ ଶୁଭସୂଚନା ଦେଇପାରିଛି । ଏତଦ୍‌ବ୍ୟତୀତ ଦୁଇଟି ବିଶ୍ୱଯୁଦ୍ଧ, ରୁଷ ଓ ଚୀନ୍‌ରେ ଅର୍ଥନୈତିକ ବିପ୍ଳବଠାରୁ ଆରମ୍ଭ କରି ବର୍ତ୍ତମାନର ଚନ୍ଦ୍ରବିଜୟ, ଭିଏତ୍‌ନାମ ଓ ବଙ୍ଗଳାର ମୁକ୍ତିକାମୀଙ୍କର ଯେଉଁ ସଂଗ୍ରାମୀ ମନୋଭାବ ପ୍ରତ୍ୟେକ ସାହିତ୍ୟରେ କିଛିନାକିଛି ପ୍ରଭାବ ପକାଇ ଆସୁଅଛି ।

ସମସାମୟିକ ଓଡ଼ିଆ ସାହିତ୍ୟରେ ମଧ୍ୟ ତଦ୍ରୂପ ଆଭାସ ମିଳେ । କେବଳ ଗଳ୍ପ କାହିଁକି କବିତା ଓ ପ୍ରବନ୍ଧ ରଚନାରେ ମଧ୍ୟ ଦେଖା ଦେଇଛି । ସାଂପ୍ରତିକ ସାହିତ୍ୟରେ ସମାଜ କେଉଁ ଏକ ନିର୍ଦ୍ଦିଷ୍ଟ ସ୍ତର ଦ୍ୱାରା ପରିଚାଳିତ ହେବା ଉଚିତ ତାହା ଦ୍ୱନ୍ଦ୍ୱ ମଧ୍ୟରେ ଚାଲିଛି ।

ବର୍ତ୍ତମାନର ସାମାଜିକ ଅବସ୍ଥା ଯେପରି ହେଲାଣି ସେଥିରେ ଗଣସାହିତ୍ୟ ରୂପକୁ ସମାଜମୁଖୀ କେତେଦୂର କରାଯାଇପାରେ ତାହା ହିଁ ସମସ୍ତଙ୍କର ଲକ୍ଷ୍ୟ । ପ୍ରଚଳିତ ପ୍ରତିକ୍ରିୟାଶୀଳ ଗୋଷ୍ଠୀ ଏବଂ ଉଗ୍ରପନ୍ଥୀଙ୍କ ମଧ୍ୟରେ ଯେଉଁ ସଂଘର୍ଷ ତାହାଦ୍ୱାରା ସମାଜର କୌଣସି ଉନ୍ନତି ସାଧନ ହୋଇପାରୁନାହିଁ ।

ସମସ୍ତଙ୍କର ଜୀବନ ଦର୍ଶନ ବଦଳିବା ପର୍ବ । ଡାରଉଇନଙ୍କ ପୁରୁଣା ତତ୍ତ୍ୱକୁ ଭୁଲିଯିବା ଉଚିତ । କାରଣ ଆଜି ଆଉ ଯୋର ଯାହାର ମୁଲକ ତାହାର ନାହିଁ । ଆଜିର ସମାଜ ଉନ୍ନତ, ଶିକ୍ଷିତ । ସେ ନିଜ ସ୍ୱାର୍ଥକୁ ବଳିଦେଇ ଗଣମୁଖୀ ହୋଇ ଉଠିବା ସ୍ୱାଭାବିକ । ମାତ୍ର ଏ କ୍ଷେତ୍ରରେ ଯେ ପ୍ରତିରୋଧ କରିବ ସେ ହାରିବ । ଯେତେବେଳ ପର୍ଯ୍ୟନ୍ତ ଜଣେ ଖାଇବାକୁ ନ ପାଇଛି, ସେ ପର୍ଯ୍ୟନ୍ତ ସେ ନିଶ୍ଚୟ ବିପ୍ଳବ କରିବ ।

ଏଣୁ ଆଜିର ସାହିତ୍ୟ ସମ୍ପୂର୍ଣ୍ଣ ମୁକ୍ତିକାମୀ । ପ୍ରଗତିବାଦ ହିଁ ଏହାର ଲକ୍ଷ୍ୟ । ମାତ୍ର ପ୍ରଗତିବାଦ କେବଳ ବିପ୍ଳବର ସମ୍ଭବ ନୁହେଁ । ଏହା କେବଳ ନିଜର ନ୍ୟାଯ୍ୟୋଚିତ ଅଧିକାର ସହ ଏକ ମାନସିକ ବିପ୍ଳବଦ୍ୱାରା ହୋଇପାରିବ । ଅର୍ଥାତ୍ ପ୍ରଗତିବାଦୀ ସାହିତ୍ୟ ସେହିପରି ଏକ ଗୋଷ୍ଠୀର ଚିନ୍ତାଧାରାରୁ ବ୍ୟାପକ ହେବା ଉଚିତ । ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ଚିନ୍ତାଧାରା ବର୍ତ୍ତମାନ କବି ଗାଳ୍ପିକଙ୍କର ଶପଥ ହେବା ଉଚିତ ।

ଆଜିର ପ୍ରଗତିବାଦ ହୁଏତ ଭବିଷ୍ୟତରେ ଅନ୍ୟରୂପ ନେଇପାରେ । ଏଣୁ ପ୍ରଚଳିତ ପରମ୍ପରା ଯଦି ଭବିଷ୍ୟତର ପ୍ରଗତି ପାଇଁ ପଥରୋଧ କରେ ତା'ହେଲେ ସେ ପରମ୍ପରାକୁ ଜବରଦସ୍ତ ପରିବର୍ତ୍ତନ କରାଯାଇପାରେ ।

ଏହି ପରିପ୍ରେକ୍ଷୀରେ ପ୍ରକୃତ ସାହିତ୍ୟର ମାନଦଣ୍ଡକୁ ସୁଶୃଙ୍ଖଳିତ କରି ଗଢ଼ିବାକୁ ଚାହିଁଲେ ଦଳୀୟ ମନୋଭାବର ସଂକୀର୍ଣ୍ଣତାକୁ ତ୍ୟାଗକରି ସହଯୋଗୀ ମନୋଭାବ ପୋଷଣ କରିବା ଉଚିତ । ଆଜିର ଗଳ୍ପ ସାହିତ୍ୟ ମଧ୍ୟ ସେହି ଶପଥ ନେଇ ଆଗେଇ ଯାଉ ।

## ପୂର୍ବାଞ୍ଚଳ ଯୁବଲେଖକ ସମ୍ମେଳନ

କଲିକତାରେ ଆସନ୍ତା ଅକ୍ଟୋବର ମାସରେ ହେଉଥିବା ପୂର୍ବାଞ୍ଚଳ ଲେଖକ ସମ୍ମେଳନ ବିପୁଳ ଉତ୍ସାହରେ ଅନୁଷ୍ଠିତ ହେବାକୁ ଯାଉଛି । ଭବିଷ୍ୟତ ପାଇଁ ଏହି ଅପୂର୍ବ ସମାବେଶ ପ୍ରବାସରେ ବନ୍ଧୁ ଯୁବ ସାହିତ୍ୟିକଙ୍କ ପ୍ରାଣରେ ଆଗାମୀ ସାହିତ୍ୟପାଇଁ ଯଥେଷ୍ଟ ଆନନ୍ଦ ଓ ଉଦ୍ଦୀପନା ସୃଷ୍ଟି କରିବ ଏହାହିଁ ଆମର ଆଶା ଓ କାମନା ।

ସମ୍ପାଦକ

---

ଆଲୋଚନା

# ॥ ସାଂପ୍ରତିକ ଓଡ଼ିଆ କଥା ସାହିତ୍ୟର ଅଭିମୁଖ୍ୟ ॥

॥ ଶ୍ରୀ ଶ୍ରୀନିବାସ ଉଦ୍‌ଗାତା ॥

ସାଂପ୍ରତିକ ଶବ୍ଦଟି ଏକ ନିର୍ଦ୍ଦିଷ୍ଟ କାଳର ସୂଚକ ହୋଇଥିଲେ ହେଁ ଏହାର ସ୍ଥିତି ପରିବର୍ତ୍ତନଶୀଳ, କାରଣ ଆଜି ଯାହା ଆଧୁନିକ ତାହା ଆସନ୍ତାକାଲି ପ୍ରାଚୀନ ହୋଇଯିବ । କାଳିଦାସ ଓ ଭଞ୍ଜଙ୍କ କାଳ ତାଙ୍କ ନିମନ୍ତେ ଆଧୁନିକ କିମ୍ବା ସାଂପ୍ରତିକ ନିଶ୍ଚୟ ଯାହା ଆଜି ଆମ ଆଗରେ ପ୍ରାଚୀନ ଏବଂ ଆମର ସାଂପ୍ରତିକ କାଳ ଆସନ୍ତା-କାଲି ଇତିହାସ ଓ କିମ୍ବଦନ୍ତୀର ସାମଗ୍ରୀ ହୋଇଯିବ । ରାଜହଂସ ସଦୃଶ କାଳ, ଦୁଗ୍ଧ ଓ ଜଳର ସ୍ୱାତନ୍ତ୍ର୍ୟ ବୁଝିବ ଓ ସେଇମାନଙ୍କୁ ସ୍ୱୀକୃତି ଦେବ ଯେଉଁମାନେ ସତ୍‌ସ୍ରଷ୍ଟା । ତେଣୁ ଆଜିର ସାହିତ୍ୟ ସୃଷ୍ଟିପ୍ରତି ଆସ୍ଥାହୀନ ଯେଉଁମାନେ, ସେମାନେ ବିଚଳିତ କିମ୍ବା ହତାଶ ହେବା ନିଷ୍ପ୍ରୟୋଜନ । ଆଜିର ସାହିତ୍ୟ ସୃଷ୍ଟି ଏକ ସ୍ଥିତାବସ୍ଥାପରେ ଗତିଶୀଳ ହୋଇଛି, ଆକ୍ରମକ ଓ ସଂକ୍ରାମକ ହୋଇଛି ଏବଂ ଏହି ଗତିଶୀଳତା ସ୍ଥୂଳତାରୁ ସୂକ୍ଷ୍ମତାଭିମୁଖୀ ।

ଆଜି ତେଲ ଲୁଣର ସଂଘାତ ଭିତରେ, ଜୀବନ ଓ ଜୀବିକାର ନିରବଚ୍ଛିନ୍ନ ସଂଘର୍ଷ ଭିତରେ, ମୁଁ, ମୋର ପରିବାର, ମୋତେ ଆଶ୍ରୟ କରି ରହିଥିବା ଅନ୍ୟମାନେ, ଅର୍ଥାତ୍ ବିଭକ୍ତିକୃତ ମୁଁ, ତା ଭିତରେ ଥିବା ମୋର ଇଚ୍ଛା ଆଗ୍ରହ, ଦୋଷ ଦୁର୍ବଳତା, କୁଣ୍ଠା, ଆପଣା ସୀମାତିକ୍ରମ କରି ବେଳେବେଳେ ଆତ୍ମ-ସନ୍ତୋଷ ଲାଭ କରିଥିବା ଓ କରୁଥିବା ବ୍ୟକ୍ତିତ୍ୱ ବୋଧହୁଏ ଆଜିର କଥା ସାହିତ୍ୟ ସୃଷ୍ଟିର କେନ୍ଦ୍ରରେ ।

ଆଜି ସଭ୍ୟତାର ସୃଷ୍ଟି, ଜଳପ୍ରଳୟର କାଳାଠରୁ ଅଣୁ ପ୍ରଳୟ ପର୍ଯ୍ୟନ୍ତ କାହାଣୀ ଯେକୌଣସି ରୂପ ଗ୍ରହଣ କରିଥାଉ ନା କାହିଁକି, ସାହିତ୍ୟର ଅନ୍ୟତମ ସହଜ ଗୁଣ ବହନ କରି ମାନବ ବିକାଶର କ୍ରମକୁ ଏକ ସୂତ୍ରରେ ଯେଉଁପରି ଭାବରେ ଗ୍ରଥିତ କରି ରଖିଛି, ଯାହା ଫଳରେ ମଣିଷର ଲୌକିକ ଅସ୍ତିତ୍ୱ ଓ

ପାରଲୌକିକ ଆକାଂକ୍ଷାକୁ ଯେଉଁପରି ଭାଷା ଦେଇଛି, ହୁଏତ ମଣିଷର ଜୀବନରୁ ସାହିତ୍ୟକୁ ବାଦଦେଲେ ଅସଂଖ୍ୟ ସଭ୍ୟତାର ସ୍ୱର୍ଣ୍ଣ ସୌଧ ଗୋଟିଏମାତ୍ର ମୁହୂର୍ତ୍ତରେ ଧୂଳିରେ ମିଶିଯିବ ।

ମାନବ ଜୀବନରୁ ସାହିତ୍ୟକୁ ବାଦଦେଇ ଚିନ୍ତାକଲେ ପଲକକେ ଭିତରେ ମଣିଷ ନିଃସ୍ୱ ପାଲଟି ଯିବ । ଯେଉଁମାନେ ନିରକ୍ଷର ସେମାନଙ୍କ ନିମନ୍ତେ ବର୍ତ୍ତମାନ ସାହିତ୍ୟର ଥିବା ନଥିବା ହୁଏତ ସମାନ କଥା, ହେଲେ ଦିନଥିଲା ଯେତେବେଳେ ଅତ୍ୟନ୍ତ ବିକୃତ ଅବସ୍ଥାରେ ଭାଷାଥିଲେ ବି, ଲିପିର ଅଭାବରେ ଏଇ ମଣିଷ କଥିତ ସାହିତ୍ୟର ସୃଷ୍ଟି କରୁଥିଲା ଏବଂ ବହୁ ପରୀକ୍ଷା ନିରୀକ୍ଷା ଭିତର ଦେଇ ଗତିଶୀଳ ହୋଇ ଆଜି ତା'ର ବିକଶିତ ରୂପ ଆମର ସମକ୍ଷରେ ବିଦ୍ୟମାନ, ଯା'ର ଐଶ୍ୱର୍ଯ୍ୟ, ଯା'ର ଐନ୍ଦ୍ରଜାଲିକ ଅଭିନବତ୍ୱ ଆମକୁ ଚମତ୍କୃତ କରୁଛି, ଆହ୍ଲାଦିତ କରୁଛି । ଏହା ସାହିତ୍ୟର ପ୍ରାଥମିକ ସାର୍ଥକତା; କିନ୍ତୁ ମଣିଷକୁ ତା'ର ଅଲକ୍ଷରେ ସୁସଂସ୍କୃତ କରିବା ହେଉଛି ତା'ର ବାସ୍ତବିକ ସାର୍ଥକତା । ଏହା ନିଃସଂକୋଚ କୁହାଯାଇପାରେ ଯେ ମଣିଷକୁ ଇତର ପ୍ରାଣୀଠାରୁ ପୃଥକ କରୁଥିବା, ମଣିଷକୁ ଉନ୍ନତି ପ୍ରଦାନ କରୁଥିବା, ତାକୁ ଏକ ସୃଜନଶୀଳ ମାନସିକତା ଦାନକରୁଥିବା ବସ୍ତୁ ହେଉଛି ସାହିତ୍ୟ । କାହିଁକି ନା ଆପଣାର ନ୍ୟୂନତମ ଆବଶ୍ୟକତାକୁ ପ୍ରକାଶିତ କରୁଥିବା, ସାମାନ୍ୟତମ ପ୍ରୟୋଜନକୁ ବ୍ୟକ୍ତ କରୁଥିବା ଭାଷା, ମୌନ ହେଉ ନା କାହିଁକି ପ୍ରତ୍ୟେକ ପ୍ରାଣୀ ପାଖରେ ବିଦ୍ୟମାନ ।

ଭାଷାର ମାଧ୍ୟମରେ ମଣିଷ ଯେତେବେଳେ ଆପଣାକୁ ବ୍ୟକ୍ତ କରିବାକୁ, ଆପଣାକୁ ପ୍ରକାଶିତ କରିବାକୁ ଶିଖିଲା, ସେତେବେଳେ ସେ ଗଦ୍ୟଶୈଳୀକୁ ଗ୍ରହଣ କରିନାହିଁ । ସ୍ରଷ୍ଟା ମନ୍ତ୍ରଦ୍ରଷ୍ଟା, କ୍ରାନ୍ତଦର୍ଶୀ; ତେଣୁ ହୋଇପାରେ ସୃଷ୍ଟିର ପ୍ରାକ୍‌କାଳରେ ସେଇ କ୍ରାନ୍ତଦର୍ଶୀ ପୁରୁଷ ସାଧାରଣ କଥୋପକଥନର ଶୈଳୀର ପରିବର୍ତ୍ତିରେ ଏକ ଭିନ୍ନ ଶୈଳୀର ଅବଲମ୍ବନ କଲା ଓ ଆପଣାର ସନ୍ଦେହ, ଆପଣାର ଜିଜ୍ଞାସା, ଉତ୍ସୁକତାକୁ ପ୍ରକାଶିତ କଲା ଆଦ୍ୟ ସୃଷ୍ଟିରେ । ପରେ ପରେ ଆପଣାକୁ ସେହି ତତ୍ତ୍ୱବୋଧର ଗ୍ରହୀତା ଭାବରେ ପ୍ରତିଷ୍ଠିତ କରି ଯେଉଁ ଆଦର୍ଶର, ସତ୍ୟର ସ୍ୱରୂପର ସାକାର ରୂପ ଦେଇଛି ତାହା କାବ୍ୟ ସାହିତ୍ୟର ଉଷାକାଳରୁ ଏ ଅବଧି ଚିରନ୍ତନ ସତ୍ୟ ହୋଇ ରହିଛି । ସେହି ସାହିତ୍ୟ ପରବର୍ତ୍ତୀକାଳରେ ହୁଏତ ବିଳାସର ସାଧନ ହେଲା ଏବଂ କ୍ରମେ ସାହିତ୍ୟରେ ନୀତିବାକ୍ୟ ଓ ଶୃଙ୍ଗାର ପ୍ରଧାନତା ପରିଲକ୍ଷିତ ହେଲା । ଏହି କାବ୍ୟଧର୍ମ ବହୁକାଳ ଧରି କାବ୍ୟାଦର୍ଶ, କାବ୍ୟର ପରମଧର୍ମ ବା କାବ୍ୟ ସଂପଦ ରୂପରେ ରହିଆସିଛି—ଯାହାର କ୍ରମ ଗଦ୍ୟ ସାହିତ୍ୟରେ ମଧ୍ୟ ଲକ୍ଷ୍ୟ କରିବାର କଥା ।

ହୋଇପାରେ ସୁଦର୍ଶନଙ୍କର ଗୃହପୁଞ୍ଜଙ୍କର ଅଜ୍ଞାନ ଅନ୍ଧକାରକୁ ଦୂର କରିବାକୁ କମନୀୟ ଶୈଳୀ ଓ ମନମୁଗ୍‌ଧକର କାହାଣୀ ଧର୍ମୀ ବିଷ୍ଣୁଶର୍ମାଙ୍କର

ପଞ୍ଚତନ୍ତ୍ର, ଯାହା ବହୁ ଉପାଦେୟ ନୀତିକାହାଣୀର ସମାହାର ଅଥବା ସ୍ୱାମୀଙ୍କର ଅନୁପସ୍ଥିତିରେ ପର ୍ଣୟାସକ୍ତା ଅଭିସାରିକା ରାଣୀଙ୍କୁ ବିରତ କରିବାକୁ ଶୁକ ମୁଖରେ କଥିତ କାହାଣୀ କ୍ରମାନୁସ୍ୟରେ ସେହି ନୀତିବାକ୍ୟ ଓ ଶୃଙ୍ଗାର ପ୍ରଧାନ ନୁହନ୍ତି କି ?

ଏହି ଶୈଳୀ ରୂପକ ଚେହେରାରେ ଯେତେ ଫରକ ଥିଲେହେଁ ସାହିତ୍ୟର ଆତ୍ମାର କୌଣସି ରୂପାନ୍ତର ନାହିଁ । ତେଣୁ ସାହିତ୍ୟର ପ୍ରଗତି ବା ବିକାଶ କହିଲେ କୌଣସି ଏକ ନିର୍ଦ୍ଦିଷ୍ଟ ଶୈଳୀକୁ ବୁଝାଏ ନାହିଁ ଏବଂ ସ୍ଥୂଳଭାବରେ ବିଚାର କରିଗଲେ ବିଶ୍ୱ ସାହିତ୍ୟରେ ଭାବ ବିକାଶର କ୍ରମ ସାମାଜିକ, ରାଜନୈତିକ ଓ ବ୍ୟାବହାରିକ ପରିସ୍ଥିତି ଭେଦରେ ପ୍ରାୟତଃ ସମାନ ।

ଓଡ଼ିଆ ସାହିତ୍ୟରେ ଗଦ୍ୟର ଆଧୁନିକ ସ୍ୱରୂପର ଜନ୍ମଦାତା ଏ ଭାଷାର ସେନାପତି ଫକୀରମୋହନ । କ୍ଷୁଦ୍ର ଗଳ୍ପ ପ୍ରଥମେ ସାହିତ୍ୟରେ ସମ୍ମାନଜନକ ସ୍ଥାନ ଅଧିକାର କରିନଥିଲା । ଊନବିଂଶ ଶତାବ୍ଦୀର ଶେଷଆଡ଼କୁ ଏହା ସାହିତ୍ୟରେ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କଲା । ସେହି ସମୟରେ ୧୮୬୮ ସାଲରେ 'ଲଛମନିଆ ' ଶୀର୍ଷକ ଏକ କ୍ଷୁଦ୍ର ଗଳ୍ପ ଫକୀରମୋହନ ରଚନା କରିଥିଲେ । ଏହା ବୋଧଦାୟିନୀ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଅନ୍ୟାନ୍ୟ ଭାରତୀୟ ଭାଷାରେ ପ୍ରକାଶିତ ପ୍ରଥମ କାହାଣୀଗୁଡ଼ିକର ପ୍ରକାଶନକାଳ ଉପରେ ବିଚାରକଲେ ଏହି ଗଳ୍ପଟି କେବଳମାତ୍ର ଓଡ଼ିଆରେ ଆଦ୍ୟକାହାଣୀ ହେବ ତାହା ନୁହେଁ, ସମଗ୍ର ଭାରତୀୟ ଭାଷାରେ ଆଦ୍ୟ ଗଳ୍ପର ରଚୟିତା ଭାବରେ ଫକୀରମୋହନଙ୍କୁ ପ୍ରତିଷ୍ଠିତ କରାଇବ । ଆମପକ୍ଷରେ ଏହା ଏକ ଅତ୍ୟନ୍ତ ଗୌରବର ବିଷୟ ଯେ ବିଶ୍ୱ-ସାହିତ୍ୟରେ ଗଳ୍ପ ଯେଉଁ ସମୟରେ ଏକ ସମ୍ମାନଜନକ ଆସନ ଲାଭକରୁଛି, ସେହି ସମୟରେ ଓଡ଼ିଆ ସାହିତ୍ୟ ସମଗ୍ର ଭାରତୀୟ ସାହିତ୍ୟରେ ଗଳ୍ପ ରଚନା କ୍ଷେତ୍ରରେ ପ୍ରଥମ ପଦକ୍ଷେପ ନେଇଛି ।

ସବୁ ଯୁଗରେ ସାହିତ୍ୟକୁ ସମାଜର ଏକ ସ୍ୱଚ୍ଛ ଦର୍ପଣ ବୋଲି ବିବେଚନା କରାଯାଇଛି—ଯେଉଁଠି ତତ୍କାଳୀନ ସାମାଜିକ ଚିତ୍ର ପ୍ରତିବିମ୍ବିତ । ଫକୀରମୋହନଙ୍କ ସାହିତ୍ୟର ଅଭିମୁଖ୍ୟ ତେଣୁ ତତ୍କାଳୀନ ସାମାଜିକ ପରିବେଶ ଦ୍ୱାରା ପ୍ରଭାବିତ ହୋଇଛି ଏବଂ ଏହି ଆଦ୍ୟକାହାଣୀକାର ସାଧାରଣ ମଣିଷର ଅତି ସାଧାରଣ ସମାଜର ଆଶା ଆକାଂକ୍ଷା ଅଭିବ୍ୟକ୍ତିକୁ, ହସକାନ୍ଦକୁ ତାଙ୍କ ସାହିତ୍ୟର ମୂଳ ଆଧାର ରୂପେ ଗ୍ରହଣ କରି ତାଙ୍କର ପୂର୍ବବର୍ତ୍ତୀ ତଥା ସମସାମୟିକ ସାହିତ୍ୟର ସୌଖୀନ ବିଳାସିତା, ପ୍ରାଚୁର୍ଯ୍ୟ ପ୍ରମତ୍ତ ରାଜ ରାଜେଶ୍ୱରୀ ପ୍ରଣୟ ବିରହର କଥା, ଆଭିଜାତ୍ୟର ଅପୂର୍ବ ମାଦକତାର ମନୋହର ରୂପଚ୍ଛବି ଅଙ୍କନରୁ ନିବୃତ୍ତ ହୋଇଛନ୍ତି । ତାଙ୍କର ସାହିତ୍ୟ ସାଧାରଣ ମଣିଷର ସୁଖଦୁଃଖର କଥା କହୁଛି; ନିଛକ, ଅତିବାସ୍ତବ ସତ୍ୟକୁ ପ୍ରକାଶିତ କରୁଛି । ଏହି ସମସ୍ତର ରଚନାଶୈଳୀ କାହାଣୀଧର୍ମୀ ହେବା ସ୍ୱାଭାବିକ ।

ବିଭିନ୍ନ ଚରିତ୍ରକୁ ନେଇ ବିଶ୍ଳେଷଣାତ୍ମକ କାହାଣୀ କହିବାର ଧର୍ମକୁ ଏଡ଼ାଇବା ହୁଏତ ପ୍ରାକ୍‌ପ୍ରୟାସ କାଳରେ ସମ୍ଭବପର ହୋଇନାହିଁ—ତେଣୁ ମନେହୋଇଛି ଯେପରି ପ୍ରତ୍ୟେକ କାହାଣୀର ଚିତ୍ର ଏକ ଉପନ୍ୟାସର ସଂକ୍ଷିପ୍ତକରଣ ମାତ୍ର ହୋଇଛି । ଏହି ଶୈଳୀ କେବଳ ନୁହେଁ ଫକୀରମୋହନଙ୍କୁ ତାଙ୍କର ରଚନାର ଅଭିମୁଖ୍ୟ ପ୍ରତିଷ୍ଠା ଦେଇଛି, ଆଦର ଓ ଲୋକପ୍ରିୟତା ଦେଇଛି । ଶୈଳୀର ଅଭୂତ ପରିବର୍ତ୍ତନ ସତ୍ତ୍ୱେ ଓ ନିଚ୍ଛକ ସତ୍ୟ ପ୍ରକାଶ କରିଥିବାର ଫଳସ୍ୱରୂପ ଆଜି ମଧ୍ୟ ତାହା ଚେତନ ଓ ଅବଚେତନ ମନକୁ ଆନ୍ଦୋଳିତ କରୁଛି । ଆମୋଦିତ କରୁଛି । ବ୍ରିଟିଶ ଶାସନକାଳ, ଭାରତରେ ପରାଧୀନତାର, ଅର୍ଥନୈତିକ ଶୋଷଣ, ନାଗରିକ ଅଧିକାର ହନନର ଇତିହାସ, ଯେଉଁ ସମୟରେ ବହୁ ଆଇନ ପ୍ରଣୟନ ଦେଶରେ ଅଭାବ, ଅନାଟନ ଓ ବିଶୃଙ୍ଖଳାର ସୃଷ୍ଟିକରିଛି ଯା'ର ଫଳସ୍ୱରୂପ ଫକୀରମୋହନଙ୍କ ସଚେତନ ବ୍ୟକ୍ତିତ୍ୱ, ତାଙ୍କର ଅମ୍ଳାନ ପ୍ରତିଭା, ତାଙ୍କର କ୍ରାନ୍ତଦର୍ଶୀ ହୃଦୟ ଗଳ୍ପ ଅପେକ୍ଷା ଚରିତ୍ର, ତତ୍କାଳୀନ ସମାଜର ଅସଂଖ୍ୟ ଅଘାତ, ଅନାଚାର ଓ ଶୋଷଣର ସମାଲୋଚନା, ପରିହାସପୂର୍ଣ୍ଣ ବିଦ୍ରୋହ ଓ ବିଦ୍ରୂପ କରିବାକୁ ଆଗ୍ରହୀ ହୋଇଛି ଏବଂ ତାହା ତାଙ୍କର ଗଳ୍ପଉପନ୍ୟାସର ପ୍ରଧାନ ବିଶେଷତ୍ୱ ହୋଇଉଠିଛି । ଫକୀରମୋହନ ଆପଣାର କର୍ତ୍ତବ୍ୟବୋଧକୁ ସାହିତ୍ୟର ଆଭିମୁଖ୍ୟ ଭାବରେ ଗ୍ରହଣକରି ସାର୍ଥକ ହୋଇଛନ୍ତି । ଫକୀରମୋହନଙ୍କଠାରୁ ଆରମ୍ଭ ହୋଇ ଏହି ସାହିତ୍ୟିକ ଅଭିବ୍ୟକ୍ତି ଓଡ଼ିଆ କଥାସାହିତ୍ୟର ପ୍ରାଣଭାବରେ ସ୍ୱାଧୀନତା ପରବର୍ତ୍ତୀ ସାହିତ୍ୟ ସୃଷ୍ଟିର ପର୍ଯ୍ୟାୟ ପର୍ଯ୍ୟନ୍ତ ପରିଲକ୍ଷିତ ହୋଇଛି । ସ୍ୱାଧୀନତା ପୂର୍ବବର୍ତ୍ତୀ ସାହିତ୍ୟ ବିଭିନ୍ନବାଦର ସାମୟିକ ପ୍ରଭାବରେ ପ୍ରଭାବିତ ହୋଇ, ଦେଶପ୍ରାଣତାର ପୃଷ୍ଠରେ ରଞ୍ଜିତ ହୋଇ, ଶୈଳୀର ଅନେକ ପରିବର୍ତ୍ତନ ଅବଲମ୍ବନ କରି ବର୍ତ୍ତମାନ କାଳର ସୂଚକ ହୋଇଛି ମାତ୍ର ।

ବ୍ୟକ୍ତିର ମୃତ୍ୟୁ ଅନିବାର୍ଯ୍ୟ,— ହେଲେ ବିଚାରର, ବ୍ୟକ୍ତିତ୍ୱର ମୃତ୍ୟୁ ନାହିଁ । ଚିନ୍ତାର ଐଶ୍ୱର୍ଯ୍ୟ, ବିଚାରର ଅପବର୍ଗ ଓ ଆଦର୍ଶ ପରମ୍ପରାରୁ ମିଳେ । ଆଜି ମଣିଷର ତତ୍କାଳୀନ ଅବସ୍ଥା, ସ୍ଥିତି ଓ ସ୍ୱାଧୀନତା ଭିତରେ ବଞ୍ଚିରହି ତା'ର ଭିତରେ ହୁଏତ ଚିରନ୍ତନ, ବିକଶିତ ଓ ନୂତନ ହେବାର ଅନିବାର୍ଯ୍ୟତାକୁ ଆପାତତଃ ପ୍ରବୃତ୍ତି ଭଳି ମଣିଷ ଗ୍ରହଣ କରେ । ଏହି ପ୍ରବୃତ୍ତି ମଣିଷକୁ ଚିନ୍ତାଶୀଳ କରେ, ବିଚାରବନ୍ତ କରେ । ତେଣୁ ସାହିତ୍ୟକାର ଆପେ ଆପେ ତା'ର ପ୍ରକାଶଭଙ୍ଗୀ, ଶୈଳୀ, ଚିନ୍ତାଧାରାରେ ହଠାତ୍ କିଛିଟା ସ୍ୱତନ୍ତ୍ର୍ୟ ଖୋଜିବସେ ଓ ତାହାହିଁ କରେ ବହୁ ପରୀକ୍ଷା ନିରୀକ୍ଷାର ସୂତ୍ରପାତ । ଯାହା ଶିଳ୍ପଶୈଳୀ ଓ ଭାବ ଉଭୟ କ୍ଷେତ୍ରରେ ଘଟିଥାଏ ।

କୌଣସି ନିର୍ଦ୍ଦିଷ୍ଟ ଶୈଳୀ କିମ୍ବା ଷ୍ଟାଇଲ ଉପରେ ମୋର ବିଶ୍ୱାସ ନାହିଁ । କାରଣ କୌଣସି ଏକ ନିର୍ଦ୍ଦିଷ୍ଟ ଷ୍ଟାଇଲ ସମ୍ପୂର୍ଣ୍ଣରୂପେ ଏକ କାଳର ପରିଚୟ

ଦେବାକୁ ସମଥ ନୁହ ଏବଂ ସର୍ବସମ୍ମତକ୍ରମେ ତାହା ପ୍ରତ୍ୟେକ ସ୍ରଷ୍ଟା ପକ୍ଷରେ ଅବଲମ୍ବନୀୟ ହୁଏନାହିଁ । ପ୍ରତ୍ୟେକ ସ୍ରଷ୍ଟାର ସ୍ୱତନ୍ତ୍ର ପ୍ରକାଶଭଙ୍ଗୀ ରହିଛି ଓ ସେହି ଭଙ୍ଗୀର ମୌଳିକତାହିଁ ତା'ର ପରିଚୟ ଦେଇଥାଏ ଓ ଯେତେବେଳେ ସେ କୌଣସି ସାହିତ୍ୟ ସୃଷ୍ଟିର ବାହ୍ୟରୂପ ଦ୍ୱାରା ପ୍ରଭାବିତ ହୋଇ ତାକୁ ଗ୍ରହଣ କରେ ସେତେବେଳେ ତାହା ସାର୍ଥକ ନ ହୋଇ କେବଳମାତ୍ର ଅନୁକରଣ ହୋଇ ରହିଯାଏ । ତେଣୁ ଆମେ ଯଦି ଏହି ଶୈଳୀ ବା ଟେକ୍‌ନିକକୁ କୌଣସି ନିର୍ଦ୍ଦିଷ୍ଟ କାଳର ସାହିତ୍ୟ ସୃଷ୍ଟିର ଅଭିମୁଖ୍ୟ ବୋଲି ଧରିବସୁ ତାହାହେଲେ ବୋଧହୁଏ ଭୁଲହେବ ।

ବଣୁଚ୍ଚ କାହାଣୀଠାରୁ ଆରମ୍ଭକରି ବିଷୟବସ୍ତୁହୀନ ଗଳ୍ପ, ଭାଷା ମଂଜୁଳ ଗଳ୍ପ, ସ୍ୱର ଓ ଧ୍ୱନି ସର୍ବସ୍ୱଗଳ୍ପ, ଲେଖକର ଜୀବନ ଦର୍ଶନ ଉପରେ ଆଧାରିତ ଗଳ୍ପ, ଦୁର୍ବୋଧ ଓ କ୍ଲିଷ୍ଟ ଶୈଳୀପ୍ରବାହୀ ସାଙ୍କେତିକ ଗଳ୍ପ, ରାଜନୈତିକ କମ୍ବା ଧର୍ମାଭିମୁଖ୍ୟ ନେଇ ରଚିତ ଗଳ୍ପ ଏବଂ ତାର ସଙ୍ଗେ ସଙ୍ଗେ ବିରାଗୀ ଉତ୍ତେଜକ ଗଳ୍ପ ବିଭିନ୍ନ ସମୟରେ ଲିଖିତ ହେଉଛି ଓ ହୋଇଛି । କେତେକ ନିଜର ପୃଷ୍ଠଭୂମି ଉପରେ ଓ କେତେକ ହୁଏତ ଆଧୁନିକ ଆନ୍ତର୍ଜାତିକ ପୃଷ୍ଠଭୂମି ଉପରେ ଲିଖିତ । ଏସବୁ ଶ୍ରେଣୀର ଗଳ୍ପକୁ ଆପଣାକୁ ପ୍ରକାଶିତ କରିବାର ମାଧ୍ୟମ ବୋଲି କୁହାଯାଇପାରେ; ଯା'ର ଉତ୍‌ଥାନ ପତନ ବିଭିନ୍ନ ସମୟରେ ଆମେ ଓଡ଼ିଆ ସାହିତ୍ୟର ବିଗତ ତିନିଦଶକ ଭିତରେ ବି ଦେଖିପାରିବା । ଉଦାହରଣ ସ୍ୱରୂପ ପ୍ରତିଷ୍ଠିତ ଗାଳ୍ପିକ ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତିଙ୍କୁ ନିଆଗଲେ ଆଜିର ଅକାହାଣୀ ଗୋଷ୍ଠୀର କାହାଣୀ ଖବରେ ତାଙ୍କର 'ମହାନଗରୀର ରାତି 'କୃଷ୍ଣଚୂଡ଼ା' 'ରୁଟି ଓ ଚନ୍ଦ୍ର' ପ୍ରଭୃତି ଗତ କୋଡ଼ିଏବର୍ଷ ତଳେ ଲିଖିତ; ତେଣୁ ସେ ଦୃଷ୍ଟିରୁ ଏ ଶିଳ୍ପ ଶୈଳୀ ବି କୋଡ଼ିଏବର୍ଷ ତଳର । ହେଲେ ପାଠକ କାହାଣୀ ଚାହେଁ । ଅକାହାଣୀ ହୁଏତ କଥାକାରଙ୍କୁ ସନ୍ତୋଷ ଦେଇପାରେ ମାତ୍ର, ଗଳ୍ପର ଶ୍ରୋତାକୁ ନୁହେଁ । କାରଣ ଏଥିରେ ଗଳ୍ପାଗ୍ରହୀ ପାଠକ ସମାଜର ତୃଷା ମେଣ୍ଟେନାହିଁ । ଫଳତଃ ଆଜିମଧ୍ୟ କଥାକାର ବେଳେବେଳେ ଅକାହାଣୀ ଭିତରୁ ବାହାରି ଆସି ଫେରିଯାଉଛି କମ୍ୟୁନିଟିକୁ, ଇତିହାସକୁ । ତେଣୁ ନିର୍ଦ୍ଦିଷ୍ଟ ଏକ ଶୈଳୀକୁ ସାହିତ୍ୟର ସାଂପ୍ରତିକ ସ୍ୱରୂପ କହିବା କୌଣସିମତେ ସମୀଚୀନ ନୁହେଁ ।

ସ୍ରଷ୍ଟାର ହୃଦୟର ଗଭୀରତମ ପ୍ରଦେଶରୁ ଯେପରି ଭାବର ଉତ୍ସ ଛୁଟେ ସେପରି ଗଭୀର ସ୍ତରରୁ ସେହି ଭାବପ୍ରକାଶର ଶୈଳୀମଧ୍ୟ ଆସିଥାଏ । ଏହି ଶୈଳୀ ତା'ର ପ୍ରାଜ୍ଞତା, ଚତୁରତା, ଅନୁଭବ ଓ ମନନଶୀଳତାର ସ୍ପର୍ଶଲାଭ କରି ମନୋଜ୍ଞ ହୋଇଥାଏ ଓ ପାଠକ ହୃଦୟରେ ରସ ସଞ୍ଚାର କରିଥାଏ ।

ସାହିତ୍ୟିକ ଶଙ୍କା ଦୃଷ୍ଟିରୁ, ଆଙ୍ଗିକ ଦୃଷ୍ଟିରୁ କଥାସାହିତ୍ୟର ଦୁଇଟି ପ୍ରଧାନ ବିଭାଗ, ଉପନ୍ୟାସ ଓ କାହାଣୀର ସ୍ୱରୂପ ଯାହା ହୋଇଥାଉନା କାହିଁକି, ପ୍ରଧାନତଃ

ଗଳ୍ପରେ ବ୍ୟକ୍ତିର ଦୃଷ୍ଟିରୁ ସମାଜର ବିଚାର ହୋଇଥାଏ ଏବଂ ଉପନ୍ୟାସରେ ସମାଜ ଦୃଷ୍ଟିରୁ ବ୍ୟକ୍ତିର ବିଚାର ହୋଇଥାଏ ।

ଆଜି ମଣିଷର ଦୁଃଖବାଦ, ବିରହ ମିଳନ, ଆନନ୍ଦ ଅଶ୍ରୁ, ପ୍ରେମ ଓ ପରିଜନସୁଲଭ ଭାବ, ନିଷ୍ଠା ଓ ଦାୟିତ୍ୱ ବୋଧ ସେପରି ଅପରିବର୍ତ୍ତିତ ରହିଛି —ହେଲେ ମଣିଷ ଭିତରେ ଭିତରେ ବଦଳି ଯାଇଛି ଅନେକ । ଏଇ ଦୁଃଖବାଦକୁ ପ୍ରକାଶିତ କରିବାର ସ୍ୱର ବି ବଦଳିଛି । ଯନ୍ତ୍ରଣା ସହିବାର ଧୈର୍ଯ୍ୟ ଅଛି ହେଲେ ମଧ୍ୟ ସେଇ ଯନ୍ତ୍ରଣା ଭିତରେ ମଣିଷ ଆତ୍ମମନ୍ଥନ କରୁଛି । ଅନେକ ଭିଡ଼ ଭିତରେ ମଣିଷ ଆଜି ଖୋଜୁଛି ନିଜକୁ, ଆପଣାର ବ୍ୟକ୍ତିତ୍ୱକୁ, ଦୁନିଆ ଆଗରେ ଦଣ୍ଡାୟମାନ ହୋଇଥିବା ଆପଣାର ଅସ୍ତିତ୍ୱକୁ । କଳ୍ପନାର ଭୌଗୋଳିକ ସୀମା ନାହିଁ—ଭାବ ଆଦାନ ପ୍ରଦାନରେ ଦୂରତ୍ୱ ନାହିଁ – ଫଳରେ ମଣିଷର କଳ୍ପନା କ୍ଷେତ୍ର ସର୍ବବ୍ୟାପୀ ହୋଇଛି—ଦୂରତ୍ୱହୀନ, ସୀମାହୀନ ହୋଇଛି । ସାହିତ୍ୟ ସ୍ରଷ୍ଟା ସେହି ସୀମାର ସ୍ଥୂଳରେଖାକୁ ଅତିକ୍ରମ କରିସିବା ନିତାନ୍ତ ସ୍ୱାଭାବିକ, ହେଲେ ମଣିଷର ଏଇ ବଦଳି ଯାଇଥିବା ବ୍ୟକ୍ତିତ୍ୱ, ତା'ର ଚେତନତା, ତା'ର ନିଷ୍ଠା ଓ କର୍ତ୍ତବ୍ୟବୋଧ ଭିତରେ ଯେଉଁପରି ସ୍ଥୂଳତ୍ୱ ହରାଇ ହୋଇଛି ସୂକ୍ଷ୍ମ । ଏକର ଭିତରେ ବହୁର ସନ୍ଧାନ କରୁଛି । ଫଳତଃ ସମାଜର ସେଇ ଚିରାଚରିତ ବ୍ୟତିକ୍ରମକୁ, ପ୍ରେମ ମିଳନ, ବିରହ ବିଳାପ, ଆବେଗ ଅନୁରାଗକୁ ଗ୍ରହଣ କରୁଛି ଏକାନ୍ତ ଭାବେ ନିଜର କରି···ଏବଂ ଆପଣାକୁ ଆପଣାର ଆତ୍ମ ବିଶ୍ଲେଷଣର ମାଧ୍ୟମରେ ଖୋଜୁଛି । ସେଇ ହୋଇଛି ଅଧୁନା କଥା ସାହିତ୍ୟର ଧର୍ମ । ଆପଣାର ନିଷ୍ଫଳ ବେଦନା ବୋଧକୁ ଆପଣାର ସଫଳ ଆନନ୍ଦକୁ, ଆପଣାର ପ୍ରକୃତ ଆତ୍ମାର ସ୍ୱରୂପକୁ ଏକାନ୍ତ ଆପଣାର ଭାବ ଏକାକୀ ଆପଣା ଭିତରେ ଖୋଜୁଛି ଆଜିର ବ୍ୟକ୍ତି । ଫଳତଃ ଏହି ଆତ୍ମିକ ଅନ୍ୱେଷଣହିଁ ହୋଇଛି ଆଜି ସାହିତ୍ୟର ପ୍ରାଣ । ବିଷୟ ବସ୍ତୁ ନିହାତି ଅବଲମ୍ବନ ମାତ୍ର । ଏହି ଆତ୍ମ ବିଶ୍ଲେଷଣ ସାଂପ୍ରତିକ କଥା ସାହିତ୍ୟ ସ୍ରଷ୍ଟାର ଜିଜ୍ଞାସା ବୋଧ, ଗଭୀର ଆଗ୍ରହ, ଆବେଗ ଓ ଉନ୍ମାଦନାରୁ ଜାତ । ଏହି ବିଶ୍ଲେଷଣ ତା'ର ସ୍ୱପ୍ନ ଓ ସ୍ୱପ୍ନଭଙ୍ଗର ତପ ଓ ତପୋଭଙ୍ଗର ମୋହ ଓ ମୋହଭଙ୍ଗର ପରିସ୍ଥିତି ଯାହ ସମାଜରେ, ଯାହା ତା'ର ପରିପେକ୍ଷିରେ ତା'ର ବ୍ୟକ୍ତିଗତ ସତ୍ତାର ସ୍ଥିତିର ଅନ୍ୱେଷଣ କରୁଛି ଏବଂ ସେଇ ବ୍ୟକ୍ତିଗତ ସତ୍ତା ଆପେ ଆପେ ପ୍ରତୀକ ପାଲଟି ଯାଉଛି ସମଗ୍ର ସମାଜର । ମଣିଷ ଜାଣେ ଯେ ଜଙ୍କ ବୋଲାହୋଇ କେତୋଟି ମୁହୂର୍ତ୍ତ ଲାଗି ନେଇ ନାମ ଲାଇଟ ତଳେ ଆସ୍ଫାଳନ କରୁଥିବା ମଣିଷଟି ସମ୍ରାଟ ନୁହେଁ । ତେଣୁ ବୋଧହୁଏ ତା ଜେକଲ ଓ ମିଷ୍ଟର ହାଇଡ ଉଭୟେ ସମାନ ହୋଇଯାଇଛନ୍ତି, ଏକ ହୋଇ ଯାଇଛନ୍ତି । ସମାଜର ଯେଉଁପରି ଦୁଇଟି ଦିଗ, ଜଗତର ପ୍ରତ୍ୟେକ ବସ୍ତୁର ଯେଉଁପରି ଦୁଇଟି ଦିଗ, ସାହିତ୍ୟର ମଧ୍ୟ ସେଇପରି ଦୁଇଟି ଅବସ୍ଥା—ଗୋଟାଏ ଗତିଶୀଳ ଏବଂ

ଅନ୍ୟଟି ସ୍ଥିତିଶୀଳ । ଏକ ଅବସ୍ଥା ସତ୍ତମାସ୍ଥ ନହେଲେ ବିକ୍ଷୋଭ ହେବା ସ୍ୱାଭାବିକ । ଗତିଶୀଳତାର ଫଳରେ ବିଭିନ୍ନ ଚିନ୍ତାର ଆବିର୍ଭାବ ହୋଇଥାଏ, ହେଲେ ତାହା ମଧ୍ୟ ଏକ ସୀମାରେ ପହଞ୍ଚି ଶାନ୍ତ ହୋଇଯାଏ ଏବଂ ସ୍ଥିତିଶୀଳତା ସମାଜକୁ ପ୍ରଭାବିତ କରେ କିଛି ସମୟ ପାଇଁ । ଏଇ ଗତିଶୀଳତା ଓ ସ୍ଥିତିଶୀଳତା ଭିତରୁ କେବଳମାତ୍ର ଗୋଟିଏ ସ୍ୱାଦ୍ୟ ବା କାମ୍ୟ ନୁହନ୍ତି କାରଣ ଜଣଙ୍କର ସ୍ଥାୟିତ୍ୱ ଆପେ ଆପଣାଛାଏଁ ତାକୁ ଅସ୍ୱାଦ୍ୟ କରିଦିଏ । ଆଜି ଫକୀରମୋହନଙ୍କଠାରୁ ସାହିତ୍ୟ ଏକ ସ୍ଥିତିଶୀଳତା ଭିତର ଦେଇ ଏପର୍ଯ୍ୟନ୍ତ ଗତି କରିକରି ବୋଧହୁଏ ସ୍ୱାତନ୍ତ୍ର୍ୟୋତ୍ତର ସାହିତ୍ୟ ଗତିଶୀଳ ହୋଇଛି । ବସ୍ତୁରର ସୂକ୍ଷ୍ମ ବୋଧ ଫଳରେ ହୋଇଛି ସାଙ୍କେତିକ... ସିଂବଲିକାଲ...ଦୁର୍ବୋଧ, ହେଲେ ଉନ୍ନତ ଗତିବନ୍ତ ଓ ଆବେଗ ପରିପୂର୍ଣ୍ଣ, ଆସ୍ଥାବାନ । ସ୍ଥୂଳତାର ଆବରଣ ଫିଙ୍ଗିଦେଇ ହୋଇଛି ସୂକ୍ଷ୍ମ...ଗୋଟିଏ ଦୁଇଟି ରେଖାଟାଣି ବିଚିତ୍ର କେନଭାସକୁ ସ୍ୱନ୍ଧି ଗଟର ସହିତ କହୁଛି ଏଇ କଟକ...ଏଇ କଲିକତା...ଏଇ କାନାଡ଼ା...ଏଇ ପ୍ରେମ...ବିରହ...ସ୍ନେହ...ଯୌନାବେଗ... ...ଯୌବନ...ଜରା ..ବାର୍ଦ୍ଧକ୍ୟ...ଗ୍ରୀଷ୍ମ ଓ ବସନ୍ତ...ମୃତ୍ୟୁ ଓ ଜନ୍ମ...ମୃତ୍ୟୁ ଓ ପୁନର୍ଜନ୍ମ...ଆଲୋକ...ଅନ୍ଧକାର...ସୃଷ୍ଟି ଓ ବିଲୋପ... । ତା' ଭିତରେ ମୁଁ, ମୁଁ ବିଦ୍ୟମାନ, ମୋର ସତ୍ତା ବିଦ୍ୟମାନ । ମୁଁ, ମୁଁ, ଆପଣ, ଆପଣମାନେ, ସେମାନେ... ଭିଡ଼...ଅଗଣିତ ଭିଡ଼ ଓ ସେଇ ଭିଡ଼ ଭିତରେ ହଜିଯାଉଛି ନିଜେ ନିର୍ଲିପ୍ତ, ନିର୍ଦ୍ୱନ୍ଦ୍ୱ, ନିର୍ବିକାର, ନିର୍ବିକଳ୍ପ ।

କନ୍‌ଭିକ୍‌ସନ୍ ଓ ଫେଥ୍ ଦୁଇଟି ଅଲଗା ଜିନିଷ । ପ୍ରତ୍ୟେକ ସାହିତ୍ୟକାରର ସ୍ୱତନ୍ତ୍ର ଫେଥ୍ ସ୍ୱତନ୍ତ୍ର କନ୍‌ଭିକ୍‌ସନ୍ । ଗୋଟିଏ ବ୍ୟକ୍ତି ବିଶେଷର ସାହିତ୍ୟ ସୃଷ୍ଟି ସେ ସାହିତ୍ୟର ସାମଗ୍ରିକ ଆଭିମୁଖ୍ୟକୁ ସୂଚିତ କରେନାହିଁ । ଫଳତଃ ବ୍ୟକ୍ତିଗତ ଭାବରେ କାହାର ସାହିତ୍ୟ ସୃଷ୍ଟିକୁ କିମ୍ବା କୌଣସି ନିର୍ଦ୍ଦିଷ୍ଟ ସାହିତ୍ୟକୃତିକୁ ଆଖି ଆଗରେ ରଖି ମୁଁ ମୋ କଥା କହୁନାହିଁ । ସାମ୍ପ୍ରତିକ ଓଡ଼ିଆ କଥା ସାହିତ୍ୟ କ୍ଷେତ୍ରରେ ବହୁ ପରୀକ୍ଷା ନିରୀକ୍ଷା ସଫଳତା ସହିତ ଚାଲିଛି...ମୋର ସେଇ କଥାକାର ବନ୍ଧୁମାନେ କହିବେ...ମନର ଭିତରେ କେଉଁଠି ହଜିଛନ୍ତି ସେମାନେ, କେଉଁଠି ସେମାନେ ସତ୍ୟର ସନ୍ଧାନରେ ବିହ୍ୱଳ, କେଉଁଠି ସେମାନେ ଆତ୍ମଭରି ବିଷପାନ କରି ନୀଳକଣ୍ଠ, କେଉଁଠି ଜାଗ୍ରତ, କେଉଁଠି ସୁପ୍ତ । ... ତାଙ୍କ ସୃଷ୍ଟିର କେଉଁ ଅଂଶ କନ୍‌ଭିକ୍‌ସନ, କେଉଁ ଅଂଶ ଫେଥ୍ ।



# ॥ ସାଂପ୍ରତିକ ଗଳ୍ପ ଚେତନା ॥

॥ ଅଧ୍ୟାପକ ବୈଷ୍ଣବ ଚରଣ ସାମଲ ॥

ସାଂପ୍ରତିକ ବିଶ୍ୱସାହିତ୍ୟରେ କ୍ଷୁଦ୍ରଗଳ୍ପ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଆଜିର ଜଗତ ଦ୍ରୁତ ପରିବର୍ତ୍ତନଶୀଳ । ଗୋଟିଏ ମୁହୂର୍ତ୍ତର ସ୍ୱର ପର-ମୁହୂର୍ତ୍ତରେ ପରିବର୍ତ୍ତିତ ହୋଇଯାଉଛି । ବିଜ୍ଞାନର ଅଭିନବ ପ୍ରଗତି ସଙ୍ଗେ ସଙ୍ଗେ ଆଜିର ବିଶ୍ୱ ଖୁବ୍ ଛୋଟ ହୋଇଯାଇଛି । ତେଣୁ ସମଗ୍ର ବିଶ୍ୱମାନବର ଚିନ୍ତା ଆଜିର ସାହିତ୍ୟରେ ସମାନ ଭାବରେ ପ୍ରକାଶିତ ହେଉଛି । ଏହି ଚିନ୍ତା ପୁଣି ପ୍ରତ୍ୟେକ ମୁହୂର୍ତ୍ତର ଭାବଧାରାରେ ଅନୁରଞ୍ଜିତ । ପ୍ରତ୍ୟେକ ମୁହୂର୍ତ୍ତର ଗୁରୁତ୍ୱରେ ଏହା ଗରିୟାନ । ଏଇଥିପାଇଁ ପ୍ରତ୍ୟେକ ମୁହୂର୍ତ୍ତ ଆଜି ମଣିଷ ପକ୍ଷରେ ମୂଲ୍ୟବାନ । ଆଜିର ସାହିତ୍ୟିକ ତେଣୁ ଗଭୀର ଅନୁଭୂତି ବ୍ୟଞ୍ଜକ ମୁହୂର୍ତ୍ତକୁ କ୍ଷୁଦ୍ରଗଳ୍ପରେ ହିଁ ଚକିତ-ଉଦ୍ଭାସିତ କରେ । ଗୋଟିଏ ମୁହୂର୍ତ୍ତ ଚାଲିଗଲା ପରେ, ସେ ମୁହୂର୍ତ୍ତର ଆଲୋଡ଼ନ ହୁଏ ତ ପର ମୁହୂର୍ତ୍ତର ଉତ୍ତାଳ ତରଙ୍ଗମାଳାରେ ଜଳର ବୁଦ୍‌ବୁଦ ଭଳି ଲୀନ ହୋଇ ଯାଇପାରେ । ଶତ ଚେଷ୍ଟା କଲେ ବି ସେ ମୁହୂର୍ତ୍ତ ଆଉ ଫେରେନା । ଏଇଥିପାଇଁ କ୍ଷୁଦ୍ରଗଳ୍ପର ଲେଖକ ସାଂପ୍ରତିକ ସାହିତ୍ୟରେ ଗୌରବାନ୍ୱିତ; ଯେହେତୁ ସେ ସେହି ଫେନିଳ ତରଙ୍ଗାୟିତ ମୁହୂର୍ତ୍ତର ଗଭୀର ଆଲୋଡ଼ନର ଅନ୍ତଃଚେତନାକୁ ରୂପାୟିତ କରେ । ଏହି ରୂପାୟନ କ୍ଷୁଦ୍ରଗଳ୍ପରେ ଯେତେ ବାସ୍ତବ, ଯେତେ ଜୀବନ୍ତ—ସାହିତ୍ୟର ଅନ୍ୟ କୌଣସି ବିଭାଗରେ ଏତେ ସମ୍ଭବ । ନୁହେଁ । ଏଇଥିପାଇଁ ଆଜିର କ୍ଷୁଦ୍ରଗଳ୍ପ ଲେଖକ ବର୍ତ୍ତମାନର ମୁହୂର୍ତ୍ତ ସର୍ବସ୍ୱ ଜୀବନକୁ ନେଇ ଗଳ୍ପ ଲେଖେ । ତା' ପକ୍ଷରେ ବର୍ତ୍ତମାନ ହିଁ ଏକାନ୍ତ କାମ୍ୟ । ଅତୀତ ତା' ପକ୍ଷରେ ପ୍ରହସନ । ଭବିଷ୍ୟତ କଥା ସେ ଭାବେ ନାହିଁ । ବାର୍ତ୍ତମାନିକ ପରିପ୍ରେକ୍ଷୀରେ ସେ ଗଳ୍ପ ଲେଖେ । ତେଣୁ ସେ କହେ "ମୁହୂର୍ତ୍ତ—ଗୋଟିଏ ସଂକ୍ଷିପ୍ତ ମୁହୂର୍ତ୍ତ ହିଁ ଆଜି ଭବିଷ୍ୟତରେ ପ୍ରଲମ୍ବିତ ପ୍ରହରଠାରୁ ଅଧିକ ନିର୍ଭର ଯୋଗ୍ୟ । ଏହି [୧] ମୁହୂର୍ତ୍ତ ସର୍ବସ୍ୱ ଚେତନା କେତେବେଳେ ଅଶ୍ଳୀଳ ଆଉ ଦୁଃଖଦ, କେତେବେଳେ ସଂଘର୍ଷ ଆଉ ସଂଘାତମୟ ଏବଂ ପୁଣି କେତେବେଳେ ସଂଶୟ ଆଉ ଅତୃପ୍ତି ଓ ଜିଜ୍ଞାସାମୟ ।

## ସାଂପ୍ରତିକ ଗଳ୍ପର ମନୋଭୂମି—

ସାଂପ୍ରତିକ ଗଳ୍ପର ମନୋଭୂମି ମୁହୂର୍ତ୍ତ ସର୍ବସ୍ୱ ମଣିଷର ଅସହାୟତା, ନିଃସଙ୍ଗତା, ଅନିଶ୍ଚିତତା ଓ ଶୂନ୍ୟତାବୋଧର ପରିବେଶରୁ ସୃଷ୍ଟ । ମଣିଷ ଆଜି

---

[୧] ମୁହୂର୍ତ୍ତ—ମଙ୍ଗଳର ମୁଖ—ପୃ ୧୬୧ —ଶ୍ରୀ ସୁରେନ୍ଦ୍ର ମହାନ୍ତି,

କେବଳ ନିଃସଙ୍ଗ ନୁହେଁ, ତା'ର ଜୀବନ ଆଜି ଶଙ୍କାକୁଳ ଓ ସଂଶୟାଚ୍ଛନ୍ନ, ସମସ୍ୟା ଜର୍ଜର ସମାଜରେ ସେ ଆଜି ନିଜକୁ ବଡ଼ ଦୟନୀୟ ଅନୁଭବ କରୁଛି; ବିଶେଷ କରି ଯୁଦ୍ଧୋତ୍ତର ପୃଥିବୀରେ ମଣିଷ ସତେ ଯେପରି ବେଦନାର୍ତ୍ତ ଚିତ୍କାର କରୁଛି ପ୍ରତି ମୁହୂର୍ତ୍ତରେ, ସତେ ଯେପରି ସେ ମୃତ୍ୟୁର ଶୀତଳ ହସ୍ତର ସ୍ପର୍ଶ ଅନୁଭବ କରୁଛି ପ୍ରତିଦିନ । ଏଇଥିପାଇଁ, ବୋଧହୁଏ E M. Froster ତାଙ୍କର 'Aspects of the Novel' ଗ୍ରନ୍ଥରେ ମଣିଷର ଦୈନନ୍ଦିନ ମୃତ୍ୟୁ (daily death) ସମ୍ବନ୍ଧରେ ଆଲୋଚନା କରି ଲେଖିଛନ୍ତି । ପ୍ରାଚୂର୍ଯ୍ୟ ମଧ୍ୟରେ ମଣିଷ ଉପଲବ୍ଧି କରୁଛି ବିରାଟ ଶୂନ୍ୟତା—ଏ ଶୂନ୍ୟତା ହେଉଛି ମଣିଷର ମନୋ-ରାଜ୍ୟରେ; ଏଇଥିପାଇଁ ମଣିଷର ମନ ଆଜି ଦ୍ୱନ୍ଦ୍ୱମୟ । ଦ୍ୱନ୍ଦ୍ୱଗ୍ରସ୍ତ ମଣିଷ ମନର ପ୍ରତିଲିପି କ୍ଷୁଦ୍ରଗଳ୍ପ, ତେଣୁ ଆଜି ସଂଘାତମୟ । ବିଶ୍ୱ ସମ୍ବନ୍ଧରେ ସ୍ୱୟଂ ଭଗବାନ ଆଜି ଯଦି ଗଳ୍ପ କହିବେ ତେବେ ତାହା ମଧ୍ୟ ହେବ ସଂଘର୍ଷମୟ । [୨]

ଆଜିର କ୍ଷୁଦ୍ରଗଳ୍ପ କଥାବସ୍ତୁ ଉପରେ ଯୋର ଦିଏ ନାହିଁ । କାହାଣୀକୁ ମୁଖ୍ୟ ଭାବରେ ଗ୍ରହଣ କରେ ନାହିଁ, ଧରାବନ୍ଧା ନିୟମ ଅନୁସାରେ ସେ ଗତି କରେ ନାହିଁ, ସେ ଗତି କରେ ନାହିଁ ପୂର୍ବସୂରୀମାନଙ୍କର ପ୍ରଶସ୍ତ ପରିଷ୍କାର ରାସ୍ତାରେ । ସେ ଗତି କରେ ଅମଡ଼ା ରାସ୍ତାରେ । ଅମଡ଼ାର ରହସ୍ୟ ସେ ଉଦ୍‌ଘାଟନ କରେ । ସେ ଉଦ୍‌ଘାଟନ କରେ ସନ୍ଦେହ ଓ ନୈରାଶ୍ୟରେ ଦ୍ୱନ୍ଦ୍ୱାକୁଳ ମଣିଷ ମନର ସଂଗୁପ୍ତ ଅତଳ ରହସ୍ୟକୁ—ଲୋକ କାହାଣୀର ରଜାପୁଅ ଭଳି ସେ ସାତତାଳ ପାଣି ଆଉ ସାତତାଳ ପଙ୍କ ମଧ୍ୟରେ ସୁନା ସିନ୍ଦୁକରେ ସାଇତା ଥିବା ବୁଢ଼ୀ ଅସୁରୁଣୀର ଜୀବନ ନାଡିକୁ ସେ ଖୋଜେ; ସେ ଅନୁସନ୍ଧାନ କରେ ମଣିଷ ମନର ଅନ୍ଧାରି ମୂଳକକୁ, ଆଲୋକ ନୁହେଁ, ମଣିଷ ମନର ଘନକୃଷ୍ଣ ଅନ୍ଧକାର ମଧ୍ୟରେ ଯେଉଁ ଅବୋଧ୍ୟ ବିଭୀଷିକା ବିଦ୍ୟମାନ ରହିଛି, ସେହି ଅନ୍ଧକାର ସ୍ୱରୂପକୁ ଆଜିର କ୍ଷୁଦ୍ରଗଳ୍ପ ପ୍ରକାଶ କରେ—ମାନସିକ ବ୍ୟାଧି, ଦୁର୍ବଳସ୍ନାୟୁ ଓ ନିଉରୋସିସ ର ଚିନ୍ତା ହିଁ ସତେ ଯେପରି ଆଜିର ଗଳ୍ପରେ ପ୍ରଭାବ ବିସ୍ତାର କରିଛି, ଏହି ମାନସିକ ପ୍ରତିକ୍ରିୟାକୁ ମୋପାସା ପ୍ରଥମେ ଦେଖାଇଥିଲେ ଏବଂ ଏହି ପ୍ରତିକ୍ରିୟାର ଫଳ ସ୍ୱରୂପ ସେ ରଚନା କଲେ 'La Horla'। ମଣିଷର ଦ୍ୱିଧା ବ୍ୟକ୍ତିତ୍ୱ (double personality)କୁ ଦେଖାଇବାକୁ ଆଜିର ଗଳ୍ପ ଚେଷ୍ଟା କରୁଛି । ସେ ଆଜି ଯଥାର୍ଥରେ ଦେଖାଇ ଦେଇପାରୁଛି ମଣିଷର ଅଜ୍ଞାତ ସ୍ୱରୂପଟିକୁ । ଜୀବନରେ ଯନ୍ତ୍ରଣା ଅଛି, ଏ ଯନ୍ତ୍ରଣା ପୁଣି ଚିରନ୍ତନ, ଦୁର୍ବୋଧ୍ୟ ଓ ରହସ୍ୟ ଛନ୍ନ । ଏଥିପାଇଁ

---

[୨] If God could tell the story of the universe the universe would be come fictitious P. 63 Aspects of the Novel—E. M. Froster.

ଓ୍ୱାଡସଓ୍ୱାର୍ଥ ଲେଖିଛନ୍ତି "suffering is permanent, obsecure and dark and has the nature of infinity." ତଥାପି ଏ ଜୀବନକୁ ବରଣ କରିବାକୁ ହୁଏ, ଏ ଜୀବନର ରହସ୍ୟକୁ ଉପଲବ୍ଧି କରିବାକୁ ହୁଏ । ଶିଳ୍ପୀର ଅନ୍ତର୍ବାଣୀ ତେଣୁ ପ୍ରକାଶ କରେ "ସଂଘର୍ଷ ହିଁ ଜୀବନ, ମରିବା ସହିତ ବଞ୍ଚିବାର ସଂଘର୍ଷ, ଆଲୋକ ସହିତ ଅନ୍ଧକାରର ସଂଘର୍ଷ, ଅନନ୍ତ ସହିତ ପ୍ରତ୍ୟନ୍ତସ୍ଥର ସଂଘର୍ଷ ।" [୩] ଏ ଜୀବନ ଯେତେ ବେଦନା ଦାୟକ ହେଲେ ମଧ୍ୟ ଯେତେ ସଂଘର୍ଷ ଓ ସଂଘାତମୟ ହେଲେ ମଧ୍ୟ ଶିଳ୍ପୀ ତାକୁ ସ୍ୱାଗତ ଜଣାଏ । ଅନୁଭୂତିର ବାସ୍ତବତାରେ ସେ ବାରମ୍ବାର ଏହାକୁ ହିସାବ କରେ, ଆତ୍ମା ସହିତ ସମାହିତ କରିବାପାଇଁ ଚେଷ୍ଟା କରେ ଜାତିର ଅନୁଦ୍‌ଘାଟିତ ଅନ୍ତରାତ୍ମାକୁ । [୪]ଏହାହିଁ ବୋଧହୁଏ ଆଜିର କ୍ଷୁଦ୍ରଗଳ୍ପର ମନୋଭୂମି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପୁଣି ସାମ୍ପ୍ରତିକ କ୍ଷୁଦ୍ର ଗଳ୍ପରୁ ଆଖ୍ୟାନ ଭାଗ ପ୍ରାୟ ବିଦାୟ ନେଇଗଲାଣି କହିଲେ ଅତ୍ୟୁକ୍ତି ହେବନାହିଁ । କାହାଣୀ ଓ ବର୍ଣ୍ଣନା ବିଳାସିତା ଆଜିର ଗଳ୍ପର ଧର୍ମନୁହେଁ । ଆଜିର ଗଳ୍ପର ପ୍ରଧାନ କଥା ହେଉଛି ବିଶେଷ ମାନସିକ ପରିସ୍ଥିତି ବା ମୁଡ୍ (Mood)କୁ ପରିବେଷିତ କରିବା । ଯୁଦ୍ଧ ପରବର୍ତ୍ତୀ ପୃଥିବୀରେ ଗଳ୍ପକ୍ଷେତ୍ରରେ ଅଭୂତପୂର୍ବ ପରିବର୍ତ୍ତନ ଦେଖା ଦେଇଛି । ଫରାସୀ ସାହିତ୍ୟରେ ଏକଦା ମୋପାସା ଗଳ୍ପ ସମ୍ରାଟ ଭାବରେ ଖ୍ୟାତିଲାଭ କରିଥିଲେ । ସେ ଗଳ୍ପରେ କାହାଣୀ ବା ପ୍ଲଟ୍‌କୁ ପ୍ରାଧାନ୍ୟ ଦେଇ ତା'ର ମାଧ୍ୟମରେ ମାନବିକ ଓ ମାନସିକ ପରିବେଶକୁ ଫୁଟାଇବାକୁ ଚେଷ୍ଟାକରୁଥିଲେ । ସମରସେଟ ମମ୍ ପରେ ମୋପାସାଙ୍କ ଦ୍ୱାରା ପ୍ରଭାବିତ ହୋଇ କାହାଣୀମୁଖୀ କ୍ଷୁଦ୍ର ଗଳ୍ପ ରଚନା କରିଥିଲେ । କିନ୍ତୁ ଗୋଗଲ, ଚେକଭ ଓ ଗ୍ଲାସଓ୍ୱାର୍ଦ୍ଦି କାହାଣୀ ବା କଥାବସ୍ତୁ ଉପରେ ଯୋର ନଦେଇ ପରିବେଶ ଏବଂ ଚରିତ୍ର ଉପରେ ଅଧିକ ଯୋର ଦେଲେ । ଚେକଭ ବିଶ୍ୱାସ କରନ୍ତି ଯେ କ୍ଷୁଦ୍ର ଗଳ୍ପରେ କୌଣସି ଆରମ୍ଭ ବା ଶେଷ ଦରକାର ନାହିଁ, ମାତ୍ର Sedgwick ଅନୁଭବ କରନ୍ତି "a story is like a horse. It is the start and finish that count most." ଏଲଜାବେଥ ବୋଏନ ଗଳ୍ପର ଆବଶ୍ୟକତା ଉପରେ ଯୋର ଦେଇଛନ୍ତି ।

---

[୩] ଦୁଇ ବନ୍ଧୁ—କୃଷ୍ଣଚୂଡ଼ା—ପୃ ୨୯—ଶ୍ରୀ ସୁରେନ୍ଦ୍ର ମହାନ୍ତି

[୪] "Welcome, O Life! I go to encounter for millions time the reality of experience and to forge in the smithy of my soul, the uncreated consicence of my race." P. 253. James Joyce.
( A Portrait of the Artist as a young man. )

ସେ ଅନୁଭୂତ ଓ ଅବଧାରଣକୁ ପ୍ରାଧାନ୍ୟ ଦେଇଛନ୍ତି । ଏଡ଼ଗାର ଆଲ୍ଲନ୍ ପୋ, ଏଚ୍. ଜି. ଓ୍ୱେଲ୍ସ, ଫ୍ଲାବୋର୍ଟ, ଆନାତୋଲ ଫ୍ରାନ୍ସ ପ୍ରଭୃତି ଲେଖକମାନେ କ୍ଷୁଦ୍ରଗଳ୍ପର ବିକାଶ ଦିଗରେ ଯଥେଷ୍ଟ ସାହାଯ୍ୟ କରିଅଛନ୍ତି । ବିଶ୍ୱଯୁଦ୍ଧ ପରିପ୍ରେକ୍ଷୀରେ ବିଶ୍ୱସାହିତ୍ୟରେ ପରିବର୍ତ୍ତନ ଦେଖାଦେଲା । ଜାଁପାଲ୍ ସାର୍ତ୍ରେଙ୍କର ଚେତନା ପ୍ରବାହ ପଦ୍ଧତି (stream of consciousness) ଓ କାମ୍ୟୁଙ୍କର ସ୍ଥିତିବାଦୀ ଚିନ୍ତାଧାରା ସାହିତ୍ୟରେ ନୂତନ ଦିଗନ୍ତର ସୂଚନା ଦେଲା । ଏମାନଙ୍କ ବ୍ୟତୀତ କାଫ୍‌କା, ଷ୍ଟେନ୍‌ବେକ୍, ଆନ୍ଦ୍ରେଜିଦ୍ ପ୍ରଭୃତି ଶିଳ୍ପୀମାନଙ୍କର ଚିନ୍ତାଧାରା ମଧ୍ୟ ସାହିତ୍ୟରେ କମ୍ ପ୍ରଭାବ ପକାଇ ନାହିଁ । କାମ୍ୟୁ, କାଫ୍‌କା, ସାର୍ତ୍ରେ ପ୍ରଭୃତି ଲେଖକମାନେ କ୍ଷୁଦ୍ରଗଳ୍ପରେ ସ୍ଥିତିବାଦ ଦର୍ଶନକୁ ପ୍ରୟୋଗକରି ମଣିଷ ଜୀବନର ସଂକଟ ଓ ବଞ୍ଚିବାପାଇଁ ଦୁର୍ବାର ଆକାଂକ୍ଷାକୁ ପ୍ରକାଶ କଲେ । ପୁଣି ସାଂପ୍ରତିକ କାଳରେ ସାମାଜିକ ମଣିଷ ନିଜକୁ ଏକାକୀ ମନେ କରୁଛି । ପ୍ରତ୍ୟେକ ମଣିଷ ନିଜପାଇଁ ବ୍ୟସ୍ତ । ଗୋଷ୍ଠୀ ବା ସମାଜ ଆଜି ଅବହେଳିତ । ଇଲିଅଟଙ୍କ ଭାଷାରେ "Each man fixed his eyes before his feet." ସାର୍ତ୍ରେଙ୍କର 'ଲୁସିଏ' ଓ କାମ୍ୟୁଙ୍କର 'ଦାରୁ' ଚରିତ୍ରଦ୍ୱୟ ସାଂପ୍ରତିକ ଜୀବନର ପ୍ରତିନିଧିଶ୍ରେଣୀୟ ଚରିତ୍ର । ଜୀବନର ଅନ୍ୱେଷା, ଦୁଃଖ, ଯନ୍ତ୍ରଣା ଓ ନିର୍ବାସିତ ଜୀବନର ଏକାକୀତ୍ୱବୋଧ ଏହି ଚରିତ୍ରମାଧ୍ୟମରେ ପ୍ରକଟିତ ହୋଇଛି । ସାର୍ତ୍ରେଙ୍କ ମତରେ ମଣିଷ ଯେତେବେଳେ ନିଜର ସ୍ଥିତିକୁ ସ୍ୱୀକାର କରେ ସେତେବେଳେ ସେ ହୁଏ ଶକ୍ତିମାନ [୫] ମଣିଷର ସ୍ଥିତିମାନେ ହେଁ ସେ କିଛି ସମସ୍ତ ପାଇଁ ଉପସ୍ଥିତ ରହିଛି (To exist is simply to be there) ତାଙ୍କୁ ଏ ଜଗତ ଉଦ୍ଭଟ ଅସଙ୍ଗତ (absurd) ମନେ ହୋଇଛି । ସ୍ଥିତିବାଦୀ ଦର୍ଶନର ଚମତ୍କାର ବିଶ୍ଳେଷଣ କରି ନିଜର ଡାଇରୀରେ ସେ ଏ କଥାକୁ ଉଲ୍ଲେଖ କରିଅଛନ୍ତି । [୬] Nauseaର ନାୟକ (ପ୍ରତିନାୟକ—antihero) ରୋକ୍ୱେନ୍ତି (Rocquentin) ଓ "The childhood of a Leader"ର ନାୟକ ଲୁସିଏ (Lucien) ଚରିତ୍ର ମାଧ୍ୟମରେ ଜଗତ

---

[୫] "Men are powerless only when they admit they are." P. XII—What is Literature. Jean Pal Sartre.

[୬] "I am in the midst of things, which cannot be given names. Alone, wordless, defenceless, they surround me....... The demand nothing, they don't impose themselves, they are there." P. XI—What is literature.

ଓ ଜୀବନ ପ୍ରତି ତାଙ୍କର ଦୃଷ୍ଟିକୋଣକୁ ପ୍ରକାଶ କରିଅଛନ୍ତି । ଲୁସିଏ ଜୀବନର ଅନିଶ୍ଚିତତା ଓ ନିଃସଙ୍ଗତା ସମ୍ବନ୍ଧରେ ନିଜକୁ ନିଜେ ପ୍ରଶ୍ନ କରିଛି "Who am I? After all I didnot ask to be born." ଏହିଭଳି Kirkegard. ମଧ୍ୟ ନିଜ ଜୀବନକୁ ଉଦ୍ଭଟ ଭାବରେ କଳ୍ପନାକରି 'Repetion'ରେ ଲେଖିଛନ୍ତି 'Where am I ? Who am I ? How did I come to be here ? ମୋଟ ଉପରେ ସାଂପ୍ରତିକ କ୍ଷୁଦ୍ର ଗଳ୍ପର ଅଧିକାଂଶ ଚରିତ୍ରରେ ସ୍ଥିତିବାଦୀ ଦର୍ଶନର ସ୍ପଷ୍ଟ ପ୍ରଭାବ ଦେଖିବାକୁ ମିଳିଥାଏ । ଯାହା ମନେହୁଏ ଆଜିର ଗଳ୍ପର ସାହିତ୍ୟ ବିଶେଷ କରି ସ୍ଥିତିବାଦୀ ଚିନ୍ତାଧାରା ଦ୍ୱାରା ଅନୁପ୍ରେରିତ ହୋଇ ଶୈଳ୍ପିକ ରୂପ ବୈଚିତ୍ର୍ୟରେ ଆତ୍ମପ୍ରକାଶ କରୁଛି ।

ସାଂପ୍ରତିକ ଗଳ୍ପ ସାହିତ୍ୟକୁ ଫ୍ରଏଡଙ୍କର ମନୋବୈଜ୍ଞାନିକ ବିଶ୍ଳେଷଣାତ୍ମକ ଚିନ୍ତାଧାରା ମଧ୍ୟ ଗଭୀର ଭାବରେ ପ୍ରଭାବିତ କରିଛି । ମଣିଷର ମନୋରାଜ୍ୟର ଅନ୍ଧକାର ସମୁଦ୍ରରେ ଆତ୍ମଗୋପନ କରିଥିବା 'ଲିବିଡୋ' ଏବଂ ମଣିଷର ପ୍ରତ୍ୟେକ କ୍ରିୟା ପ୍ରତିକ୍ରିୟା ଉପରେ ଏହାର ଅପ୍ରତିହତ ପ୍ରଭାବହିଁ ସାଂପ୍ରତିକ ଗଳ୍ପରେ ପ୍ରଧାନ ଭୂମିକା ଗ୍ରହଣ କରିଛି । ଯୌନକାମନା ଏବଂ ଅତୃପ୍ତ ଯୌନ ଲାଲସାଜନିତ ନୈରାଶ୍ୟ ଗ୍ଲାନି, ବେଦନା ଓ ମାନସିକ ସଂଘର୍ଷ ଏବଂ ଏହାର ପରିଣତିରେ ବ୍ୟକ୍ତିର ନିଃସଙ୍ଗତା ତଥା ଶୂନ୍ୟତାବୋଧ ଓ ଏହି ହେତୁରୁ ଯୁଗପତ୍ ସନ୍ଦେହ ଓ ଆଶଙ୍କା ତଥା ଭୟ ଆଦି କ୍ଷୁଦ୍ର ଗଳ୍ପରେ ରୂପାୟିତ ହେଉଛି । ସ୍ଥିତିବାଦୀ ଚିନ୍ତା ଯେପରି ଶଙ୍କାକୁଳ ପରିବେଶ ମଧ୍ୟରେ ମଣିଷକୁ ବଞ୍ଚିବାର ଦୁର୍ବାର ପ୍ରେରଣା ପ୍ରଦାନ କରୁଛି ଯୌନଭିତ୍ତିକ ଚିନ୍ତା ଠିକ୍ ସେହିପରି ମଣିଷର ସ୍ଥିତି ଓ ବଞ୍ଚିବାର ସମସ୍ୟା ମଧ୍ୟରେ ନାନାଦି ସଂଘର୍ଷ ଓ ଦ୍ୱନ୍ଦ୍ୱର ସୂତ୍ରପାତ କରୁଛି । ଯେଉଁଠି ବଞ୍ଚିବା ପାଇଁ ସଂଘର୍ଷ, ପ୍ରାଚୁର୍ଯ୍ୟ ପାଇଁ ଦ୍ୱନ୍ଦ୍ୱ ଓ କ୍ଷମତା ପାଇଁ କାତରତା ସେଇଠି ଯୌନଭିତ୍ତିକ ଚିନ୍ତାର ପ୍ରଭାବ ବିଶେଷ ଲକ୍ଷ୍ୟ କରାଯାଏ । ଏଇଥିପାଇଁ ଆମେରିକା, ଇଂଲଣ୍ଡ ଓ ଫ୍ରାନ୍ସର ସାହିତ୍ୟରେ ଯୌନ ବିକାରଗ୍ରସ୍ତ ମାନସିକ ଅବସ୍ଥାର ଯଥାର୍ଥ ପରିଚୟ ମିଳିଥାଏ । ଜେମ୍ସ ଜଏସ୍, ଗ୍ରାହାମ୍ ଗ୍ରୀନ୍, ଆନ୍ଦ୍ରେଜିଦ୍, ସାର୍ତ୍ରେ, କମ୍ୟୁ ପ୍ରଭୃତି ଲେଖକମାନେ ଏହି ଭାବକୁ ପ୍ରକାଶ କରିଅଛନ୍ତି । ଭାରତୀୟ ସାହିତ୍ୟ ଯେହେତୁ ପାଶ୍ଚାତ୍ୟ ଦେଶ-ମାନଙ୍କର ଛାୟା କୁହେଳି ମଧ୍ୟରେ ଗତି କରୁଛି ସେହି ହେତୁ ସଂପ୍ରତି ଏ ସାହିତ୍ୟରେ ଯୌନଭିତ୍ତିକ ନୈରାଶ୍ୟ, ଦ୍ୱନ୍ଦ୍ୱ, ସଂଘର୍ଷ ଓ ନିଃସଙ୍ଗତା ବୋଧ ପ୍ରକାଶିତ ହେଉଛି । ସ୍ଥିତିବାଦୀ ଚିନ୍ତାଧାରା ଓ ଯୌନଚେତନା ସମ୍ଭୂତ ଭାବଧାରାକୁ ପ୍ରକାଶ କରିବାପାଇଁ ଆଜିର ଲେଖକ ସ୍ୱଳ୍ପଭାଷୀ ହେବାକୁ ବାଧ୍ୟ ହୋଇଛି । ତେଣୁ ତାର ଲେଖାରେ ବ୍ୟଞ୍ଜନା ମୁଖ୍ୟ ଭୂମିକା ନେଉଛି । ଭାବକୁ ବ୍ୟକ୍ତ କରିବାପାଇଁ ପ୍ରତୀକ-

ଧର୍ମୀ ଶବ୍ଦ ଓ ରୂପକଳ୍ପର ବ୍ୟବହାର ହେଉଛି । ଅନ୍ତର ପୁରୁଷକୁ ଚକିତ ଉଦ୍‌ଭାସିତ କରିବା ପାଇଁ ଯେତିକି ଶବ୍ଦ ଆବଶ୍ୟକ ସେତିକି ଶବ୍ଦ ସେ ପ୍ରୟୋଗ କରୁଛି । ତେଣୁ ଗଳ୍ପ ହେଉଛି ଇଙ୍ଗିତଧର୍ମୀ ଓ ଭାବମର୍ମୀ; ପୁଣି ସାଂପ୍ରତିକ ଗଳ୍ପରେ ଯେହେତୁ ଏହି 'ଲିବିଡ଼ୋ' ଗତ ଭାବ ବିଶେଷ ପ୍ରକାଶିତ ହେଉଛି, କ୍ଷୁଦ୍ର ଗଳ୍ପର ଲେଖକ ସେହି ହେତୁ ବ୍ୟକ୍ତିକ ହେବାକୁ ବାଧ୍ୟ ହେଉଛି । ଗୀତି କବିତାର ମନ୍ମୟତା ଭଳି ସେ ତା'ର କ୍ଷୁଦ୍ର ଗଳ୍ପକୁ ମନ୍ମୟଧର୍ମୀ ( subjective ) କରୁଛି । ବିଶ୍ୱ ସାହିତ୍ୟରେ ଏହି ଚିନ୍ତା ସଂଘର୍ଷ ଦେଖାଦେଇଛି ।

ଫ୍ରଏଡିଜିମ୍ ବ୍ୟତୀତ ମାର୍କସିଜିମ ମଧ୍ୟ ସାଂପ୍ରତିକ ଗଳ୍ପ ସାହିତ୍ୟରେ ତାର ପଦଚିହ୍ନକୁ ସ୍ପଷ୍ଟ କରୁଛି । ଫ୍ରଏଡ୍‌ଙ୍କ ଯୌନ ସମୀକ୍ଷାବାଦ ମଣିଷ ମନର ଅତଳ ରହସ୍ୟକୁ ଉନ୍ମୋଚିତ କରିବାକୁ ପ୍ରେରଣା ଦେଉଥିଲାବେଳେ ମାର୍କସଙ୍କ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ (Dialectical Materialism) ମଣିଷକୁ ବଞ୍ଚିବାପାଇଁ ପ୍ରେରଣା ଦେଉଛି । ଗୋଟିଏ ଦିଗରେ ଯୌନ ପିପାସା ଓ ତଜ୍ଜନିତ ମାନସିକ ବ୍ୟାଧି, ପ୍ରତିକ୍ରିୟା ଇତ୍ୟାଦିର ବିଶ୍ଳେଷଣ ସାଂପ୍ରତିକ କ୍ଷୁଦ୍ର ଗଳ୍ପରେ ଯେପରି ବର୍ଣ୍ଣିତ ହେଉଛି ଅନ୍ୟ ଦିଗରେ ମଣିଷର ବଞ୍ଚିବାପାଇଁ ସଂଘର୍ଷ ଠିକ୍ ସେହିପରି କ୍ଷୁଦ୍ର ଗଳ୍ପକୁ ମହିମାନ୍ୱିତ କରୁଅଛି । ଯେଉଁ ସମାଜରେ ପ୍ରାଚୁର୍ଯ୍ୟ ଓ ବିଳାସ ବେଶୀ ସେହି ସମାଜରେ ନଉରୋସିସ୍‌ଚର୍ଚ୍ଚା, ଦୁର୍ବଳ ସ୍ନାୟୁଗତ ଆଲୋଚନା, ମାନସିକ ବ୍ୟାଧି ଓ ଯୌନାକାଂକ୍ଷାର ପ୍ରବଳ ଉତ୍ତେଜନା ଓ ତଦ୍‌ଜନିତ ସାମାଜିକ ସମସ୍ୟାର ସୃଷ୍ଟି ଇତ୍ୟାଦି ବେଶୀ ଦେଖାଦିଏ ଏବଂ କ୍ଷୁଦ୍ର ଗଳ୍ପର ଲେଖକ ଏହି ସମସ୍ୟାକୁ ଚକିତ ଉଦ୍‌ଭାସିତ କରେ । କିନ୍ତୁ ଯେଉଁ ସମାଜରେ ବଞ୍ଚିବା ପାଇଁ ସଂଘର୍ଷ, ଖାଦ୍ୟ ବସ୍ତ୍ର ଓ ବାସ ପାଇଁ ଯୁଦ୍ଧ ସେ ସମାଜରେ ଯୌନ ଚର୍ଚ୍ଚା ଗୌଣ ଭାବରେ ବିବେଚିତ ହୋଇଥାଏ । ଏଇଥିପାଇଁ ରୁଷିଆର ଗଳ୍ପ ଲେଖକମାନେ ଯୌନ ସମୀକ୍ଷାକୁ ଗୌଣ ବୋଲି ବିବେଚନା କରନ୍ତି । ସେମାନଙ୍କ ଗଳ୍ପରେ ଥାଏ ବଞ୍ଚିବାପାଇଁ ପ୍ରେରଣା, ବଞ୍ଚିବାର ରହସ୍ୟ ଉନ୍ମୋଚନ କରିବାର ଦୁର୍ବାର ପିପାସା । ପୁଣି ଯେତେବେଳେ ଏହି ପ୍ରଗତିବାଦୀ ଭାବଧାରା ପୁଞ୍ଜିବାଦୀ ରାଷ୍ଟ୍ରରେ ସାହିତ୍ୟିକମାନଙ୍କୁ ଆକୃଷ୍ଟ କରେ, ସେତେବେଳେ ସେମାନଙ୍କର ସାହିତ୍ୟ ହୁଏ ସଂଘର୍ଷ ଓ ବିଦ୍ରୋହ-ଧର୍ମୀ । ଏ ସାହିତ୍ୟ ସାଲିସ୍ ଗ୍ରହେ ନାହିଁ, ମାତ୍ର ଗ୍ରହେ ବିଦ୍ରୋହ, ବିପ୍ଳବ ଓ ଧ୍ୱଂସ । ଏଇଥିପାଇଁ ଆରଥର କ୍ରେସ୍‌ଲର୍ ମାର୍କସିଜିମ୍‌ର ବିଶ୍ଳେଷଣ କରି ଲେଖିଛନ୍ତି ଯେ "ବିଶ୍ୱଯୁଦ୍ଧ ଓ ଅନ୍ତର୍ବିପ୍ଳବ ଜନିତ ନୈରାଶ୍ୟ ବୋଧ, ସାମାଜିକ ଅଶାନ୍ତି ଓ ଅସନ୍ତୋଷ, ଆର୍ଥନୀତିକ ବୈଷମ୍ୟ ଓ ଅସ୍ଥିରତା, ଅତୀତ ଓ ପରଂପରା ସହିତ ସମ୍ପର୍କ ଛିନ୍ନତା ଇତ୍ୟାଦିରୁ ଏହାର ଜନ୍ମ । ଧ୍ୱଂସରୁ ପୁନରାସ୍ଥ ମଣିଷର ଇତିହାସ ଆରମ୍ଭ କରିବା

ଯଥାର୍ଥ ଓ ସତ୍ତ୍ୱୀନ ।" [୭] ସାଂପ୍ରତିକ କ୍ଷୁଦ୍ର ଗଳ୍ପରେ କେଣୁ ମାର୍କସୀୟ ଚିନ୍ତା ପ୍ରସୂତ ବୈପ୍ଳବିକ ଭାବଚେତନା ସୃଷ୍ଟି ହେଉଛି । ଏହାର ଦୃଷ୍ଟି ଯେହେତୁ ନୈରାଶ୍ୟ ଓ ଶୋଚନୀୟତାରୁ, ବ୍ୟଥା ଓ ବେଦନାରୁ, ବୈଷମ୍ୟ ଓ ବୈସାଦୃଶ୍ୟରୁ, ସଂଘର୍ଷ ଓ ସଂଗ୍ରାମରୁ ସେହି ହେତୁ ଏହାର ଲକ୍ଷ୍ୟ ହେଉଛି ସାମାଜିକ ସାମ୍ୟ ସ୍ଥାପନ କରିବା ଓ ଅନ୍ୟାୟର ପ୍ରତିଶୋଧ ନେବା । ଭାରତୀୟ ସାହିତ୍ୟରେ ଏହାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ । ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ମଧ୍ୟ ଏହି ଭାବ ଚେତନା ପ୍ରକାଶିତ ହେଉଥିବାର ଲକ୍ଷ୍ୟ କରାଯାଇଥାଏ । ମୋଟ ଉପରେ ସାଂପ୍ରତିକ ଗଳ୍ପ ସାହିତ୍ୟ ବହୁ ବୈଚିତ୍ର୍ୟରେ ପରିପୂର୍ଣ୍ଣ । ଏହା ଗୋଟିଏ ନିର୍ଦ୍ଦିଷ୍ଟ ଅଭିମୁଖ୍ୟ ନେଇ ଗତି କରୁନାହିଁ । ଲକ୍ଷ୍ୟ ଏହାର ବହୁଧା । ଗତି ଏହାର ବହୁମୁଖୀ । ସ୍ରୋତ ଏହାର ବହୁଦିଗ ପ୍ରସାରି, ଏହା ସ୍ଥିତିବାଦୀ ଦର୍ଶନର ଭାବଧାରାକୁ ଯେପରି ପ୍ରକାଶ କରୁଛି, ଠିକ୍ ସେହିପରି ଏହା ମଣିଷ ମନର ଅତଳ ରହସ୍ୟକୁ ପ୍ରକାଶ କରୁଛି; ମଣିଷ ମନର ଚେତନା ପ୍ରବାହ ପଦ୍ଧତିକୁ ମଧ୍ୟ ପ୍ରକଟିତ କରୁଛି । ମଣିଷ ମନର ସଂକ୍ଷିପ୍ତ ଦୁର୍ବଳ ସ୍ନାୟୁଗତ ଭାବଧାରା, ଯୌନପ୍ରବୃତ୍ତିକ ଚିନ୍ତା ସଂଘର୍ଷ ମଧ୍ୟ ଯେପରି ସାଂପ୍ରତିକ କ୍ଷୁଦ୍ର ଗଳ୍ପରେ ବର୍ଣ୍ଣିତ ହେଉଛି ଠିକ୍ ସେହିପରି ସମାନ୍ତରାଳ ଭାବରେ ମଣିଷର ବଞ୍ଚିବା ପାଇଁ ସଂଘର୍ଷ ଓ ଦୁର୍ବାର ଆକାଂକ୍ଷା ରୂପାୟିତ ହେଉଛି । ଏହା ବ୍ୟତୀତ ଆଜିର ଗଳ୍ପ ସାହିତ୍ୟ ଦେଶ କାଳ ଓ ପାତ୍ରର ସୀମା ଅତିକ୍ରମ କରି ଆନ୍ତର୍ଜାତୀୟ ଚିନ୍ତା ଚେତନାକୁ ମଧ୍ୟ ପ୍ରକାଶିତ କରୁଛି । ସମଗ୍ର ମଣିଷ ଜାତିକୁ ଗୋଟିଏ ପରିବାରର ଭାବ ତା'ର ଅନ୍ତର୍ନିହିତ ଭାବଧାରାକୁ ବର୍ଣ୍ଣନା କରୁଛି । ଭାରତବର୍ଷ ତଥା ଓଡ଼ିଶାରେ କ୍ଷୁଦ୍ର ଗଳ୍ପ ଲେଖକମାନେ ଏ ସମସ୍ତ ଚିନ୍ତାକୁ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସ୍ୱାଧୀନୋତ୍ତର ଭାରତବର୍ଷରେ ରାଜନୀତିକ ବୈଫଲ୍ୟ ଓ ଆର୍ଥନୀତିକ ଦୁର୍ଗତି ତଥା ସାମାଜିକ ଓ ରାଜନୀତିକ ଦୁର୍ନୀତି ଓ ଅନ୍ୟାୟକୁ ମଧ୍ୟ ଜୀବନ୍ତ ଭାବରେ ପ୍ରକାଶ କରୁଛନ୍ତି । ଓଡ଼ିଆ ଗଳ୍ପ ସାହିତ୍ୟ ଅନ୍ୟାନ୍ୟ ଗଳ୍ପ ସାହିତ୍ୟଭଳି ଯେ ଉନ୍ନତ ଓ ଉଚ୍ଚକୋଟିର ସନ୍ଦେହ ନାହିଁ ।

---

[୭] "......born out of despair of world was and civil war, of social unrest and economic chaos, the desire for a complete break with the past, for starting human history from scartch, was deep and genuine."—Arthur Koestler






# ଶ୍ୱାପଦ

**● ଅଧ୍ୟାପକ ନିମାଇଁ ଚରଣ ପଟ୍ଟନାୟକ**

ସୁନବାବୁ ପ୍ରମାଦ ଗଣିଲେ, ଓଲଟ ଖଣ୍ଡାପରି ବିପଦ ଝୁଲୁଛି । ସେଥିରୁ ନିସ୍ତାର ପାଇବାର ସମ୍ଭାବନା ନାହିଁ । ନାଃ, ଆଉ ନୁହେଁ । ଆଉ କିଛି କରିହେବ ନି । ସେ ଦୀର୍ଘଶ୍ୱାସ ଛାଡ଼ିଲେ ।

ରେଖା ତଳକୁ ମୁହଁ କରି ବସିଛି, ମୁହଁର ଭାର ହାତ ଓ ପାପୁଲି ଉପରେ ରହିଛି । ଅଲସ ବାଳ ଉପରେ ସେ ବେଳେବେଳେ ହାତ ବୁଲାଉଛି । ମୁହଁ ଉଦାସ ଦିଶୁଛି, ବିରସ ଦିଶୁଛି । କେବଳ ଲୁହ ଝରୁ ନାହିଁ । ଯେମିତି ମେଘ ଢାଙ୍କି ରଖିଛି, ଭିତରେ ଭିତରେ ଝଡ଼ ଉଠୁଛି ଏବଂ ତାକୁ ଚାପି ରଖିବାକୁ ସେ ସାହସ ସଞ୍ଚୟ କରୁଛି ।

ସୁନବାବୁ ପୁଣି ଦୀର୍ଘ ନିଃଶ୍ୱାସ ମାରିଲେ, ମୁହଁ ଫାଟି ଫାଟି ପଡ଼ୁଥାଏ, ମୁହଁ ଉପରେ ହାତ ବୁଲାଇଲେ । ରେଖା ଆଡ଼କୁ ଚାହିଁଲେ । କହିଲେ, ମୁଁ ଆଶଙ୍କା କରୁଥିଲି, କାଲେ ଏଇଆ ହୋଇଯିବ । ଶେଷରେ ସେଇଆ ହେଲା ।

ରେଖା ବିଚଳିତ ହେଲା ନାହିଁ । ବିପଦ ଆସୁଛି, ତା'ର ସାମନା କରିବାକୁ ହେବ । ମାତ୍ର ତା'ର କଣ୍ଠ ଓଦା ହୋଇ ଆସୁଥିଲା । ପୁଣି ଦୃଢ଼ ହେଲା—ମୋତେ ଟିକିଏ ବିଷ ଖୁଆଇ ଦିଅ ତୁମ ଲାବରେଟୋରୀରୁ ।

ସୁନବାବୁ ଭାଙ୍ଗି ପଡ଼ୁଥାନ୍ତି, ତାଙ୍କ ସ୍ୱର ଅଲଗା ଶୁଣାଗଲା; ପୁଣି ସେଇ କଥା କହିଲୁ ? ମୋ କଥା ଟିକିଏ ଭାବ । ମୁଁ ଏବେ କ'ଣ କରିବି ?

ରେଖା ତାଙ୍କ ମୁହଁକୁ ଚାହିଁଲା । ସୁନବାବୁଙ୍କ ମୁହଁ ଭାରି କରୁଣ ଦିଶୁଥାଏ । ରେଖାକୁ ବିରକ୍ତ ଲାଗିଲା—ମୁଁ ଜାଣେ, ତମେ କିଛି କରିପାରିବ ନାହିଁ । ବରଂ ମତେ ଦିଅ । ମୁଁ ତୁମକୁ ବିଷ ଖୁଆଇ ଦେବି । ତମେ ଦେଖିବ, ମୁଁ ଠିକ୍ ପାରିବି ।

ସୁନବାବୁ ଆଶ୍ଚର୍ଯ୍ୟ ହେଲେ । ସବୁ କଥାରେ ଲାଜ— ପଚାରିଲେ ରେଖା ସହଜରେ କଥା କହେ ନାହିଁ । ପାଞ୍ଚ ପଦରେ ପଦେ ଉତ୍ତର । ଆଜି ସେ

କହିପାରୁଛ । ସୁନବାବୁ ରେଖା ମୁହଁକୁ ଚାହିଁଲେ । ଦେଖିଲେ ତା' ଭିତରେ ସଂଘର୍ଷ ଖେଳୁଛି ।

ତମେ କାହିଁକି ବାଧିବ ? ବାଧିବାରେ ତମର କି ଅଧିକାର ଅଛି ?

ସୁନବାବୁ ଆହୁରି ଆଶ୍ଚର୍ଯ୍ୟ ହେଲେ । କ'ଣ ଘଟିଯାଉଛି ବୁଝିପାରିଲେ ନାହିଁ ।

ରେଖା କଠିନ ହେଲା । ମୋ ବାଟରେ କାହିଁକି ଠିଆ ହେଉଛ ? ବାପା ଯେଉଁଠି ଠିକ୍ କରିଛନ୍ତି, ମୁଁ ସେଇଠି ଠିଆ ହେବି, ମୁଁ ଜାଣେ ତମେ ଭୀରୁ । ତମେ କାପୁରୁଷ, ତମ ଦେହ କିଛି ହେବ ନି !

ସୁନବାବୁଙ୍କ ପାଟି ଅଠା ଲାଗିଲା । ମୁହଁ ଫାଟିଫାଟି ପଡ଼ିଲା, ସେ ଆଉ କିଛି କହିପାରିଲେ ନାହିଁ । କେବଳ କହିଲେ – ରେଖା ! ତାଙ୍କର ସ୍ୱର ଆହୁରି କରୁଣ ଶୁଣାଗଲା । ସେ କରୁଣ ଓ ଅସହାୟ ଭାବରେ ରେଖାକୁ ଚାହିଁଲେ । ଭାବିଲେ, ଆଉ କ'ଣ କରିପାରିଥାନ୍ତି ? ଜୀବନଟା ନଷ୍ଟ ହେଇଗଲା ।

ରେଖାକୁ ତାଙ୍କ ମୁହଁର ଭାବ ଭଲ ଲାଗିଲା ନାହିଁ । ସେ ଚିଡ଼ିଲା । ଏ କ'ଣ ? ସେ ମୁହଁ ସହି ହେଲା ନାହିଁ । କହିଲା—କିଏ ତୁମକୁ ମନା କରୁଥିଲା ମତେ ଏଠୁ ନେଇ କୁଆଡ଼େ ପଳେଇବାକୁ ? ତମର ଆଗରେ ଟୂନାନା···(ରେଖାର ଆଖିରୁ ଲୁହ ପଳେଇ ଆସିଲା ।)

କିଏ ତମକୁ ମନା କରୁଥିଲା ମତେ, ମତେ···କିଏ ମନା କରୁଥିଲା ମତେ, ଏଠି··· । ତମଠି ପୁରୁଷତ୍ୱ ନାହିଁ । ତମେ ମାଇଚିଆ ।

ସୁନବାବୁ ପିଲାଙ୍କ ପରି କାନ୍ଦି ପକାଇଲେ । ନିଜ ହାତରେ ଲୁହ ପୋଛି ପକାଇଲେ ।

ରେଖାର ଦେହ ମୁହଁ ଗରମ ହୋଇଗଲା । ଇଚ୍ଛା ହେଲା ଛେପଡ଼ାଏ ପକାନ୍ତା । ଏ କ'ଣ ? କାନ୍ଦିଲେ କ'ଣ ହେବ ? ପୁରୁଷ ହେଇ କାନ୍ଦିବ କାହିଁକି ? ରେଖା ନିଜକୁ ସମ୍ଭାଳି ପାରିଲା ନାହିଁ । ଧାରୁଆ ନଖରେ ସୁନବାବୁଙ୍କୁ ଧରି ତାଙ୍କ ମୁହଁ ଓଠ ସବୁ ଫୁଲାଫୁଲା କାମୁଡ଼ି ପକାଇଲା ।

ସୁନବାବୁ କିଛି କହିଲେ ନାହିଁ । ସେ ଭାରି ନୀରବ ଜଣାଗଲେ ।

ରେଖା ଦେଖିଲା ବିବସ୍ତ୍ର ପୁରୁଷଟିଏ ଠିଆ ହୋଇଛି—ସେ ସୁନବାବୁ ନୁହଁନ୍ତି, ଆଉ ଜଣେ କିଏ ! ସେ ତାଙ୍କୁ ଚାହିଁ ପାରିଲା ନାହିଁ । ସେ ଆଉ ସେଠାରେ ଠିଆ ହୋଇ ପାରିଲା ନାହିଁ । ସିଡ଼ିରେ ତଳକୁ ଓହ୍ଲାଇଗଲା । ବାଟରେ ଅସ୍ପଷ୍ଟ ଭାବରେ କହିଲା—'ପୁଅର୍ ଫେଲୋ ।'



(ଆକାଶବାଣୀ, କଟକଙ୍କ ସୌଜନ୍ୟରୁ )

# ଆଫିଡାଭିଟ୍

● ଶ୍ରୀ କୈଳାଶ ଲେଙ୍କା

ମୁଁ, ଶ୍ରୀ ବଳରାମ ଭଗତ, ବୟସ ୫୭ ବର୍ଷ, ପିତାଙ୍କ ନାମ ଶ୍ରୀ ଗୋବିନ୍ଦରାମ ଭଗତ । ବାସସ୍ଥାନ:—ନଡିଆ ମରେଇ, ପୋ: ଥାନା—ଗୋବିନ୍ଦପୁର ଜି: କଟକ । ଆଜି ସତ୍ୟ ପାଠକରି ଘୋଷଣା କରୁଛି ଯେ ଏ ଆଫିଡାଭିଟ୍‌ର ବକ୍ତବ୍ୟ ବସ୍ତୁ ମୋ ଜ୍ଞାତସାରରେ ସମ୍ପୂର୍ଣ୍ଣ ସତ୍ୟ ।

୧—ଘଟଣାଟି ମୋ ପିଲାବେଳର ।

୨—ଘଟଣାଟିକୁ ବଢେଇ ଚଢେଇ ଲେଖିପାରୁନି । ଯେ ହେତୁ ଏ ଘଟଣାଟି ମୋ ଜୀବନରେ ଅବିସ୍ମରଣୀୟ ହୋଇ ଉଠିଛି, ତାକୁ ଉଲ୍ଲେଖିତ କରିଯିବା ସମୀଚୀନ ମନେକରି ଆଜି ଏ ଆଫିଡାଭିଟ୍ କରି ଯାଉଛି ।

୩—ମୋଚରାମ ବାଗଚ ମୋର ବନ୍ଧୁ । ପିଲାବେଳୁ ଆମେ ଏକ ସାଥିରେ କଟକର ଭିକ୍ଟୋରିଆ ସ୍କୁଲରେ ପଢୁଥିଲୁ । ମୋଚରାମ ବଡ଼ ଦୁଷ୍ଟ ଥିଲା । ବୁଲା ଦଳୁଆ ଘୋଡ଼ା ଖୋଜି ଚଢ଼ିବା, ଚଢ଼େଇ ଶିକାର କରିବା, ସାପଲାଙ୍ଗୁଡ଼ ଧରି, ତାକୁ ହାତରେ ଘୂରେଇ ଘୂରେଇ ମାରିବା, ନଈ ପହଁରିବା ଇତ୍ୟାଦି ସମସ୍ତ ଦୁଃସାହସିକ କାର୍ଯ୍ୟରେ ସେ ପାରଙ୍ଗମ ଥିଲା । ପଢ଼ାପଢ଼ିରେ ତାର ଆଦୌ ମନ ନ ଥିଲା । ସେ ଖୁବ୍ ଦୁର୍ଦ୍ଦାନ୍ତ ଥିବାରୁ, ସମସ୍ତେ ତାକୁ ଭୟ କରୁଥିଲେ । ସବୁ ଦୁଃସାଧ୍ୟ କାର୍ଯ୍ୟରେ ମୋଚରାମକୁ ନିଶ୍ଚିତ ଡକରା ହୁଏ ।

୪—ଆମ ଗାଁଠାରୁ ଛଅମାଇଲ୍ ଦୂରରେ ଗୋଟିଏ ଗାଁରେ ଥରେ ଖୁବ୍ ବେଶୀ ଭୂତ ଉପଦ୍ରବ ହେଲା । ସେ ଗାଁରେ ଅନେକ ଗୋରୁ ଗାଈ ମଲେ । ରାତିରେ ଭୂତ ହାବୁଡ଼ରେ ପଡି, ଭୟରେ ଝାଡ଼ାବାନ୍ତି ହୋଇ ଛଅମୁଣ୍ଡ ଗଲେ । ଭୂତ ରାତି ଅଧରେ ଯା' ଦୁଆର ମୁହଁରେ ଛୁଆଟିଏ ଧରି ଛୁଡ଼ାହୁଏ ତା ପରଦିନ ତା ଘରେ କିଛି ନା କିଛି ଗୋଟାଏ ଦୁର୍ଘଟଣା ଘଟେ । ବହୁତ ଗୁଣୀଟଣୀ ଆସିଲେ, ହେଲେ ଫଳ କିଛି ହେଲାନି । ଲୋକମାନେ ନିଶ୍ଚିତ ହେଲେ ଯେ ଗୋଟାଏ ଚରୁଣୀ ମାଡ଼ିଛି । ଲୋକମାନେ ପ୍ରତିଦିନ ରାତିରେ ନିଆଁ ଜଳିବାର ଦେଖୁଛନ୍ତି । କଥାଟା ଆଖପାଖ ଅଞ୍ଚଳ ଖୁବ୍ ବ୍ୟାପିଗଲା । ବନ୍ଧୁ ମେଳରେ କଥା କହୁ କହୁ, ମୋଚରାମ କଥାଟା ଶୁଣିଲା; ମାତ୍ର ସେ ଆଦୌ ବିଶ୍ୱାସ କଲାନି । ସାଙ୍ଗ ପିଲାଏ ବାଜି ମାରିଲେ, କଥା ହେଲା ଯଦି ମୋଚରାମ ରାତି ଅଧରେ ଶଶାନକୁ ନିର୍ଭୟରେ

ଯାଏ ଏବଂ ଫେରଆସେ ତାକୁ ପାଞ୍ଚଟଙ୍କାର ରସଗୋଲା ପୁରସ୍କାର ଦିଆଯିବ । ମୋଚିରାମ ଧଡ଼ କରି ହାତ ମିଳାଇଲା ।

୫ । ଆମ ଭିତରେ ଆଲୋଚନା ଚାଲିଲା, ଆମେ ଗୋକୁଲପୁର ଗ୍ରାମବାସୀଙ୍କୁ ବୁଝେଇବୁ ଯେ ମୋଚିରାମ ଜଣେ ଖୁବ୍ ଟାଣୁଆ ଗୁଣୀ ଏବଂ ସେ ଚର୍ଗୁଣୀଙ୍କୁ ଗ୍ରାମରୁ ବାହାର କରିଦେବ । ମୋଚିରାମ କିପରି ଲୁଗା ପିନ୍ଧିବ, କିପରି କଥା କହିବ, ସବୁକଥା ଠିକନଣ୍ଠି ସ୍ଥିର ହୋଇଗଲା । ଆସନ୍ତା ଦଶହରା ଛୁଟିରେ ଗୋକୁଲପୁର ଯିବାର ସ୍ଥିର ହେଲା । ଆମେ ଚାରି ପାଞ୍ଚଜଣ ମଧ୍ୟ ସାଥିରେ ଗଲୁ ।

୬ । ଗ୍ରାମବାସୀଙ୍କ ମନରେ ଦୃଢ଼ ବିଶ୍ୱାସ ଜନ୍ମାଇବା ପାଇଁ ବିଭିନ୍ନ ରକମର ଗ୍ରେଟ ଗ୍ରେଟ କାହାଣୀମାନ ଆମେ ଭିନ୍ନ ଭିନ୍ନ ଲୋକ ଭିନ୍ନ ଭିନ୍ନଢଙ୍ଗରେ କହିଗଲୁ । ପୂଜାପାଠ ପାଇଁ ସ୍ଥାନ ନିରୂପଣ କରାଗଲା । ଗାଁ ଠାରୁ ଖଣ୍ଡେ ଦୂରରେ ବିଲ ମଝିରେ ଗୋଟାଏ ଦଣ୍ଡା । ଚାରିଆଡ଼େ କିଆ ବଣ ଓ ସେଇଠି ମଶାଣି । କେତେଦିନ ଧରି ମଶାଣି ଆଡ଼େ କେହି ଗାଁ ଲୋକେ ଯାଉନାହାନ୍ତି । ଗାଈଆଳ ପିଲାଏ କହିଲେ, ପାଖ 'ଓଗ୍ରେଇ' ଠାକୁରାଣୀଙ୍କ ଗଛରୁ ଡାହି ହଣା ହୋଇଛି । କଥାଟା ଗ୍ରାମବାସୀଙ୍କ ମନକୁ ଆହୁରି ବିଭ୍ରାନ୍ତ କରିଦେଇଛି । ଗାଈଆଳ ପିଲାଏ ମଧ୍ୟ ଆଉ ମଶାଣୀ ପଡ଼ିଆ, ଦଣ୍ଡା ଆଡ଼େ ଗାଈ ଚରାଇବାକୁ ନେବା ବନ୍ଦ କରିଦେଲେଣି । ଚର୍ଗୁଣୀ ଗାଈ-ଗୁଡ଼ାଙ୍କୁ କି ଗ୍ରାସ କରୁଛି । ସଞ୍ଜ ଗଡ଼ିଲେ ଚର୍ଗୁଣୀ ଚିତାକାଳି ବସୁଛି । ଗଲା ସାତ ଆଠଦିନ ତଳେ ତଳସାହି ଗୋକୁଳ ପଧାନର ମା' ମଲା, ବୁଢ଼ୀଟାକୁ ନଈରେ ଭସାଇଦେଲେ, ମଶାଣୀ ଗଲେନି । ଲୋକମାନେ ଯେତିକି ଭୟଭୀତ, ସେତିକି ଉତ୍ୟକ୍ତ । ଧୋବା ଗଉଡ଼ର ଦୁ'ଦଟା ଗାଭିଲି ଗାଈ ଏକାଦିନକେ ମଲାଛୁଆ ଜନମ କରି ମରିଗଲେ । ଧୋବାଟା କାନ୍ଦି କାନ୍ଦି ନସ୍ୟାନ୍ତ । ହାଟରୁ ଫେରିବା ବାଟରେ ଦୁ'ଜଣ ଲୋକ ମୂର୍ଚ୍ଛା ଗଲେ । ନାଥିଆ ଦେହୁରୀ ଭଳି ମୋଟା କଲିଜାର, ଚଉଡ଼ା ଛାତିର ଟାଣୁଆ ମର୍ଦ୍ଦଟା ଝାଡ଼ାବାନ୍ତି ହେଲା, ଭାଗ୍ୟ ଟାଣରୁ ଉଧୁରି ଗଲା । ଚର୍ଗୁଣୀଟା ମାଇପି ଲୋକଙ୍କୁ ଗିରାସ କରୁଛି । ନେତି ଗଉଡ଼ୁଣୀ ପତର ଗୋଟେଇ ଯାଇ ଉଭିଲା, ସ୍ୟାଙ୍କୁ ଆସି ବାଳ ମୁକୁଳା କରି ଖାଲି ଗଡ଼ିଲା । ଜମିଦାର ଚୌଧୁରୀ ଲୋକନାଥ କାନଗୋଇଙ୍କ ବୋହୂ'କୁ ଗ୍ରାସ କରି କହିଲା 'ସାତମୁଣ୍ଡ' ନେବ । ଗାଁ ସାରା ଆତଙ୍କ । ସବୁକଥା ଶୁଣି ଆମେ ବାଜିକଥା ଭୁଲି 'ଛୁ' ମାରିବୁ ବୋଲି ସ୍ଥିର କଲୁ । କିନ୍ତୁ ମୋଚିରାମ ଜିଦ୍ ଧରିଲା, ତମେସବୁ ପାଞ୍ଚଟଙ୍କା ପାଇଁ ଛେଉରୁଛ । ଆମେ ରାଜିହେଲୁ, ପାଞ୍ଚଟଙ୍କା ଦେବୁ, କିନ୍ତୁ ଫେରିଯିବା । ସେ ପୁଣି ବଗିଡ଼ିଗଲା, କହିଲା "ମୁଁ କ'ଣ ଭିକ ମାଗୁଛି ।"

ଗାଁ ଲୋକଙ୍କ ଆଗରେ ବହପ ମାରି ଅନେକ କଥା କହିଦେଇଛୁ । ମୋଚିରାମ ବହୁ ଚର୍ଗୁଣୀ, ବାଘୁଲେଇ, ଭୂତ, ସଇତାନ କାବୁ କରିଛି । ତା ବାପା କେନ୍ଦୁଝରରେ ଗୁଣିଆ କରୁଥିଲେ; ସେଇଠି ସେ ଆଦିବାସୀ ଗୁଣିଆଙ୍କଠାରୁ

ଏସବୁ ଶିଖିଛୁ । ଲୋକେ ମଧ୍ୟ ବିଶ୍ୱାସ କରିଛନ୍ତି । ଏଣେ ନ ଫେରିବା ଲାଗି ମୋଚିରାମ ଜିଦ ଧରୁଛି । ଅଗତ୍ୟା ଘଟଣା ତାର ଗତାନୁଗତିକ ଧାରାରେ ଦିନଟି ସହ ଆଗେଇଲା ।

୭ । ଜମିଦାର ଲୋକନାଥ କାନଗୋଇଙ୍କ କଚେରୀ ହତା ଭିତରେ ଆମେସବୁ ରହିଲୁ । ଖାଇବା ପିଇବାର ସୁବନ୍ଦୋବସ୍ତ ହେଲା, ସଞ୍ଜବେଳକୁ ପୂଜା ହେବ— ସବୁ ଜନିଷ ବରାଦ ହୋଇଥିଲା ।

୮ । ସଞ୍ଜ ହେଲା, ଚୌଧୁରୀ ଘରୁ ନାଲି ପାଟଲୁଗା ଆସିଲା, ମୋଚିରାମ ନାଲି ପାଟ ପିନ୍ଧିଲା, ରକ୍ତ ଚନ୍ଦନର ଟିକା ନାଇଲା, ରୂପା ଜଡ଼ାର ରୁଦ୍ରାକ୍ଷମାଳା ବେକରେ ପକାଇଲା । ଗ୍ରାମଦେବତୀଙ୍କ ଅର୍ଚ୍ଚନା ହେଲା । ଧୂପ ଧୂପ, କର୍ପୂର, ଝୁଣା ଗନ୍ଧରେ ଠାକୁରାଣୀ ମୂଳ ମହକି ଉଠିଲା; ଢୋଲ, ଝାଞ୍ଜ ମୃଦଙ୍ଗ, ହରିବୋଲ, ହୁଳହୁଳିରେ ଠାକୁରାଣୀମୂଳ, ଗାଁ ସାରା କଂପିଉଠିଲା । ଆବାଲବୃଦ୍ଧବନିତା ଗାଁ ସାରା ଲୋକ ଠୁଳହେଲେ ଠାକୁରାଣୀ ମୂଳେ । ଆମେସବୁ (ଅର୍ଥାତ୍ ମୁଁ, ପୂର୍ଣ୍ଣାନନ୍ଦ, ପ୍ରଫୁଲ୍ଲ ଓ ରାଜ) ଶିହରି ଉଠୁଥିଲୁ ଅହେତୁକୀ ଆଶଙ୍କାରେ, ଅଜ୍ଞାତ ଭୟ ଓ ଅବ୍ୟକ୍ତ ବେଦନାରେ···କାଳେ କ'ଣ ? ଭୂତ ଭବିଷ୍ୟତ···(ଖେଳରୁ କାଳ ଉପୁଜିବା ଭୟରେ)

ପୂଜା ପରେ ମୋଚିରାମର ବରାଦ ଅନୁଯାୟୀ ତିନଟା କୁକୁଡ଼ା ବଳି ପଡ଼ିବ । ସେ ମଳା କୁକୁଡ଼ାକୁ ନୂଆ ମାଠିଆରେ ମନ୍ତୁରା ସିନ୍ଦୂର ଓ ଫୁଲମାଳ ସହ ଗ୍ରାମର ତିନିଦଗ, ତିନିମୁଣ୍ଡରେ ପୋତାଯିବ । ମୋଚିରାମ କୁକୁଡ଼ାଗୁଡ଼ିକୁ ଗୋଟିକ ପରେ ଗୋଟିଏ କାଟି, ପ୍ରଥମେ ପୂର୍ବ ଦିଗରୁ ଆରମ୍ଭ କରି ପୋତିବା ଆରମ୍ଭ କଲା । ଶହ ଶହ ଲୋକ, ବାଜାବାଲା, କୀର୍ତ୍ତନମଣ୍ଡଳୀ ସମସ୍ତେ ତା ପଛରେ ଚାଲିଥାନ୍ତି । ତା ଦେହ, ଲୁଗାପଟାରେ ରକ୍ତ ··ରକ୍ତ··· । ମୋଚିରାମ ହଠାତ୍ କେମିତି ଗୋଟାଏ ନୂତନ ଲୋକ ହୋଇଯାଇଥିଲା । କୁକୁଡ଼ା ପୋତିବା ପରେ ସେ ଘୋଷଣା କଲା ଯେ ଚିର୍ଗୁଣୀ, ସବୁଦିନ ପାଇଁ ଏ ତିନିଦଗରୁ ଗ୍ରାମ ଭିତରକୁ ପଶି ପାରିବନି । କେବଳ ରହିଗଲା ଉତ୍ତର ଦିଗ । ସେ ଦିଗରେ ଖଣ୍ଡେ ମନ୍ତୁରା ଲୁହା ସେ ପୋତିବ ଶ୍ମଶାନରୁ ଫେରି ।

୯ । ଶେଷରେ ବାଜାବାଲା, କୀର୍ତ୍ତନବାଲା, କିଛି ଗାଁ ଲୋକ ଠେଙ୍ଗାବାଡ଼ି ଧରି ଉତ୍ତରଦିଗ ଶ୍ମଶାନ ଆଡ଼କୁ ମୁହାଁଇଲୁ । ଦି'ଜଣ ଲୋକ ମଶାଲ ଧରିଥାନ୍ତି । କୀର୍ତ୍ତନ, ହରିନାମରେ, ହୁଳହୁଳିରେ ଗଗନ ପବନ କମ୍ପି ଥାଏ, ଆମେ ଯାଇ ଗାଁ ମୁଣ୍ଡ କଣ୍ଡରାଘର ପାଖ ଆମ୍ବତୋଟାରେ ସମସ୍ତେ ଅଟକିଗଲୁ ଦେଖିଲୁ ଶ୍ମଶାନରେ ନିଆଁ ଜଳୁଛି । ନିଆଁ ନୁହେଁ, ଚିର୍ଗୁଣୀ ଚିତା ଜାଳୁଛି । ଆମେସବୁ ଅତର୍କ୍ୟାରେ ପାଣି ହେଲୁଣି । ମୋଚିରାମକୁ ଚୁପଚାପ୍ କହିଦେଲୁ ଏଇଠି ଲୁହା ପୋତି ଦେ', ଚିର୍ଗୁଣୀ ଗାଁ ଭିତରକୁ ଆସିପାରିବ ନାହିଁ । ସେ କିନ୍ତୁ ନଛୋଡ଼ବନ୍ଧା । ଶ୍ମଶାନ ଯିବ ।

(ସେଠି ମଧ୍ୟ କହୁ ପକାଉଥାଏ, ଶଳାଏ ପାଞ୍ଚଟଙ୍କାକୁ ଡରୁଛ) । ଆମ ସାଥିରୁ ପୂନାନନ୍ଦ, ବାଇଧର ରାଜୁରାମ କୁ ମାରି ରହିଲେ । ଗାଁ ଲୋକ କେହିବି ଗଲେ ନି । ବାଜାବାଲା ଅଡ଼ିଲେ । ମୋଚିରାମର ଏକା ଜିଦ ସେ ଶ୍ମଶାନ ଯିବ । ମୁଁ ଯେହେତୁ ସାଥିରେ ନେଇଛୁ, ବାଧ୍ୟହୋଇ ଗୁଣିଆ ମାନିଆରେ ସାହାସ ବାନ୍ଧିଲି । ଧୋବା ଗଉଡ଼ ଗୋଟାଏ ହାତରେ ମଶାଲ, ଅନ୍ୟ ହାତରେ ଚିତା ଉପର ଠେଙ୍ଗାଟାଏ ଧରି ଚାଲିଲା । (ତା'ର ଦ' ଦ'ଟା ଗାଭିଲି ଗାଇ, ଦ' ଦ'ଟା କର୍ଥିଲା ବାଛୁରି ମରିଛନ୍ତି । ତା ମନ ଭିତରେ ହୁରୁ ହୁରୁ ହେଇ ଚିତା ଜଳୁଛି) । ମୋ ହାତରେ ଗୋଟାଏ କଟୁରି ଓ ମୋଚିରାମ ହାତରେ ଗୋଟାଏ ଲଙ୍ଗଳ ଲୁହା ।

୧୦ । ଶ୍ମଶାନ ଠାକୁରାଣୀ ବରଗଛ ଆରପାଖରେ ବାଲି ଝାମ୍ପି ରି କରି କିଏ ଗୋଟାଏ ନିଆଁ ଜାଳୁଛି । ଆଖି କଟମଟ କରି ଅନଉଛି । କୁଆଟାଏ କୁଆଁ କୁଆଁ କରି ରାବିଦେଲା । ଝଟକରି ଠାକୁରାଣୀ ଗଛରୁ ପଞ୍ଝାଏ ଶାଗୁଣା ଧଡ଼୍ ପଡ଼୍ କରି ଉଡ଼ିଗଲେ । ମୁଁ ଖୁବ୍ ଜୋର୍ ରେ ଚମକି ପଡ଼ିଲି । ଦେହସାରା ଝାଳ ବୁହିଗଲା । ଧୋବା ଗଉଡ଼ ଚିତ୍କାର କଲା 'ଚର୍ଗୁଣୀ' ଏବଂ ଖୁବ୍ ଜୋର୍ ରେ ଝପଟିଯାଇ ଠେଙ୍ଗାରେ ଶକ୍ତ ପାହାର ଦେଇ ଦୌଡ଼ିଗଲା; ମୁଁ ଗୁଣିଆଁ ରେ ଆଖିବୁଜି କଟୁରିଟାକୁ ଗୋଟାଏ ଦମ୍ ରେ ଫିଙ୍ଗିଦେଇ ତା ପଛେ ପଛେ ଚମ୍ପଟ ମାରିଲି । ମୋଚିରାମ ଝୁଣାପୁଳାଟାକୁ ଖୁବ୍ ଜୋରରେ ଚିତା-ନିଆଁ ଉପରକୁ ପକାଇ ଦେଇଥିଲା । ଝୁଣାଧୂଆଁ ର ଗନ୍ଧ ଓ ଗୋଟାଏ ଅହେତୁକ ଆଲୋକ ଭିତରେ, ଗୋଟାଏ ବିକଟ ଚିତ୍କାରରେ ସାରା ଶ୍ମଶାନଟା କମ୍ପି ଉଠିଥିଲା ।

ମୁଁ, ଧୋବା ଗଉଡ଼ ମୂର୍ଚ୍ଛା ଯାଇଥିଲୁ ଆମ୍ବତୋଟାରେ । ଲୋକେ ଆମକୁ ଟେକିଆଣି ଗାଁରେ ସାଷ୍ଟାମ କରିଥିଲେ । ମୋଚିରାମ ପୂର୍ବନିର୍ଦ୍ଧାରିତ କର୍ମସୂଚୀ ଅନୁଯାୟୀ ତୋଟାମୁଣ୍ଡରେ ଲଙ୍ଗଳ ଲୁହାରେ ସିନ୍ଦୁର ମାରି, ମନ୍ଦାର ଫୁଲର ହାର ଦେଇ, ଗାତ ଖୋଳି ପୋତିଥିଲା । ରାଶିଦଗରୁ ସେ ଚର୍ଗୁଣୀକୁ କାବୁ କରିଦେଲା ବୋଲି ଘୋଷଣା କଲା ।

୧୧ । ରାତିଯାକ ଗୋକୁଳପୁର ଗ୍ରାମଦେବତାଙ୍କ ସାମ୍ନାରେ କୀର୍ତ୍ତନ ହେଲା, ଆବାଳବୃଦ୍ଧବନିତା କେହି ଶୋଇନାହାନ୍ତି । ହରିନାମ କୀର୍ତ୍ତନରେ ଗାଁ ସାରା ଫାଟିପଡ଼ୁଥାଏ । ମୋଚିରାମ ହରେରାମ, ହରେକୃଷ୍ଣ ଗାଇ ଗାଇ ମାଟି ଉପରେ ଲୋଟିଯାଉଥାଏ ସକାଳ ପର୍ଯ୍ୟନ୍ତ ।

୧୨ । ସକାଳୁ ସମସ୍ତେ ସାହସ ବାନ୍ଧି ଶ୍ମଶାନ ଗଲେ । କଣ୍ଟା ଓଉଡ଼ାଳ ଓ ଡାଳ ବରଡ଼ାରେ ଗୁଳଟିଏ ହୋଇଛି ଓ ଗୁଳଘରଟିରେ ମରିପଡ଼ିଛନ୍ତି ଗୋଟାଏ କୃଷ୍ଣ-ବୈରାଗିଣୀ ଓ ଗୋଟିଏ ସଦ୍ୟଜାତ ଶିଶୁ । ବୈରାଗୀଟିର ତାଳୁ ଫାଟି ଲହୁଲୁହାଣ ହୋଇଯାଇଛି ଏବଂ ପିଲାଟିର ଦେହ କଟୁରି ଚୋଟରେ ଦ'ଗଡ଼ ହୋଇଯାଇଛି ।

ସମସ୍ତେ ଆବାକାବା ହୋଇ କାଠ ପାଲଟି ଗଲେ; ମୋ ଗ୍ରୀଡ ଭିତରେ କଟସ୍ତ ସ୍ନେହର ଆଘାତ ଓ ଯନ୍ତ୍ରଣା । ଏତିକିବେଳେ ଲୋକନାଥ କାନଗୋଇଙ୍କ ପୋଇଲ୍ ଗଧ ଭେଁ କରି କାନ୍ଦିଉଠିଲା ଓ ଉତ୍ତେଜିତ କାନଗୋଇଙ୍କ ଆଦେଶରେ ସେଇଠି ସାଥେ ସାଥେ ଲାସ୍ ଦୁଇଟାକୁ ଜାଳି ପାଉଁଶ କରି ଦିଆଗଲା ।

୧୩ । ଏ ଘଟଣା ପରେ ମୋଚିରାମ ଆମ ସାଙ୍ଗ ଛାଡ଼ିଲା, ସ୍କୁଲ ଛାଡ଼ିଲା । ବାପ' ମା' ଘରଦ୍ୱାର ଛାଡ଼ି ହଠାତ୍ ଫେରାର୍ ହୋଇଗଲା···ଆମେ କେହି ତା'ର ପତ୍ତା ପାଇଲୁନି ।

ମୋଚିରାମ ଥିଲା ବାପ ମା'ଙ୍କର ଏକମାତ୍ର ସନ୍ତାନ । ପୁତ୍ର ଚିନ୍ତାରେ ବାପ ମା' ଉଭୟେ ଅନ୍ଧାର ହୋଇଗଲେ ଏବଂ ମୁଁ ମୋର ବାପା, ମା ଭାଇ-ଭଉଣୀ ସମସ୍ତଙ୍କୁ ଛାଡ଼ି ତାଙ୍କ ଘରେ ରହିଲି; ପୁତ୍ର ନ ହୋଇ ପୁତ୍ରବତ୍ ତାଙ୍କର ଢଇଲ୍ ବଳରେ ସମସ୍ତ ସମ୍ପତ୍ତି ଭୋଗ କରୁଛି·····ବୁଢ଼ାବୁଢ଼ୀ ମଲେଣି ଆଜକୁ ୨୫ ବର୍ଷରୁ ଊର୍ଦ୍ଧ୍ୱ ହେବ—ତଥାପି ସେମାନେ ଅନ୍ଧାରରେ, ନିର୍ଜନ ସ୍ଥାନରେ, ସ୍ୱପ୍ନରେ ଆସି ମୋତେ ପଚାରନ୍ତି—'ବାପ ! ମୋଚିରାମ ଫେରିଛି ?

ମୁଁ କହେ···ବାପା, ମୁଁ ମୋଚିରାମ···ସେମାନେ ବୁଝନ୍ତି ନାହାନ୍ତି··· ବାରମ୍ବାର ମୋତେ ବ୍ୟସ୍ତ କରୁଛନ୍ତି "ବାପା ! ମୋଚିରାମ ଫେରୁଛି—"

ଆମ୍ବ ବାଗାନରେ, ବଉଳମୂଳେ, ବାଉଁଶ ବଣରେ···ଝଁଣଝଁଣ ଶବ୍ଦ, କଠୋଉର ଶବ୍ଦ···ତା'ପରେ "କି'ଣ ବାପ ମୋଚିରାମ ଫେରିଛି" ?

ମୋର ବୟସ ୫୭, ମୁଁ ବୁଢ଼ା ହେଲିଣି—ଏ ବୟସରେ ମୁଁ ଏ ଉତ୍ତର ଦେବାକୁ ଅକ୍ଷମ । ସେ ଶବ୍ଦ ମୋତେ ଅଥୟ କରୁଛି—ସବୁଠି ଶୁଣୁଛି ଝଁଣଝଁଣ କାଚ ଶବ୍ଦ, କଠୋଉର ଶବ୍ଦ··ମୋଚିରାମ ଫେରିବାର ପ୍ରଶ୍ନ···ତା'ର ପ୍ରତିଧ୍ୱନି··· ଆହାଃ ମୁଁ ଅତିଷ୍ଠ ।

ଉପରୋକ୍ତ ବିଷୟବସ୍ତୁ ସତ୍ୟ । ଏ ଆଫିଡାଭିଟ କରିଯାଉଛି—ସମୟରେ ଦରକାର ଆସିପାରେ । ଇତି ।

ପରିଚିତକାରୀ···
ମଧୁସୂଦନ ବହିଦାର
ଆଡ୍‌ଭୋକେଟ୍
କଟକ
ତା ୨୦-୮-୭୯

ଆଫିଡେଭିଟ୍‌କାରୀ
ବଳରାମ ଭଗତ



# ଈର୍ଷା

**● ଅଧ୍ୟାପକ ରତ୍ନାକର ଚଇନି**

ଶୋଭାଯାତ୍ରାର ଆଗରେ ଦେଖା ଦେଇଥିବା ସେଇ ଯୁବକ କେତୋଟି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ । ସେମାନେ ହାତ ଦେଖାଇ ଆଲୁଅବାଲାଙ୍କୁ ଠିକ୍ ଧାଡ଼ି ବାନ୍ଧି ଚାଲିବାକୁ କହୁଥିଲେ । ହସିହସି ତରୁଣ ବରଯାତ୍ରୀମାନଙ୍କୁ ସ୍ୱାଗତ ଜଣାଉଥିଲେ । ହଠାତ୍ କୁହ ମୁଣ୍ଡରୁ ସେମାନଙ୍କର ଏ ଆଦର ସମ୍ଭାଷଣ କନ୍ୟାପକ୍ଷର ସୌଜନ୍ୟର ପରିଚୟ ଦେଉଥିଲା ।

ସହରେ ତ ବାହାଘର ପ୍ରଶେସନ୍ । ଝୋକାଦଳଟା ବି ଏବେ ସବୁଠିଁ ଆସୁଥା । ସେମାନେ ଆଗରେ ବେଶ୍ ବେଶ୍ ପୋଷାକ ହେଇ ଚାଲିଥିଲେ । ମଝିରେ ବାଜାବାଲା ସିନେମା ଗୀତର ସ୍ୱର ଅନୁସରଣ କରି ବାଜା ବଜଉଥିଲେ । ତାଙ୍କ ପଛକୁ ବର ଚାଲିଥିଲା ଗୋଟାଏ କାର୍‌ରେ । ଆହା, ବିଚରାର ଅବସ୍ଥାକୁ ଦେଖିଲେ ଦୟା ଆସେ । ମଉନ, ଧୀରସ୍ଥିର ସୁଧାର ପିଲାଟିଏ । ସତେ ଯେମିତି ଜୀବନରେ ଟିକିଏ ହେଲେ ଭୁଲ କରିନି । ସବା ପଛରେ ଧୋତି ଆଉ ପଞ୍ଜାବୀର କୋରସ୍ ଲୁଚିଥିଲା ମୁଖିଆ ଲୋକଙ୍କ ପାଖରେ ।

ଶୋଭାଯାତ୍ରା ମନ୍ଥର ଗତିରେ ଆଗେଇଥିଲା । ମାତ୍ର ଆଗନ୍ତୁକ ଯୁବକ କେତୋଟି ବେଶ ଚଞ୍ଚଳ ଥିଲେ । ସହର ଯାଗାରେ ଶୋଭାଯାତ୍ରାର ମନ୍ଥରତା ହିଁ ଶୋଭନୀୟ । ବେଳେବେଳେ ଗାଡ଼ିମଟର ରିକ୍ସାର ଭିଡ଼ ଜମି ଯାଉଥିଲା । ଫଳରେ ଶୋଭାଯାତ୍ରା ଆଗେଇ ପାରୁ ନଥିଲା । ସେତିକବେଳେ ସେଇ ଯୁବକ-ମାନଙ୍କ ଦାୟିତ୍ୱ ଖୁବ୍ ବଢ଼ିଗଲା ଭଳି ମନେ ହେଉଥିଲା । ସେମାନେ ଚକ୍କାର କରି କହୁଥିଲେ, ଏ ରିକ୍ସା ! ତତେ କ'ଣ ଦିଶୁନି କି ବେ ! ପାଖା ଏଠୁ ! ପାଖା··· ଶଃ··· ! ପୁଣି ଗାଡ଼ିବାଲା ଉଦ୍ଦେଶ୍ୟରେ ପ୍ରତିବାଦର ସ୍ୱର···ହୋ, ଡ୍ରାଇଭର ବାବୁ ! ଟିକେ ଗାଡ଼ି ସାଇଡ୍ କର । ଇଏ ସମସ୍ତେ ଗୋଟିଏ ଗୋଟିଏ ନବାବ ! ଆରେ ବାବୁ, ଗାଡ଼ି ଗୋଟାଏ ପଟକୁ ରଖ ।

ଯାହାହେଉ, ଶୋଭାଯାତ୍ରା କନ୍ୟାଘର ପାଖରେ ପହଞ୍ଚିଲା ବେଳକୁ ଯଥେଷ୍ଟ ବିଳମ୍ବ ହେଇ ଯାଇଥିଲା । ସେମାନେ ଏକ ପ୍ରକାର ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ । ବାହାଘରର ଲଗ୍ନ ବି ହୋଇଗଲଣି । ବରଯାତ୍ରୀଙ୍କର ଖାଇବା ବନ୍ଦୋବସ୍ତ କରି ବାହାଘର ଆରମ୍ଭ କରିବାର ସିଦ୍ଧାନ୍ତ ହେଲା ।

ସବୁଠାରୁ ଆଶ୍ଚର୍ଯ୍ୟ କଥା, ଯେଉଁ ଯୁବକ ଦଳଟି ବର ପକ୍ଷଙ୍କୁ ଅଧାବାଟରୁ ପାଛୋଟି ନେଇଥିଲେ ସେମାନେ ମଧ୍ୟ ବରଯାତ୍ରୀଙ୍କ ଗହଣରେ ବସି ପଡ଼ିଥିଲେ । ବରପକ୍ଷ ଭାବୁଥିଲେ ଏମାନେ କନ୍ୟାଦଳର । କନ୍ୟାପକ୍ଷ ବରଯାତ୍ରୀ ବୋଲି ଭାବିବା ସ୍ୱାଭାବିକ ।

ଖାଇବା ପିଇବା ଆରମ୍ଭ ହେଲା । ସେଇ ଯୁବକ ଦଳଟି ବରଯାତ୍ରୀମାନଙ୍କ ସାଙ୍ଗରେ ବସି ପଡ଼ିଲେ । ଖାଇବା ଆରମ୍ଭ ହେଲା ପରେ ସେମାନଙ୍କ ଭିତରୁ ଜଣେ ଧୀରେ କହିଲା, ବୁଝିଲୁ ମଦନ ! ଏଥର ଆଉ ଧରା ପଡ଼ିବାର ଭୟ ନାହିଁ । ଖାଇ ସାରି ମଉକା ଦେଖି ଖସିଯିବା ।

ଅନ୍ୟ ଜଣେ ସେମିତି ଗୋପନୀୟତା ରକ୍ଷା କରି ଉତ୍ତର ଦେଲା, ଆରେ ଚୁପ୍ ହୁଅ । ଆମେ ଝପ୍‌ଝାପ୍ ହେଲେ ଦୁଇ ପକ୍ଷ ସନ୍ଦେହ କରିବେ ।

—ହେ, ମତେ କାହିଁକି ଭାରି ଭୟ ଲାଗୁଚି ।

—ତୋର ସ୍ୱାପ ଗ୍ରେଟ କଲିଜା ।

ଅନ୍ୟ ଜଣେ କଥାର ଖିଅ ଧରି କହିଲା, ତୁ ଯାହା କହ ଭାଇ ! ଏ ସବୁ କାମ ନେଇ ଆଣି ଧୋଇବା କାଠିକର ପାଠ । ପଦେ ପଦେକେ ଧରା ପଡ଼ିବାର ଭୟ ରହିଛି ।

ସାହସର ସହିତ ପୁର୍ବ ଜଣକ ଯୁକ୍ତି କଲା, ଆରେ ଏ ସହରରେ ଏମିତି କେତେ ବାହାଘର ପ୍ରତିଦିନ ହଉଚି । ବଜ୍ରେ ଲେଖାଁ ଏମିତି ଉପୁରି ମିଳିଗଲେ ଚଳିଯିବ । ସହରକେ ତ ବେକାରିଆ ଦଳ । ହଇରେ, କହିଲୁ ଭଲା, ଏମିତିଆ ଖିଆପିଆକୁ ଆମକୁ କିଏ ଡାକନ୍ତା ! ଏଠି କେହି କାହାକୁ ଚହ୍ନନ୍ତିନି । ବାପ ଭାବୁଥିବ ପୁଅର ବନ୍ଧୁ ; ପୁଅ ଭାବୁଥିବ ଭାଇର ଚହ୍ନା ଲୋକ । ଏମିତି ଲଟାଲଟିଆ ସମ୍ପର୍କ, ଦେ, ଜଲଦି ଖା ; ଯିବା ।

ଏଣେ କଥା ଛଳରେ କହୁ କହୁ ବରପିତା କନ୍ୟାପିତାଙ୍କୁ କହିଲେ, ସମୁଦି ! ଆପଣଙ୍କ ପିଲାମାନେ ମତେ ଖୁବ୍ ସାହାଯ୍ୟ କଲେ । ନ ହେଲେ ସହର ଭିତରେ ଯେଉଁ ଭିଡ଼ ନା, ମତେ ଆଉ ଘଣ୍ଟେ ଲାଗି ଯାଇଥାନ୍ତା ।

କନ୍ୟା ପିତା ବଳସ୍ଥୀ ହସ ହସୁହସୁ ସେଇ ପିଲାମାନଙ୍କ କଥା ଭାବୁଥିଲେ । କୋଉ ପିଲ ଯ୍ୱାଙ୍କୁ ସାହାଯ୍ୟ କଲେ ? ଆମ ତରଫର ପିଲାମାନେ ତ କାମରେ ବ୍ୟସ୍ତ ଥିଲେ । ଆଉ କେଉଁମାନେ ସ୍ୱାଙ୍କୁ ସାହାଯ୍ୟ କଲେ । ଯିଏ କରନ୍ତୁ ହୋ, ଆମରି ପ୍ରଶଂସା ତ ।

ମାତ୍ର ତେଣେ ଭୋଜନରତ ବରଯାତ୍ରୀ ଦଳରେ ସେଇ ପ୍ରଶ୍ନ ସମସ୍ତଙ୍କ ମନରେ ଉଙ୍କି ମାରୁଥିଲା । ଏ ଦଳଟି କୋଉ ପଟର ? ଆମ ପଟ ଲୋକ ତ ନୁହନ୍ତି । କନ୍ୟା ପକ୍ଷର ଲୋକ ହୋଇଥିଲେ ଆମ ସାଙ୍ଗରେ ବସି ଖାଆନ୍ତେ

କାହିଁକି ? କଥାଟା କ୍ରମେ ଜଣକ ପାଖରୁ ଅନ୍ୟ ଜଣକ ପାଖକୁ ପ୍ରସରିଲା । କାଳେ ସେମାନେ କାହାର ସାଙ୍ଗସାଥି ହୋଇଥିବେ; ସେଥିପାଇଁ ସମସ୍ତେ ସମସ୍ତଙ୍କୁ ପଚାରିଗଲେ । କଥାଟା ବର ପିତାଙ୍କ କାନକୁ ଗଲା ।

ବରପିତା ସ୍ପଷ୍ଟ ଜାଣିଥିଲେ, ସେମାନେ କନ୍ୟା ପକ୍ଷର । କିନ୍ତୁ ଏକା ସାଙ୍ଗରେ ବସି ଖାଇବାରୁ ସନ୍ଦେହ ବଢ଼ିଲା । କନ୍ୟା ପକ୍ଷର ଲୋକଙ୍କୁ ସେମାନଙ୍କ ପରିଚୟ ପଚାରିଗଲା । ସେମାନେ ମଧ୍ୟ ଉତ୍ତର ଦେଲେ ଯେ, ଆମର ଧାରଣା, ଏମାନେ ବରଯାତ୍ରୀ ଦଳର ।

ଏମିତି ଅନେକ ଲୋକ ବାହାଘରରେ ଖାଆନ୍ତି; ଏମାନେ ଖାଇଲେ ସେଥିରେ କିଛି କଥା ନଥିଲା । ମାତ୍ର ଦୁଇ ପକ୍ଷରେ ସନ୍ଦେହ ସୃଷ୍ଟି କରି ଯେଉଁମାନେ ଖାଉଥିଲେ, ସେମାନଙ୍କ ଉପରେ ଉଭୟ ପକ୍ଷରୁ ରାଗ ବଢ଼ିଲା । ଖିଆପିଆ ସରିଲା । କଥାଟା ଯେ ଇତି ମଧ୍ୟରେ ପ୍ରଘଟ ହୋଇଗଲାଣି, ଏ କଥା ସେ ଯୁବକ ଦଳଙ୍କୁ ଅଜଣା ନଥିଲା ।

ହାତ ଧୁଆଧୋଇ ସରିଲାବେଳକୁ ଉଭୟ ପକ୍ଷର ଲୋକେ ସେମାନଙ୍କୁ ଏକପ୍ରକାର ଘେରିଯାଇଥିଲେ । ଧରା ପଡ଼ିଯିବା ଭୟରେ କେତେଜଣ ବିବ୍ରତ ହୋଇ ପଡ଼ିଥିଲେ । ତଥାପି ସେମାନେ ପାନ ସିଗାରେଟ୍ ବଣ୍ଟା ଜାଗାରେ ଭିଡ଼ ଜମାଇଲେ । କନ୍ୟାପିତା ଏଥର ଆଉ ସମ୍ଭାଳି ହୋଇ ରହିପାରିଲେ ନି । ସେ ରାଗମିଶା କଣ୍ଠରେ ପ୍ରଶ୍ନ କଲେ, ଆପଣମାନେ କ'ଣ ବରଦଳର ?

—ନା !

ଜଣେ ଉତ୍ତର ଦେଲା ।

ଆଉ··· ?

କନ୍ୟାପିତାଙ୍କର ଶୁଖିଲା ଗଳାର ପ୍ରଶ୍ନ ।

—ଆମେ ସବୁ ବେକାରି ଦଳର ।

—ମାନେ ?

ଆଶ୍ଚର୍ଯ୍ୟ ହୋଇ କନ୍ୟାପିତା ପ୍ରଶ୍ନ କଲେ ।

—ମାନେ ଆଉ କ'ଣ ? ଚାକିରି ବାକିରି ନାହିଁ । ପେଟ ପୋଷିବାକୁ ସର୍ବନିମ୍ନ ସମ୍ବଳ ଆମ ହାତରେ ଜୁଟୁନି । ତେଣୁ କୌଣସି ଉପାୟରେ ଦିନ କଟାଇବାକୁ ଆମେ ଚେଷ୍ଟା କରୁଚୁ । ଆପଣ ଯାହାକୁ ହୀନବୃତ୍ତି କହିପାରନ୍ତି । ଏ ପୃଥିବୀରେ ବଞ୍ଚିରହିବା ପାଇଁ ଆମେ ଏହାଠାରୁ ଆହୁରି ହୀନତମ କାମ କରିବାକୁ କୁଣ୍ଠାବୋଧ କରୁନା ।

ବିରକ୍ତ ହୋଇ ବରପିତା କହିଲେ, ତମମାନଙ୍କ ମୁହଁକୁ ଲାଜ ନାହିଁ !

ଅବିଚଳିତ ତଥା ଗମ୍ଭୀର କଣ୍ଠରେ ଯୁବକମାନଙ୍କ ଭିତରୁ ଜଣେ ଉତ୍ତର ଦେଲ—ଲଜ୍ଜ ଆପଣମାନଙ୍କ ମୁହଁରେ ରହିବା ଉଚିତ । ସମାଜର ଏଭଳି ଅବସ୍ଥା ଜାଣି ମଧ୍ୟ ଆପଣମାନେ ତା ମୁହଁରେ ପୁଣି ଘୃଣା ଢାଙ୍କୁଛନ୍ତି ।

ସମସ୍ତେ ନୀରବ ଥିଲେ ।

ଯୁବକ ଦଳଟି ଆଉ କିଛି କହିବା ପୂର୍ବରୁ ସେ ସ୍ଥାନ ଛାଡ଼ି ଚାଲିଗଲେ । ସେଇମାନଙ୍କ ଯିବା ବାଟକୁ ସମସ୍ତେ ଚାହିଁ ଦେଖୁଥିଲେ; ଯତେ ଯେମିତି ଘୃଣାର ଅନ୍ତରାଳରେ ଚିରଦିନ ମୁହଁ ଢାଙ୍କିଥିବା ଗୋଟାଏ ତରୁଣୀ ଆଜି ପ୍ରଥମଥର ପାଇଁ ଖୋଲା ଦୁନିଆ ଦେଖୁଚି ।



( ଆକାଶବାଣୀ, କଟକଙ୍କ ସୌଜନ୍ୟରୁ )

# ଇଚ୍ଛାମାନେ

● ଶ୍ରୀ ପୂର୍ଣ୍ଣାନନ୍ଦ ଦାନୀ

ଆଜି ବଜାର ସାରା କି ମଜ୍ଜା ! ଆଜିର ବଜାରରେ କ'ଣ ବା ନାହିଁ ? ସବୁ ଦୋକାନକୁ ଦେଖ, ଯେମିତିକି ଗୋଟେ ଗୋଟେ ମୂକ; ଯେମିତିକି ଗୋଟେ ଗୋଟେ ଅକ୍ଟୋପାସ୍ । ସବୁ ଶୋଷିନେବେ । ସବୁ ଟାଣି ନେବେ ।

କି ମଜ୍ଜା ! ଆଜି କୌଣସି ପର୍ବ କି ? ସତରେ ଦୋକାନମାନଙ୍କୁ କିଣି ଆଣିବାର ଖୁବ ଇଚ୍ଛା; ଦୋକାନମାନଙ୍କୁ ପଶିବାର ଈର୍ଷା—ଅହଂକାର ।

ମୁଁ ମୋ' ପ୍ୟାଣ୍ଟ ପକେଟ୍‌ରେ ହାତ ପୂରେଇଲି । ପକେଟ ଶୂନ୍ୟ । ପକେଟମାନେ ସେମାନଙ୍କର ଦୈନ୍ୟ ପ୍ରକାଶ କରୁଛନ୍ତି । ଆହା, ପକେଟମାନେ କି କରୁଣ; କିଛି ଧରି ରଖିବାର ବି ଶକ୍ତି ନାହିଁ—ଦୁର୍ବଳ; ଚିରା । ମୋ ପ୍ୟାଣ୍ଟ ବି ଦୁର୍ବଳ । ସେହିପରି ଦୁର୍ବଳ ମୋର ହାଓ୍ୱାଇନ୍ । ସେହିପରି ଦସ୍ତଖତ ମୋର ଚଟି ହଳକ ।

ଶୂନ୍ୟ ପକେଟରୁ ଫେରି ଆସିଲା ମୋର ଶୂନ୍ୟହାତ ।

ସାମ୍ନା ହୋଟେଲ୍‌ରେ ମାଂସ ଚପ୍‌ର ପ୍ରଚଣ୍ଡ ବାସ୍ନା । ମଲ୍ଲୀ ଫୁଲ ରଙ୍ଗ ଭାତର ମଜ୍ଜା । ମଜ୍ଜା ଖାଲି ମଜ୍ଜା । ମୋର ଇଚ୍ଛାମାନେ ଖାଲି ମଜ୍ଜା ବୁଲୁଥିଲେ । ଅଥଚ ଇଚ୍ଛାମାନେ ସ୍ୱତଃ ଦବି ଯିବାକୁ ବାଧ୍ୟ ହେଉଥିଲେ । ହୋଟେଲ୍‌ରେ ଭାତଠାରୁ ମିଠେଇ ପର୍ଯ୍ୟନ୍ତ ସବୁ ଅଛି । ଅନେକେ ହୋଟେଲରେ ବସି ପାରୁଛନ୍ତି । ବସିବା ଅପେକ୍ଷା ରାସ୍ତାରୁ ଦୋକାନକୁ ଦେଖିବା ଲୋକ ଅଧିକ । ଇଚ୍ଛାମାନେ ଖାଲି ଡେଇଁ ବୁଲୁଛନ୍ତି ଏବଂ ହୋଟେଲ୍ ଅଲମିରାରେ ଠୋକ୍‌କରି ଖାଇ ଫେରି ଆସୁଛନ୍ତି ।

ମୋର ଆଗକୁ ବଢ଼ିଯିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ବଜାରସାରା କେତେ ଲୋକ । ଦୋକାନମାନ ନାନା ଦ୍ରବ୍ୟରେ ଭର୍ତ୍ତି । ପେଟ ଫୁଲେଇ ପଡ଼ି ରହିଛନ୍ତି ଦୋକାନମାନେ ଏବଂ ସେମାନଙ୍କୁ ଯେଉଁମାନେ ଜାବୋଡ଼ି ଧରି ରଖିବାର ଚେଷ୍ଟା କରୁଛନ୍ତି ସେମାନେ ଲେଖି ଦୋକାନୀଗଣ । ଚିରି ଯାଇଥିବା ହାଓ୍ୱାଇନ୍‌ର ଫିଲେଇକରା ଅଂଶତକ ମୋର ଦୃଷ୍ଟିଗୋଚର ହେବାରୁ ସାମ୍ନା ଲୁଗା ଦୋକାନକୁ ଅନେଇଲି ଝଲଝଲଆଙ୍କ ଭଲି । ଆଃ ! କେତେ ରଙ୍ଗବେରଙ୍ଗ ଜାଢଜାଢକା ଢନାମାନେ ମନଲୋଭା ଫୁଲ ପରି ଝୁଲୁଛନ୍ତି ।

ମୋର ଅବୁଝା ହାତ କାହିଁକି ଯେ ପୁଣି ଦୁଇ ପକେଟକୁ ପଶିଗଲା, ତାର କୈଫିୟତ ତ ଅତି ସହଜ। ଦସ୍ତାନସ୍ଥ ପକେଟମାନେ ନୀରବ ରହିବା ବ୍ୟତୀତ ସେମାନଙ୍କର ବା ଆଉ ଗତି କ'ଣ ? ମୁଁ ନିଜ ଉପରେ ଯାହା ନିତାନ୍ତ ଭାବେ ବିରକ୍ତ ହେଲି। ଇଚ୍ଛାମାନେ ଦବିଯିବାକୁ ବାଧ୍ୟ ହେଲେ।

ଅଥଚ ଦୋକାନରେ କେତେ ଲୁଗା ! ମୋ' ପ୍ୟାଣ୍ଟ ସାର୍ଟକୁ ଯେପରିକି ସେମାନେ ନିଲଜ୍ଜ ଭାବରେ ଟାହିଟାପରି କରୁଛନ୍ତି।

ଅଗତ୍ୟା ଆଗେଇବାକୁ ବାଧ୍ୟ ହେଲି। ଛିଣ୍ଡା ଚପଲର ଡାହାଣ ପଟର ଗୋଟେ କଣ୍ଟା ମୋତେ ବିରକ୍ତିକର ଯନ୍ତ୍ରଣା ଦେଉଛି। ମୋର ବାଁପଟେ ଯୋତା ଚପଲମାନଙ୍କ ଚଙ୍ଗ ଚଙ୍ଗ ଭାବ ଦୋକାନ ଭିତରେ। ଭିତରକୁ ଟାଣିନେବାର ଡାକ ସେ ଯୋତାମାନଙ୍କ ରଙ୍ଗରେ। ମୁଁ ଅବଶ୍ୟ ଯାଇ ପାରନ୍ତି ଭିତରକୁ। ଯୋତା ଚପଲମାନଙ୍କୁ ପିନ୍ଧିବାର ଅଭିନୟ ବି କରି ପାରନ୍ତି। କିନ୍ତୁ ମୋ ଚଟିର କଣ୍ଟା ଯନ୍ତ୍ରଣା ଦେଇ ମୋତେ ସୂଚାଇ ଦେଉଥିଲା ଯେ ସେ ଅଛି ଏବଂ ସେ ଥିବାଯାକେ ନିଶ୍ଚିତଭାବରେ ମୋର ଆନ୍ତରିକ ସେବା କରିପାରିବ। ଅବଶ୍ୟ ଦୋକାନରେ ବହୁ ଯୋତା ଚପଲ। ମୋର ଇଚ୍ଛାମାନେ ଅଥଚ ଦବିଯିବାକୁ ବାଧ୍ୟ ହେଲେ। ମୋର କରୁଣ ପକେଟଟି ଭଳ ଭଳ ହେଉଥିଲା ଏ ଭଳି ବିରାଟ ଦୋକାନମାନଙ୍କର ଗହଳି ଭିତରେ ହଜିଯିବାର ଭୟରେ।

ସେଲୁନ୍ ଭିତରକୁ ଅନେଇଁବାକ୍ଷଣି ମୋ' ଡାହାଣ ହାତ ଆପେ ମୋ' ଦୁଇ ଗାଲରେ ବୁଲି ଆସିଲା। ମୋ ଦାଢ଼ିମାନେ ମୋର ଅତି ପ୍ରିୟ ଭଳି ମୋ ଗାଲ ଛାଡ଼ିବାକୁ ନିତାନ୍ତ ନାରାଜ।

ଅଗତ୍ୟା ଦାଢ଼ି କଥା ନ କହିବା ହିଁ ଭଲ। ଦୋକାନ ତ ଅସୁମାର ଏବଂ ସେଥିଭିତରେ ଜିନିଷ ବି ଅସୁମାର। ସେମାନଙ୍କ ଭିତରକୁ ଅନେଇବା ମାନେଇ ଲୋଭକୁ ଡାକ ଆଣିବା। ଲୋଭ ସର୍ବଗ୍ରାସୀ। ତେଣୁ ସେମାନଙ୍କୁ ନ ଅନେଇଁବା ବୁଦ୍ଧିମାନର କାର୍ଯ୍ୟ ହେବ। କିନ୍ତୁ ଦୁଷ୍ଟ ଆଖି ଏହି ନିର୍ଦ୍ଦେଶ ମାନିବାକୁ ବାଧ୍ୟ ନୁହେଁ। ବାଧ୍ୟ ନୁହଁନ୍ତି ଇଚ୍ଛାମାନେ। କିନ୍ତୁ ଦୋକାନମାନଙ୍କୁ ଯେଉଁମାନେ ଜଗି ଛକି ବସିଛନ୍ତି, ସେହି ଦୋକାନୀମାନେ କଣ ଗୋଟେ ଗୋଟେ ପିଶାଚ ? ଇଚ୍ଛା ତେଣୁ ବାଧ୍ୟ ହୁଏ ଦବି ଯିବାକୁ।

"ଖଣ୍ଡେ ସିଗ୍ରେଟ୍ !"

ଦୋକାନୀ ମୋତେ ବଢ଼େଇଲା। ମୁଁ ଉଠାଇଲି ଜଳେଇବା ସମୟରେ କହିଲି—"ଆଜ୍ଞା, ପଇସା..."

ପକେଟମାନେ ଲାଜେଇ ଗଲେ। ମୁଁ ନିଳ'ଜଙ୍କ ପରି, ସିଗ୍ରେଟ ଓ୍ୟାପସ୍ ଦେବା ସମୟରେ ଦୋକାନୀ ଟାହି ଟାପରି କରି ମୋ' ଆଡ଼କୁ ତା'ର ବଡ଼ି ଅଙ୍ଗୁଳିଟି

ଦେଖେଇ କହିଲି—"ବାବୁ ହେଇଛନ୍ତି ବାବୁ ! ପଇସା ନାହିଁ, ମନ ସବୁ ସବୁ ।"

ମୁଁ ହୁଏତ ତାଙ୍କୁ ଗୋଟେ ଚଟ୍‌କଣି ଲଗେଇ ପାରିଥାନ୍ତି, କିନ୍ତୁ ଇଚ୍ଛା ବାଧ ହେଲି ଦେଖିବାକୁ । ଦୋକାନୀ ବିଚାରା ପ୍ରତି ଦୟା ହେଲି ଯେ ସେ ମୋତେ ଗୋଟେ ଅଙ୍ଗୁଳି ନିର୍ଦ୍ଦେଶ କଲା ସିନା, ମାତ୍ର ତା' ଆଡ଼କୁ ତା' ହାତର ଚାରୋଟି ଅଙ୍ଗୁଳି ନିର୍ଦ୍ଦେଶିତ ହୋଇ ରହିଥିଲା । ବିଚାରା ଦୋକାନୀ ବା କିପରି ବୁଝି ପାରିବ ସେଇ ଗୋପନୀୟ ରହସ୍ୟ ?

ଏହା ବୋଧେ ନିର୍ବାଚନ ସମୟ । ଧୂଆଁ ବାଣର ସମୟ । ଭୂଆଁ ବୁଲେଇବାର ସମୟ । ଝାମ ମାରି ନେବାର ସମୟ । ତେଣୁ ବୋଧେ କେତେକ କାନ୍ଥମାନଙ୍କରେ ନାନାଦି ଦଳମାନଙ୍କର ତଥାକଥିତ ଜନହିତକର କାର୍ଯ୍ୟର ସନ୍ଦେଶ ଲୋକମାନଙ୍କୁ ପହଞ୍ଚେଇ ଦିଆଯାଇଛି । ସବୁ ଦଳ ବୋଧେ ଧନୀ ଦରିଦ୍ରର ତାରତମ୍ୟ ରଖିବାକୁ ଚାହାନ୍ତି ନାହିଁ । ଜନହିତକର କାର୍ଯ୍ୟ ପାଇଁ ସଭିଏଁ ଚାଞ୍ଚଲ୍ୟ ପ୍ରକାଶ କରୁଛନ୍ତି ।

"ଆପଣଙ୍କ ହାତରେ—ଦେଶ ; ଦେଶର ଉନ୍ନତି ; ଆପଣଙ୍କର ସୁଖ ସମୃଦ୍ଧି ; ଆପଣଙ୍କର ଅତି ମୂଲ୍ୟବାନ ଭୋଟ ।"

ମୁଁ ଭିତରେ ହସିଲି ; "ମୋର ଶକ୍ତି, ମୋର ଭୋଟ, ମୋର ସୁଖ ସମୃଦ୍ଧି..."

( ଭୋଟ କଣ ଏକ ପ୍ରତାରଣା ? ) ନିର୍ବାଚନ ପ୍ରାର୍ଥୀ କୌଣସି ନେତାଙ୍କ ଭାଷଣରୁ କିୟଦଂଶ ମନେ ପଡ଼ୁଥିଲା । ସେ ଜନତାଆଡ଼କୁ ନିଜର ବଳି ଆଙ୍ଗୁଳି ନିର୍ଦ୍ଦେଶ କରି କହିଥିଲେ—"× × × ଏ ସବୁର ମୂଳରେ ଆପଣମାନେ... ଦେଶର ଏ ଦୟନୀୟ ପରିସ୍ଥିତି ପାଇଁ ଆପଣମାନେ ହିଁ ଦାୟୀ; କାରଣ ଆପଣମାନେ ଭୋଟର ଉପଯୁକ୍ତ ବ୍ୟବହାର କରିନାହାନ୍ତି × × ×" । କିନ୍ତୁ ଦୟା ଆସେ; ଆହା ! ସେଇ ନେତା ବୁଝିପାରୁ ନଥିଲେ ଯେ ଗୋଟେ ଅଙ୍ଗୁଳି ଜନତା ଆଡ଼କୁ ନିର୍ଦ୍ଦେଶ କରିଥିବାବେଳେ ତାଙ୍କର ଆଉ ଚାରୋଟି ଅଙ୍ଗୁଳି ତାଙ୍କୁହିଁ ନିର୍ଦ୍ଦେଶ କରୁଥିଲା ।

ନା, ଏ ପ୍ରସ୍ତରପଟ୍ଟଗୁଡ଼ିକ କେବଳ ପ୍ରାଚୀର ପଟରେ ହିଁ ରହିଯାଇଛନ୍ତି ସିନା ! ହସ ମାଡ଼େ, ସେଇ ପ୍ରସ୍ତରଟି ପାଇଁ "ପ୍ରତ୍ୟେକ ବ୍ୟକ୍ତିକୁ କାମ..."

ବସ୍ତୁତଃ ଏହାକୁ ନଜର ନ ଦେବାର କଥା । ସତରେ ପ୍ରତ୍ୟେକଟି ଲୋଭନୀୟ ଦୋକାନମାନଙ୍କରେ ଶୋଭା ପାଉଛନ୍ତି । କ'ଣ ବା ନାହିଁ ! ଅଥଚ ମୁଁ ଏକ ମୁଗ୍ଧ ଯୁବକ ମୋର ଇଚ୍ଛାମାନଙ୍କୁ ବାଧ୍ୟ ହୋଇ ଚପେଇ ଦେଉଛି । "ନାହିଁ ..ନାହିଁ..." କହୁଛି । ବଜାରଟା ବୁଲିବାହିଁ ସାର । ଯେହେତୁ ମୋର ପକେଟମାନ ଶୂନ୍ୟ । ମୋର କେବଳ ଅଛି ବିଶ୍ୱବିଦ୍ୟାଳୟର ଗୋଟେ ଦୁଇଟି ଡିଗ୍ରୀ, ମୋଡ଼ାମୋଡ଼ି ହୋଇ

ମୋ' ମାଆର ବାଉଁଶ ପେଟିଜାରେ ଦୁର୍ବଳ ଅବସ୍ଥାରେ । ତେଣୁ ମୋତେ ଖାଇବାକୁ ଦିଏ, ମୋର ସବୁ ଅଛି । ଅଥଚ ଏ ବଜାର ବୁଲିବା ଏକ ଶୂନ୍ୟତା । ଦୋକାନରେ ସବୁ ଅଛି, ଅଥଚ କିଛି ନାହିଁ । ମୁଁ ତ ବାବୁ, ମୋତେ କେହି ରିକ୍ସା ଖଣ୍ଡେ ଦିଅନ୍ତି ନାହିଁ ଚଳେଇବାକୁ । ମୋତେ ହୋଟେଲ୍ ବସ୍ତୁ କରିବାକୁ ମନା କରନ୍ତି ହୋଟେଲ-ମାଲିକ; କାରଣ ମୁଁ ଶିକ୍ଷିତ, ବାବୁ । ମୋର ଖଣ୍ଡେ ଜମି ନାହିଁ, ତେଣୁ ଚାଷ କରିବାର ମୋର ହକ୍ ନାହିଁ ।

ମୋର ତେଣୁ 'ନାହିଁ' 'ନାହିଁ' ଭିତରେ ସବୁ 'ଅଛି'ର ଭାବ । ଅଥଚ ମୁଁ ମୋର ଇଚ୍ଛାମାନଙ୍କୁ ଦବେଇ ଦେବାକୁ ବାଧ୍ୟ ହେଉଛି ।

ସେଇ ନେତାଙ୍କ ଭାଷଣ ମନେ ପଡ଼ୁଚି—"ମୋର ଶକ୍ତି, ମୋର ଶ୍ରେଷ୍ଠ ମୋର ସୁଖ ସମୃଦ୍ଧି । ମୁଁ ଚାହିଁଲେ, ସବୁ କିଛି କରିପାରେଁ । ମୋର ଇଚ୍ଛାମାନଙ୍କୁ ମୁଁ ରୂପ ଦେଇପାରେଁ ।

ସତ କଥା, ମୁଁ ଇଚ୍ଛା କଲେ, ସବୁ କରିପାରେଁ । ଦୋକାନମାନଙ୍କୁ ପଶିପାରେ ; ଦୋକାନକୁ ମୋର ସୁଖସମୃଦ୍ଧି ପାଇଁ ବ୍ୟବହାର କରିପାରେଁ । 'ନାହିଁ.. ନାହିଁ...' ଭିତରେ 'ଅଛି'ର ଭାବ ଜାଗ୍ରତ କରିପାରେଁ । ଇଚ୍ଛାମାନଙ୍କୁ ବସ୍ତୁତଃ ଅଯଥାରେ ସବୁବେଳେ ଚପେଇ ଦିଆଯାଇପାରେନା ।

ମୋର ଦୁଷ୍ଟ ପକେଟ୍‌ର କାରୁଣ୍ୟ ବିନା ମୋତେ ଦୋକାନମାନଙ୍କୁ ପଶିବାକୁ 'ନାହିଁ' 'ନାହିଁ' କରୁଛି । କି ଅଦ୍ଭୁତ କଥା ! ଦୋକାନ ମୋତେ କେତେ ସହଜରେ ମନା କରିପାରୁଛି । କିନ୍ତୁ କୋର୍ଟମାନଙ୍କରେ ଆଇନ୍‌ମାନେ ତାଙ୍କପାଇଁ ସବୁ କିଛି ସଞ୍ଚୟ କରି ରଖିଛନ୍ତି । ସେଥିରେ ମୋ ପାଇଁ ସବୁ ଅଛି । ହଁ, ତମେ ଭୋକିଲା ଥିଲେ ବି ଦୋକାନରୁ ଚାଉଳ ଗଣ୍ଡେ ଆଣିପାରିବ ନାହିଁ; ପିନ୍ଧିବାକୁ ଖଣ୍ଡେ କନା ବି ଆଣିପାରିବ ନାହିଁ । ସେଇଥିପାଇଁ ଆଇନ୍—ଆଇନ୍‌ରେ ସବୁ ଅଛି—ଆଇନ୍ ଜଗି ଚାଲ ; ନ ହେଲେ ତମେ ଦୋଷୀ । ଏପରିକି ଏ ପ୍ରତିଷ୍ଠିତ ସମାଜ ବି ତମକୁ ଗୋଟେ ଅଙ୍ଗୁଳି ନିର୍ଦ୍ଦେଶ କରି କହିପାରେ—"ତମେ ଅସାମାଜିକ ।" ଅବଶ୍ୟ ସମାଜର ଚିନ୍ତା ନାହିଁ ଯେ ଚାରିଟି ଅଙ୍ଗୁଳି ତା' ଆଡ଼କୁ ନିର୍ଦ୍ଦେଶ କରୁଛନ୍ତି ।

ସେଇ ନେତାଙ୍କ ଉକ୍ତି "... ମୋର ଇଚ୍ଛାମାନଙ୍କୁ ମୁଁ ସବୁ ଦେଇପାରେ । ମୁଁ ମଣିଷ । ମୁଁ ସବୁକିଛି କରିପାରେ ।"

ସତ କଥା, ମୁଁ ସବୁକିଛି କରିପାରେଁ ।

ଏଥରକ ମୁଁ ତ ହାଣ୍ଡିକୁ ଚାହିଁଲି । ହୋଟେଲ୍ ଭିତରେ ଏକ ଟେବୁଲ ଉପରେ ମଲ୍ଲୀଫୁଲ ରଙ୍ଗ ଭାତରୁ ମହକ ଉଠୁଛି । ମୋତେ ମହକାଇ ଦେଉଛି । ମୋ' ପେଟ ଭିତରେ ଭୀଷଣ କ୍ଷୁଧା । ମୁଁ କ୍ଷୁଧାର ସନ୍ତାନ ।

ମୁଁ ବାଁକୁ ଚାହିଁଲି । ଲୁଗା ଦୋକାନରେ ରଙ୍ଗବେରଙ୍ଗ ପ୍ୟାଣ୍ଟ ସାର୍ଟମାନ ଗଳାରେ ଝୁଲୁଛନ୍ତି । ରଙ୍ଗର ଚମକ ଖେଳେଇ ଦେଇଛନ୍ତି । ମୁଁ ଚମକି ଉଠୁଛି । ମୋ' ଦେହରେ ଚିରା ଲୁଗା । ମୁଁ ନଗ୍ନତାର ସନ୍ତାନ ।

ମୁଁ ବାଁକୁ, ଡାହାଣକୁ ବାରମ୍ବାର ଚାହୁଁଛି । ଦୋକାନକୁ ଚାହୁଁଛି । ଦୋକାନମାନଙ୍କରେ କି ଅଦ୍ଭୁତ ମହକ ! କି ଅଦ୍ଭୁତ ଚମକ !

ତା' ହେଲେ, ମୁଁ କଣ କରିପାରେଁ ?

ମୁଁ ସବୁକିଛି କରିପାରେଁ । ଇଚ୍ଛାମାନଙ୍କୁ ରୂପ ଦେଇପାରେଁ । ମୁଁ ଯେ ମଣିଷ । ମୁଁ ଯେ ନଗ୍ନତାର ସନ୍ତାନ । ମୁଁ ଯେ କ୍ଷୁଧାର ସନ୍ତାନ । ମୋର ସୁଖ ସମୃଦ୍ଧି—ମୋର ଶକ୍ତି ।

ହଁ, ମୁଁ ସବୁ କିଛି କରିପାରେଁ । ଦୋକାନମାନଙ୍କୁ ପଶିପାରେ । ଏପରିକି ଦୋକାନୀ ବି ବନିପାରେଁ । 'ନାହିଁ' 'ନାହିଁ'କୁ 'ଅଛି'ରେ ରୂପାନ୍ତରିତ କରିପାରେଁ । ମୋର ଇଚ୍ଛାମାନଙ୍କୁ ରୂପ ଦେଇପାରେଁ ।

ମୁଁ ଯେ ମଣିଷ— । ମୁଁ ଯେ ମୋର ନିଜ ଶକ୍ତି ।

ମୁଁ ତେଣୁ ସବୁ କିଛି ପାରେଁ । ସବୁ କରିପାରେଁ



# ତପ୍ତ ପାଣି • •ତାପ୍ତି ଘୋଷ

● ଶ୍ରୀ ଦେବୀ ମୁଖାର୍ଜୀ

ତପ୍ତପାଣି—ନାମ ନୁହେଁ । ଗରମ ପାଣି । ଅଛି ପାଖ ଉଷ୍ଣ ପ୍ରସ୍ରବଣ । ସେ ପାଣିରେ ଅନେକ ରୋଗ ଭଲହୁଏ । ଗୁରୁଆଡ଼େ ଦୀର୍ଘ ଧାନକ୍ଷେତ—ଦିଗ୍‌ବଳୟ ଯାଏଁ । ମଝିକ୍ଷେତରେ କୁଣ୍ଡ କରାହୋଇଛି—ପାଣି ଟକ୍‌ମକ୍ ଫୁଟୁଛି । ପାଣି ବେଶିହେଲେ ବୋହିଯାଉଛି ଅନ୍ୟ ଦୁଇଟି ସିମେଣ୍ଟକରା କୁଣ୍ଡକୁ । ବାଘମାରୁ ଅନେକ ପଛରେ—କରଦେଇ ଗୋଟେ ନାଲିଗୋଡ଼ିର ରାସ୍ତା । ସେ ରାସ୍ତାର ଶେଷ କୋଉଠି ପଚାରିବାର ଆବଶ୍ୟକତା ପଡ଼େନ ।

ତପ୍ତପାଣିର କୁଣ୍ଡ ଓ ଅନ୍ୟ ଦୁଇକୁଣ୍ଡ ଛଡ଼ା ଟିକଏ ଦୂରରେ କଅଁଳିଆ ବର ଓ ଓସ୍ତ ଦୁଇଟି ଗଛ । ଏବେ ସେ ଦୁଇଗଛର ବାହାଘର ହେଇଛି । ଗଛମୂଳେ ମାଟିର ଚଉତରା । ସରକାର କରିନାହାନ୍ତି । ଲୋକେ କରିଛନ୍ତି—ଧର୍ମ ଅର୍ଜନ ପାଇଁ । ସେଇମାନେ ବିଶ୍ରାମସ୍ଥଳୀ ।

ସବୁଆଡ଼େ ଆଖି ବୁଲେଇ ତାପ୍ତିଘୋଷ ଦୁଃଖ କଲେ । ଓଡ଼ିଆଙ୍କର ବୁଦ୍ଧି ନାହିଁ । ଗୋଟେ ରହିବାର ବନ୍ଦୋବସ୍ତ ଖାଲି ଥିଲେ କେତେ ଟୁରିଷ୍ଟ ଆସୁଥାନ୍ତେ ।

ମା'ଙ୍କୁ ଏଠରେ ତପ୍ତପାଣିରେ ଗାଧୋଇ ଦେବାପାଇଁ ତାପ୍ତିଘୋଷଙ୍କ ଯାତ୍ରା—ରବିବାରଟିଆ ଦେଖି । ତାପ୍ତି ଘୋଷ ଇଂରାଜୀ ଅଧ୍ୟାପିକା—କୌଣସି ଏକ ସରକାରୀ କଲେଜରେ । ଘର ବହୁକାଳରୁ ଓଡ଼ିଶାରେ । ସାଥିରେ ଅଧ୍ୟାପକ ବନ୍ଧୁ ତପନ ପଟ୍ଟନାୟକ । ଓଡ଼ିଆ ପଢ଼ାନ୍ତି । କବିତା ଲେଖନ୍ତି । ତାପ୍ତି ଘୋଷଙ୍କ ସ୍ୱଭାବରେ ତପନବାବୁ ତାଙ୍କ ବହୁଦିନ ଅନ୍ୱେଷଣର ଫଳ ।

ଟାକ୍ସି ଛିଡ଼ା ହେଇଛି ରାସ୍ତା ଉପରେ । ଡ୍ରାଇଭର ବିଡ଼ି ଟାଣୁଛି । ତାପ୍ତିଘୋଷ ଲୁଗା ବଦଳେଇ ସିମେଣ୍ଟ କୁଣ୍ଡରେ ଗାଧୋଇବାକୁ ଆଗେଇଲେ । ମା' କେତେବେଳୁ କୁଣ୍ଡର ସିମେଣ୍ଟ କରା ଧାରରେ ବସିଛନ୍ତି ତାଙ୍କ ଆର୍ଥ୍ରାଇଟିସ୍ ରୋଗଗ୍ରସ୍ତ ଗୋଡ଼ ଗରମପାଣିରେ ବୁଡ଼େଇ ।

ତପନ ଉଷ୍ଣ ପ୍ରସ୍ରବଣର କୁଣ୍ଡ ଭିତରକୁ ଚାହିଁଛନ୍ତି । କାଚକେନ୍ଦୁ ଶ୍ୟାମଳ ଜଳ । ତଳୁ ଝରୁଛି ଉଷ୍ଣ ସ୍ରୋତ—ପାଣିର ଉପର ପର୍ଯ୍ୟନ୍ତ । ଏଇ ଶ୍ୟାମବର୍ଣ୍ଣ—କୃଷ୍ଣଙ୍କର—ରାମଙ୍କର । ଏଇ ବର୍ଣ୍ଣକୁ ହିନ୍ଦୁମାନେ ଉଚ୍ଚତର ମନେକରି ଭଗବାନଙ୍କ ଯାଏଁ ସ୍ୱପ୍ନ ଦେଖିଛନ୍ତି । ମୁହଁରେ ଗନ୍ଧକ ବାସ୍ନା ବାଜୁଛି ।

—କ'ଣ ଦେଖୁଛ ?

—ଏ ପାଣି ଯେ ଏତେ ଗରମ—ଉପରୁ କ'ଣ ଜଣାଯାଏ ?

—ଆମମାନଙ୍କ ପରି ! ଉପରୁ କିଛି ବୁଝାପଡ଼େନି—ଅଥଚ ଭିତରେ···

ତାପ୍ତି ହସିଲେ ଶୁଖିଲା ହସ । ଜୀବନରେ ଯାହାକୁ ବି ସେ ପ୍ରେମ କରିଛନ୍ତି— ତା' ପାଖରେ ତାଙ୍କ ଅତୀତକୁ ଅଳ୍ପଦିନରେ ଖୋଲିଦେଇ ନିଜକୁ ମୁକ୍ତ କରିନେଇ ପାରିଛନ୍ତି । ମନ ଭିତରେ ତପ୍ତ ପାଣି ବହୁଛି । ତାକୁ ଚପେଇ ରଖି ଅଖିରେ ବୁହାଇବା ଅପେକ୍ଷା – ଅନ୍ୟ ଜଣକୁ କହିଦେଇ ସେ ନିଜେ ସାନ୍ତ୍ୱନା ପାଆନ୍ତି । ସୁରେଶ ଶୁଣିଛି ଶରଦେନ୍ଦୁ ବାନାର୍ଜି କଥା ଏବଂ ତପନ ଶୁଣିଛି ସୁରେଶ ଓ ଶରଦେନ୍ଦୁ ଉଭୟଙ୍କ ବିଷୟରେ ।

ତାପ୍ତି କୁଣ୍ଡର ପ୍ରଥମ ପାହାଚରେ ଗୋଡ଼ ଦେଇ ପାଣିକୁ ଖସିଲେ । ଡ୍ରାଇଭର୍ କଲେ ଧୂଆଁ ଛାଡ଼ି ଟାକ୍ସିରୁ ଏକଲୟରେ ଚାହିଁଛି କୁଣ୍ଡଆଡ଼େ । ତାପ୍ତି ଘୋଷ ସୁନ୍ଦରୀ ।

ତପନ ଧୂଜନପଣିଆରେ ଫେରିଲା ବର ଓ ଓସ୍ତ ଗଛର ଛାଇକୁ । ତାପ୍ତି ଦ୍ୱିତୀୟ ପାହାଚରେ ଗୋଡ଼ ଦେଇସାରି ତପନ ଆଡ଼େ ଚାହିଁ ହସୁଛନ୍ତି । ତପନ ଗଛର ଅନ୍ୟପଟକୁ ଚାଲିଗଲା । ତାପ୍ତି ଘୋଷ ପାହାଚ ପାହାଚ ଖସି କୁଣ୍ଡର ତଟାଣରେ ପହଞ୍ଚିବେଣି ।

ତପନ ଚାହିଁଲା ଦୂରର ପାହାଡ଼ ସବୁକୁ । ଏପ୍ରିଲ ମାସର ଖରା···ଦୂରର ପାହାଡ଼ ସବୁ ଧୂଆଁ ଧୂଆଁ ଲାଆ ଦିଶୁଛନ୍ତି ସ୍ୱର୍ଣ୍ଣ ସାମ୍ନା । ଅପର ଦାଗର ପାହାଡ଼ ସବୁ ସବୁଜ ସବୁଜ । ତାପ୍ତି ଘୋଷ ପୁଣି ପାହାଚ ଉପରକୁ ଉଠି ସାବୁନ ଲଗେଇଲେଣି ।

ଡ୍ରାଇଭର୍ ଟାକ୍ସିର ପଛ କାଚ ଦେଇ ସତୃଷ୍ଣ ନୟନରେ ଚାହିଁଛି ।

ତପନଙ୍କର ଦେଖିବାକୁ କିଛି ନାହିଁ । ଅନେକଥର ସେହି ଦେହର ସଂସ୍ପର୍ଶରେ ଆସିଛନ୍ତି । ତା'ପରେ କେଜାଣି କାହିଁକି ତାଙ୍କ ପ୍ରେମ ବେଶି ବଢ଼ିଛି । ଦେହରୁ ଦେହାତୀତ ? ତାପ୍ତି ଘୋଷ ଆହୁରି ବେଶି ସତେଜ ଦିଶନ୍ତି ରଢକ୍ଲାନ୍ତ କେଇଟି ମୁହୂର୍ତ୍ତ ପରେ । ତାଙ୍କ ଦେହ ଦିଶେ ଠିକ୍ ଯେପରି ସଦ୍ୟସ୍ନାତା । ତପନ ମନ୍ତବ୍ୟ କଲେ ସେ ହଠାତ୍ କହି ଉଠନ୍ତି—'କା'ର ଗାଏ ଧୁଏ ଏଲି···' ।

ତପନ ହସେ । 'ହାଜାର ବସ୍ତରେର ପ୍ରେମ କବିତା'କୁ ଗୋଟିଏ ଧାଡ଼ି । ସେ ଉପହାର ଦେଇଥିଲେ ତାପ୍ତିଙ୍କୁ ।

ତାପ୍ତି ଘୋଷଙ୍କ ପ୍ରେମ ପାହାଚ ଚଢ଼ିବା ପରି । ପ୍ରଥମ ପ୍ରେମ ଶରଦେନ୍ଦୁ ବାନାର୍ଜି ସହ । ଏକା କ୍ଲାସର ସାଥୀ । କ୍ୟାଣ୍ଟିନ୍—ଲାଇବ୍ରେରୀ·· ଉନ୍ମାଦନା ଭିବାହର ଗୋଟେ ଆଶା । ତାପ୍ତି ଘୋଷ ଶରଦେନ୍ଦୁ ପାଇଁ ଜନ୍ମମାଳ ଯାଇଛନ୍ତି । ସେ ପାହାଡ଼ ମଝିରେ ତାଙ୍କର ପ୍ରେମ । ଗୋଟିଏ ମାତ୍ର ଚମ୍ବନ ସେତେବେଳେ

ଯଥେଷ୍ଟ ଥିଲା—ରାତି ସାରା ନ ଶୋଇ ପଢ଼ିବାକୁ । ଶରଦେନ୍ଦୁ ଆଇ. ଏ. ଏସ୍. ପାଇଲା । ତା'ପରେ ଶରଦେନ୍ଦୁ ଘରେ ଅସୁବିଧା । ବିବାହ ସମ୍ବନ୍ଧ କିପରି ? ଏଡ଼ା ବୟସର ଯେ ହିଭସ୍ପେ ! ସତେ ଯେପରି ଶରଦେନ୍ଦୁ ଘରେ ଆଗରୁ ଜାଣି ନ ଥିଲେ । ସେ ବିବାହ କଲା ଅଲ୍ପଦିନ ପରେ ।

ତୃପ୍ତି ଘୋଷ ବହୁତ କାନ୍ଦିଛନ୍ତି । ସେଣ୍ଟିମେଣ୍ଟ ବିସ୍ଥାନ କେଇଟି 'ତମେ ଭଲ ଥିବ—ମନେ ପଡ଼ୁଛୁ' ଚିଠିକୁ ନେଇ ଶରଦେନ୍ଦୁଙ୍କୁ ମନେ ପକେଇଛନ୍ତି—ଦୋହରେଇ ପୁଣି ପଢ଼ି ରାତି ଉଜାଗର ରହିଛନ୍ତି । ମନ୍ଦିର ଯାଇଛନ୍ତି ସାନ୍ତ୍ୱନା ପାଇଁ ପ୍ରତି ଶୁକ୍ରବାର—ଶୁକ୍ରବାରର ମହତ୍ତ୍ୱ ବିଚ୍ଛେଦ ଲାଗି । ଜାଗର ଜାଳିଛନ୍ତି—ଜାଗର ଦିନ ଉପବାସ ରହିଛନ୍ତି ।

ତୃପ୍ତି ଓ ମା' କୁଣ୍ଡରୁ ଆସିଲେଣି । ସେ ଗଛ ଉହାଡ଼ରେ ଲୁଗା ପାଲଟିବେ । ତପନ ଗଛ ମୂଳ ଚଉତରାରୁ ଝାଙ୍କିକୁ ଆସିଲେ ।

× × × ×

ରାସ୍ତା ଖୁବ୍ ତାତି ଯାଇଛି । ଖୋର୍ଦ୍ଧାର ଲାଲି ଗୋଡ଼ି ରାସ୍ତା । ଧୂ ଧୂ ଖରା ନାଚୁଛି ରାସ୍ତାରେ—ଶୁଖିଲା ଧାନ କ୍ଷେତମାନଙ୍କରେ ।

ତପ୍ତ ପାଣିରୁ ଫେରିବା ବାଟରେ ସେମାନେ ଆସିଛନ୍ତି ଗୁରୁଜଙ୍ଗର ଧବଳେଶ୍ୱର ଦର୍ଶନ ପାଇଁ । ପ୍ରସିଦ୍ଧ ଦେବତା । ଡାକିଲେ ଜବାବ ଦିଏ ।

ଛୋଟ ସହର ଉପାନ୍ତରେ—ଏଇ ଛୋଟିଆ ମନ୍ଦିରଟି । ଚମ୍ପା ଓ ବଉଳ ଗଛ ଘେରା ମନ୍ଦିର ବେଢ଼ା । ଆଗରେ ଗୋଟିଏ ପୋଖରୀ । ପୂଜକ ମାଳୀ । 'ଗମ୍ଭିରା ଭିତରେ ଦେବତା ନାହିଁ ?' ତୃପ୍ତି ଆଶ୍ଚର୍ଯ୍ୟ ହେଲେ ।

—ଅଛି । ସେଇ ଯେ ଦେଖୁଛ—ଶକ୍ତି !

—ଲିଙ୍ଗ କାହିଁ ?

—ଏଠି ଲିଙ୍ଗ ନାହିଁ । କେବଳ ଶକ୍ତିର ପୂଜା ।

ତୃପ୍ତି ବୁଝିଲେ ଶକ୍ତିର Symbolକୁ । ମଝିରେ ପାଣି—ଯେଉଁଠି ଅନ୍ୟ ସମସ୍ତ ଶିବ ମନ୍ଦିରରେ ଲିଙ୍ଗ ଥାଏ । ମଣିଷର ଆଦିମ ପୂଜା—ଯୋନି ଓ ଲିଙ୍ଗରୁ ସର୍ପ—ପ୍ରଜନନ ଶକ୍ତି । ହିନ୍ଦୁ ହଜାର ହଜାର ବର୍ଷ ଧରି ପୂଜା କରୁଛି ଯୌନ ପ୍ରକ୍ରିୟାକୁ ।

'—ଆଜ୍ଞା ! ଭକ୍ତ ଥିଲେ—ଡାକ ଦିଅନ୍ତୁ । ପାଣିରୁ ବୁଦବୁଦା ଉଠିବ । ଜାଣିବେ ଦିଅଁ ଶୁଣିଲେ ।' ପୂଜକ ମାଳୀ ବୁଝଉଥିଲା—

ମାଳୀ ଆବାଜ୍ ଦେଲା । ବ୍ରାହ୍ମଣ ପୂଜା କରନ୍ତିନି ଏଠି । ବ୍ରାହ୍ମଣ୍ୟ ଧର୍ମକୁ ବେଖାତିର କରି ଆଜି ସୁଦ୍ଧା ଅବ୍ରାହ୍ମଣର ପୂଜା ଚାଲି ଆସିଛି । ମା' କହିଲେ

ଜଲଶାସ୍ତ୍ରୀ କର । ଗୋଟାକ ପରେ ଗୋଟେ ନା ସେ କହୁ ଯାଉଥିଲେ । ଅବଶେଷରେ ପୂଜକ ଫୁଲ ଦେଲା ତପନ ହାତରେ—ପାଣି ଚଢ଼ାଉଛୁ ।

ତପନ ଫୁଲଟାକୁ ବଢ଼େଇ ଦେଲେ ଚାପ୍ରିଙ୍କ ହାତକୁ ।

ଚାପ୍ରି ବାହାରକୁ ଆସିଲେ । ବାହାର ବଉଳ ଗଛ ତଳେ ବୈଶାଖ ଘମେଇ ପଡ଼ୁଛୁ । ଫୁଲଟି ଧରି ଚାପ୍ରି ଭାବୁଥିଲେ ସୁରେଶ କଥା । ସୁରେଶ ଖର୍ଗବ—ରଜସ୍ୱନାଲ କଲେଜର ପଞ୍ଜାବୀ ଅଧ୍ୟାପକ । ସାକ୍ଷାତ ଗୋଟେ ସେମିନାର୍‌ରେ ତା'ପରେ ସଂପର୍କ । କେତେ ଯେ ସେ କଟକରୁ ଦଉଡ଼ିଛନ୍ତି ଭୁବନେଶ୍ୱର—ଖାଲି ଟିକେ ସାନ୍ନିଧ ପାଇଁ ! ଶରଦେନ୍ଦୁ ବିଷୟରେ ସବୁ ଶୁଣି ତାଙ୍କ ମନରେ ତା' ପାଇଁ ଦରଦ ଲୁଆଡ଼େ ଆସିଥିଲା । ସଙ୍ଗୀତ ପ୍ରିୟ ସୁରେଶ ତାଙ୍କ ବ୍ୟଥିତ ସମୟରେ ଯଥେଷ୍ଟ ସାନ୍ତ୍ୱନା ଥିଲା । କଲେଜର ବଗିଚାରେ କ୍ଲାସ୍ ଆରମ୍ଭ ହେବା ଆଗରୁ ଶୀତ ସକାଳମାନ ଖୁବ୍ ମନୋମୁଗ୍‌ଧକର ହେଇଥିଲା । ସୁରେଶର ଚୁମ୍ବନ ଏବଂ ସ୍ପର୍ଶ ମରୁଆଲା କରୁଥିଲା । ଜଘନ ଓଦା ଲାଗୁଥିଲା—

ତପନ କୁହେ ପ୍ରେମ ପାହାଚ ଚଢ଼ିବା ପରି । ସୁରେଶ ଥିଲା ଶରଦେନ୍ଦୁ ପର୍ଯ୍ୟନ୍ତ ଚଢ଼ିଥିବା ପାହାଚଠୁ ଆଉ ଟିକେ ଅଧିକା । କିନ୍ତୁ ସୁରେଶ ତାଙ୍କୁ ନାୟିକାର ଅହମିକା ବୁଝେଇ ପାରିନି । ସେ କେବଳ ଚଢ଼େଇ ଦେବାର ସାହସ କରିଥିଲା— କିନ୍ତୁ ଶୀର୍ଷକୁ ନେଇନି ।

ତା'ପରେ ସେଦିନ···

ସୁରେଶ ଖର୍ଗବ—ତା' ସ୍ତ୍ରୀ ମିନାକ୍ଷୀ ରାଜନ୍‌ର ହାତ ଚୁମିବାର ସେ ଦେଖିଲେ । ମିନାକ୍ଷୀ ସହ ରାଜରାଣୀ ମନ୍ଦିରଠି ବୁଲିବାର ସେ ଖବର ପାଇଲେ । ତାଙ୍କୁ ପଚାରିଥିଲେ । କାପୁରୁଷ ପରି ସେ ମନା କଲା···ପୌରୁଷକୁ କନ୍ଦାକାଟ କରି କାନ୍ଦିଲା । ଅନୁନୟ କଲା ।

ଚାପ୍ରି ତାଙ୍କୁ ଘୃଣା କରିଥିଲେ—

ଛି···ପୁରୁଷ ଅନୁନୟ କ'ଣ କରିବା ଉଚିତ୍ ପ୍ରେମ ପାଇଁ ? ସେ ତା'ର ଅଧିକାର ଜାହିର୍ କରେ—ଛଡ଼େଇ ନିଏ । ଭିକ ମାଗେନି ।

ସୁରେଶ ଫୁଲ ଦେଇଛି କଲେଜ ବଗିଚାରୁ ଅନେକଥର—ଆଉ ଆଜି ତପନଙ୍କର ଏଇ ଫୁଲ ? ତପନ କେତେବେଳୁ ପାଖରେ ଛିଡ଼ା ହେଇଛନ୍ତି ।

—ପୂଜାଫୁଲ ତମେ ମତେ ଦେଲ କାହିଁକି ?

—ଆଦି ଶଙ୍କର ପୂଜାଫୁଲ ମୋ ଆଦି ନାରୀ ଛଡ଼ା ଅନ୍ୟ କାହାକୁ ଦିଅନ୍ତି ?

—ତୁମେ ତ କିନ୍ତୁ ବହୁ ନାରୀଙ୍କ ସାନ୍ନିଧ ପାଇଛ—ତୁମ ପତ୍ନୀଙ୍କ ଛଡ଼ା !

—ତୁମାଷ୍ଟ ଓ ନାସ୍ତି ମଧ୍ୟରେ ଯେଉଁ କ୍ଷୁଦ୍ର ପର୍ଦ୍ଦା, ତା'କୁ ମୁଁ ହଟେଇଛି କେବଳ ତୁମ'ର···ତେଣୁ ମୋର ଆଉ ନାସ୍ତି ତୁମେ–

ତାପ୍ତି ବୁଝୁଥିଲା—ତପ୍ତ ପାଣି ତା' ନାଭି ତଳେ। ତପ୍ତ ପାଣି ଉଛୁଳୁଛି ତା' ଜଘନର ଭିତର ଅଂଶରେ। ତା'ର ଇଚ୍ଛା ହେଉଥିଲା ତପନ ତା'ର ପୂଜା କରନ୍ତୁ—ଏକମାତ୍ର ତପନର ଡାକ ତପ୍ତପାଣି ଉଚ୍ଛୁଳାଏ।

ଟାକସି ବାଲା ଡାକୁଥିଲା ଜଟଣୀ ଯିବାକୁ।

× × × ×

ସନ୍ଧ୍ୟା ଖସୁଥିଲା ରେଲ ଇଞ୍ଜିନ ଧୂଆଁରେ। ଷ୍ଟେସନ ରେଲବାଇ ସହରଟିର ମୁଖ୍ୟ ବଜାର ଲେକାରଣ୍ୟ। କଟକଚଣ୍ଡୀ ମିଷ୍ଟାନ୍ନ ଭଣ୍ଡାର ଲାଉଡ-ସ୍ପିକର୍ ରୁ କେଉଁ ଗୋଟେ ଶସ୍ତା ସିନେମା ଗୀତର ଘୋ ଘୋ ଶବ୍ଦ।

ତାପ୍ତିଙ୍କୁ ଭୋକ ଲାଗିଲାଣି। ମା' ଦୋସା ଖାଇବେ। ଘ୍ୟ' ଟିକେ ଦରକାର ମଧ୍ୟ। ତପନର ଯାହାକିଛି ବି ଚଳିବ—ସାମ୍ନାରେ ତାପ୍ତି ଥିଲେ ଯଥେଷ୍ଟ। ତାପ୍ତିଙ୍କର କିନ୍ତୁ ମାଂସ ଦରକାର। ସକାଳ ଖାଇବାରେ କଲିଜା ତରକାରି ଭଲ ଲାଗିନି। ହାଡ଼ ଥିବା ମାଂସ ଦରକାର।

ତାପ୍ତି ଓ ତପନ ଇଂରାଜୀରେ କଥାବାର୍ତ୍ତା କରୁଛନ୍ତି ମା' ନ ବୁଝିବା ଲାଗି।

ଖଣ୍ଡେ ମାଂସକୁ କାମୁଡ଼ି ନେଇ ତାପ୍ତି ପ୍ରଶ୍ନ କଲେ—"ଯାହା କପରି ରହିଲା ?"

–ତମେ ଭଲରେ ଫେରିଲ ତ ?

—ସେଇଥିପାଇଁ ତ ତୁମକୁ ଭଲପାଏ। ତମେ ଚଢ଼େଇ ପାର ପାହାଡ଼ରୁ ପାହାଡ଼କୁ—ପୁଣି ଉତ୍ତରି ବି ପାର।

—ଏ ପାହାଡ଼କୁ ଆସି ଆଉ ପାହାଡ଼ ଚଢ଼ିବାକୁ ଇଚ୍ଛା ହେବନି ତ ?

—ପାହାଡ଼ ଉପରେ ଚଢ଼ି ଚଢ଼ି ଶୀର୍ଷକୁ ଯାଇହୁଏ; କିନ୍ତୁ ଯଦି ଜଣେ ଶୀର୍ଷକୁ ଚାଲିଯାଇଥାଏ ?

—ସେ କ'ଣ ସେଇଠି ରହିପାରିବ—ହୁଏତ ଖସି ଆସିବ ତଳକୁ···

—ତେନଜିଂ ବି ଏଭେରେଷ୍ଟରୁ ଓହ୍ଲେଇଛି—କିନ୍ତୁ ଶୃଙ୍ଗ ବିଜୟକର। ନାସ୍ତି ଗୋଟେ ବିଜୟୀ ଶୃଙ୍ଗ—

ବିବାହିତ ତପନ—ବାହାରର ଗହଳିଆ ସନ୍ଧ୍ୟାକୁ ଚାହିଁଥିଲା। ବାହାରେ ଧୂଳି ଉଡ଼ୁଛି। ଧୂଳି ଭିତରେ ସେ ନିଜକୁ ଖୋଜୁଥିଲା। ତାପ୍ତିର କେଡ଼େବଡ଼ ବିଶ୍ୱାସ !

—ଏ ମୁହୂର୍ତ୍ତି କ'ଣ ଚରମ୍ୟନ ହେବ ତାପ୍ତି ?

—ମୁହୂର୍ତ୍ତ କେବଳ ମୁହୂର୍ତ୍ତକ ପାଇଁ । ମଣିଷ ବଞ୍ଚେ ଗୋଟିଏ ସଫଳ ମୁହୂର୍ତ୍ତର ଆଶାରେ—ତା'ପରେ ସେଇ ସଫଳ ମୁହୂର୍ତ୍ତର ସ୍ମୃତିରେ ।

ତପନ ଚାହିଁଲେ ତାପ୍ତିଙ୍କ ଆଡ଼େ । ତାପ୍ତି ମାଂସ ପ୍ଲେଟ୍ ଖାଲି କରି ସାରିଲେଣି । ସେ ଭାବୁଥିଲେ ତପ୍ତପାଣିର ଟକ୍ ମକ୍ ଫୁଟୁଥିବା କୁଣ୍ଡ କଥା ।

ତାପ୍ତି ଏବେ ଜାଗର ଜାଳେନି—ଜାଗରରେ ଉପବାସ କରେନି । ଶୁକ୍ରବାର ମନ୍ଦିର ଯାଏନି । ମଥାରେ ଶ୍ୱେତମତ ନାଲିକୁଙ୍କୁମ ଲଗାଏ—ହାତରେ ଚୂଡ଼ି ପିନ୍ଧେ ।

ତାପ୍ତି ବିବାହ କରିନି ଲୌକିକ ପ୍ରଥାରେ । ତେଣୁ ମା' ହୋଇ ପାରିବନି । ସେ ଗର୍ଭ ନିରୋଧ ବଟିକା ଖାଏ ଶ୍ୱେତମତ ।

ତାପ୍ତି ହସୁଥିଲେ ।

—ମୁ କହୁନି—ଆମେସବୁ ତପ୍ତପାଣିର କୁଣ୍ଡ ପରି । ଉପରୁ କ'ଣ ଜଣାଯାଏ କୁଣ୍ଡର ପାଣି ଏତେ ଗରମ ବୋଲି !— ତପନ ହସର ଉତ୍ତର ଦେଲେ ।

—ଭୁଲ୍ କରୁଛ ତପନ । ମୁଁ ନାରୀତ୍ୱକୁ ଅସଂପୂର୍ଣ୍ଣ ଛାଡ଼ିବିନି । ମୁଁ ତୁମ ସନ୍ତାନର ଜନନୀ ବି ହେବି ।

—ତମ ମା', ଘର, ବନ୍ଧୁବାନ୍ଧବ ଓ ସମାଜ ?

—ମୋ କାମନା ଏ ସବୁଠୁ ବଡ଼···

ତପନ ଚାହିଁଥିଲା—ତାପ୍ତିଙ୍କୁ । ମା' ତାଙ୍କର ପାନର ବରାଦ କରୁଥିଲେ । ତାଙ୍କ ପାଇଁ ବୁଣ୍ଡିପାନ—

ତାପ୍ତିଙ୍କ ପାଇଁ ଜର୍ଦ୍ଦା ମିଠା ଏବଂ ତପନ ପାଇଁ ସାଧା ।

ତପନ କହିଲା—ମୋ ପାଇଁ ବି ଜର୍ଦ୍ଦାମିଠା ଖଣ୍ଡେ ।



# କମଳା

ଡଃ. ଗୋପାଳଚନ୍ଦ୍ର ମିଶ୍ର

"ଟାଙ୍ଗିଆ, ଟାଙ୍ଗିଆ" ବୋଲି ଦାଣ୍ଡର ଖେଳୁଥିବା ଶିଶୁମାନେ ପାଟି କରନ୍ତି । ଧୂଳି ଖେଳରେ ଗୋଟାଏ ଭୀଷଣ ଝଡ଼ ଆରମ୍ଭ ହୋଇଯାଏ । ଟାଙ୍ଗିଆ, ଟାଙ୍ଗିଆ, ଟାଙ୍ଗିଆ, ପିଲାମାନଙ୍କର ଅସ୍ପଷ୍ଟ ଦରୋଟି ବଦନରେ ଏହି ଶବ୍ଦ ଗୁଡ଼ାକ ଆତୁର ଭାବ ଉଦ୍ରେକକାରୀ, ବିସ୍ମୟ ଉତ୍ପାଦନକାରୀ ହୋଇଥାଏ । ହେଇ ଆସିଲାରେ, ହେଇ ଆସିଲାରେ, ଟାଙ୍ଗିଆ, ଟାଙ୍ଗିଆ ବୋଲି ପ୍ରତିଧ୍ୱନି ଆକାଶର ମଥାନ ଛୁଏଁ ।

ଆଚ୍ଛା 'ଟାଙ୍ଗିଆ' ତ ସେମିତି କିଛି ଅପମାନ ସୂଚକ ନୁହେଁ । ବହୁ ଅସାଧ୍ୟ କାର୍ଯ୍ୟ ଏହି ଟାଙ୍ଗିଆ ଦ୍ୱାରାହିଁ ସାଧ୍ୟ ହୋଇଥାଏ । ତେବେ ତାହା ହିଂସାର ପ୍ରତୀକ । ତାହା ମନରେ ହିଂସାର ବାତାବରଣ ସୃଷ୍ଟି କରିଥାଏ । କିନ୍ତୁ କେହି ଚଡ଼ନ୍ତି ନାହିଁ । ସେ କେବଳ ଟାଙ୍ଗିଆ ନାଁ ଶୁଣିଲେ ଚଡ଼େ । ଭୟଙ୍କର ପାଟିତୁଣ୍ଡ କରେ, ଗାଳି ଗୁଲଜ କରେ । ଅଭିଶାପ ଦିଏ, କ୍ରୁଦ୍ଧସ୍ୱରେ ପିଲାମାନଙ୍କୁ ଭର୍ତ୍ସନା କରେ । ଟାଙ୍ଗିଆ ନାଁ ଶୁଣିଲେ ତାର ସମସ୍ତ ଅସ୍ତିତ୍ୱ ସତେ ଅବା ବାତ୍ୟା ବିକ୍ଷୋଭିତ ସମୁଦ୍ର ତୁଲ୍ୟ ଗର୍ଜ୍ଜନ କରିଥାଏ ।

ଲୋକେ କହନ୍ତି ସେ ବାତୁଳାଣୀ । ଲୋକଙ୍କର କହିବାରେ କ'ଣ ଅଛି । ଅନେକ ଲୋକ ଅନେକ କଥା କହନ୍ତି । ସେହି ଲୋକେ କହନ୍ତି ସକ୍ରେଟିସ୍ ପାଗଳ, ଗାନ୍ଧି ପାଗଳ; ସେହିଲୋକେ ପୁଣି କହନ୍ତି ସେମାନଙ୍କ ବିଚାରରେ ସମଗ୍ର ଦୁନିଆ ବ୍ଲେର । ଧରିଯାଉ କୌଣସି ଏକ ଦୁର୍ଭେଦ୍ୟ ଅରଣ୍ୟ, ସେଥିରେ ବହୁତ ବୃକ୍ଷଲତାର ସମାହାର । ସବୁ ବୃକ୍ଷର ଫୁଲ ଫଳ କିନ୍ତୁ ସମାନ ନୁହେଁ; ଗୁଣ ମଧ୍ୟ ସମାନ ନୁହେଁ । କାହାର ଫଳ ଗୋଲ, ମିଠା, କାହାର ଫଳ ପିତା ଦେଖିବାକୁ ଅସୁନ୍ଦର । ଫୁଲ ଜଗତରେ ମଧ୍ୟ ସେହିକଥା । ତେବେ ତାକୁ ସମସ୍ତେ କହନ୍ତି ବାତୁଳାଣୀ । ପିଲାମାନଙ୍କଠାରୁ ବୁଢ଼ାଯାଏ ସମସ୍ତେ ତାକୁ ବାତୁଳାଣୀ ଶ୍ରେଣୀରେ ବିଭକ୍ତ କରି, ତା ପ୍ରତି ନ୍ୟାୟ କରିଛନ୍ତି କି ଅନ୍ୟାୟ କରିଛନ୍ତି, ତାହା କେହି ପାରିବେ ନାହିଁ । ତେବେ ସେ ଏ ସଭ୍ୟ ଶିକ୍ଷିତ ଲୋକଙ୍କ ନିକଟରେ ପାଠପଢ଼ୁଆ ଯୁବକ ଯୁବତୀମାନଙ୍କ ବିଚାରରେ ଏପରିକି ଗ୍ରାମ୍ୟ ଦାଣ୍ଡର ନିରୀହ ଅନଭିଜ୍ଞ ଖେଳୁଆଡ଼ ସରଳ ଶିଶୁମାନଙ୍କ ଦୃଷ୍ଟିରେ ବାତୁଳାଣୀ ବୋଲି ବିବେଚିତ । ଦାଣ୍ଡରେ ଟାଙ୍ଗିଆ ବୋଲି, ହୋ ହରିବୋଲ ପାଟି ଶୁଣିଲେ ବୁଝିବାକୁ ହେବ ସେହି ବାତୁଳାଣୀ ସେଠାରେ

ଦ୍ବାରର କବାଟ ସେ ସେହିବାଟେ ଯାଉଛି । ଧୂଳିଧୂସରିତ ଧରଣୀ ଶିଶୁମାନଙ୍କର ବିସ୍ତୃତ କ୍ରୀଡ଼ା ପ୍ରାନ୍ତରର; କିନ୍ତୁ ଧୂଳିର ସାଥୀ ଶିଶୁମାନଙ୍କର ଏହି ସମାଲୋଚନାରେ ହେତୁ କଅଣ ? ଗୋଟାଏ ଅପରିଚିତ, ଅଚିହ୍ନା, ଅସହାୟା ସ୍ତ୍ରୀ ଲୋକ ପ୍ରତି ଏପରି ନିଷ୍ଠୁର ଭାଷା ପ୍ରୟୋଗ କରି ନିର୍ଦ୍ଦୟ ଶିଶୁ କି ଆନନ୍ଦ ଲାଭକରନ୍ତି ତାହା ବାସ୍ତବିକ ସାଧାରଣ ଜୀବନର ବହିର୍ଭୂତ । ବଡ଼ ରହସ୍ୟମୟ, ବଡ଼ ବିସ୍ମୟ ଉଦ୍ରେକକାରି ଶିଶୁମାନଙ୍କର ଏହି ପ୍ରବୃତ୍ତି କି'ଣ ଚିରନ୍ତନ ସାର୍ବଜନୀନ, କି'ଣ ବିଶ୍ବ ବ୍ୟାପି ।

"ଟାଙ୍ଗିଆ, ଟାଙ୍ଗିଆ" ଆଣ ବୋଲି ଚିତ୍କାର ଶୁଣିଲେ ସେହି ସ୍ତ୍ରୀ ଲୋକଟି ପ୍ରଗଲ୍‌ଭ ହୋଇଉଠେ । ପୁଣି ନିର୍ଦ୍ଦୟ ଶିଶୁମାନଙ୍କ ସପ୍ତପୁରୁଷ ଶ୍ରାଦ୍ଧ କରି ଗୁଲେ, ବାପ, ମାଆଙ୍କର ଭର୍ତ୍ସନା, ତିରସ୍କାରଠାରୁ ଖୋଦ ଶିଶୁମାନଙ୍କର ଅଳ୍ପାୟୁଷ କାମନା କରିବା ଆରମ୍ଭ ହୋଇ, କ୍ରୋଧ, ଭୟଙ୍କର ଉତ୍ତେଜନା ତାର ପ୍ରତି କଥାରେ ପ୍ରକାଶ ପାଉଥାଏ । ନାସ୍ତି ହୋଇ ତାର ମନ କପରି ବୁଝେ କେଜାଣି, ସେ ଗାଳିଦେବାକୁ ଆରମ୍ଭ କରେ । "ରେ ଅଲ୍‌ବଇସିଆ ପିଲା, ସେ ଅଣବାବୁଆ ପିଲେ, ରେ ନିର୍ବଂଶିଆଘର ପିଲେ ତୁମ ମା'କୁ , ତୁମ ବାପାମାନଙ୍କୁ ବାଘ ଖାଉ । ତୁମ ଡିହରେ କୁକୁର ଶୋଉ, ତୁମେସବୁ ଗ୍ଲେଟା ହୁଅ, କେମ୍ପା ହୁଅ" । ଏହିପରି ପ୍ରଗଲ୍‌ଭ ଭର୍ତ୍ସନା ଶୁଣି କ୍ରୀଡ଼ାସକ୍ତ ଶିଶୁମାନେ ଆହୁରି ଚମକନ୍ତି । "ହୋଇରେ, ହୋଇରେ, ଗଲାରେ, ଗଲାରେ, ଟାଙ୍ଗିଆ, ଟାଙ୍ଗିଆ, ଆଣିବଟି ଆଉ" ।

ଏହାପରେ ବାସ୍ତାଣୀ ଆହୁରି ପାଟିତୁଣ୍ଡ କରେ "ଏ ପାଣ ପିଲେ, ଏ ବାଉଁଶ ପିଲେ, ଏ କଣ୍ଡରା ପିଲେ, ରେ ଛତରଖାଇ ପିଲେ, ତମକୁ ବାଘ ଖାଉ, ତମ ଘରେ ନିଆଁ ଲାଗୁ, ରେ ନିଆଁ ଲଗାଘର ପିଲେ" । ପିଲାମାନେ ଯେତିକ ଯେତିକ ସେହି ବାସ୍ତାଣୀର ପଛରେ ଧାଉଁଥିଲେ, ବାସ୍ତାଣୀ ସେମିତି ପାଟିତୁଣ୍ଡ କରୁଥିଲା ।

ବୟସ ପଇଁଚାଳିଶ କି ପଚାଶ ହେବ । ଖୁବ୍ ବଳିଷ୍ଠ ଚେହେରା, ତାର ମୁଣ୍ଡରେ କହରା କହରା ବାଳ । କିନ୍ତୁ ତାର ଓଜନ ଯେତିକ ତା' ଠାରୁ ଆହୁରି ଅଧିକା ଓଜନରେ ଦୁଇ ତିନଟା ବସ୍ତା ତା' ମୁଣ୍ଡ ଉପରେ । କମଳାର ଇତିହାସ ଅତି କରୁଣ, ଅତି ଦୁଃଖାନ୍ତକ । ଯିଏ ତାକୁ ଜାଣିଛି ସିଏ ନିଶ୍ଚୟ ସହାନୁଭୂତି ପ୍ରକାଶ କରିବ । ସେ ଦିନେ ବୋହୂ ହୋଇ ଶାଶୁଘରକୁ ଆସିଥିବ, ତା' ମୁଣ୍ଡରେ ସିନ୍ଦୁର, ଗଳାରେ ଫୁଲମାଳ ହସିଉଠୁଥିବ, ତାର ପ୍ରେମ ନିବେଦନରେ ତାର ପ୍ରେମିକ ଆତ୍ମହରା ହୋଇଥିବ, ସେସବୁ ଆଜି ତ କାହିଁ ନାହିଁ । ସେହି ପ୍ରେମାନୁରାଗର ଚିହ୍ନ ବର୍ତ୍ତି ନାହିଁ । ତାର ପ୍ରେମ ଜଳିଯାଉଛି । ତା ଜୀବନ ଜଳିଯାଉଛି । ଦୁନିଆରେ କେହି ମଧ୍ୟ ତାକୁ ଆପଣାର ବୋଲି ଦାବୀ କରିବାକୁ ନାହିଁ । ସେ ଅସହାୟା, ନିଃସହା, ସେ ପାଗଳୀ, ଦୁନିଆର ଏବ୍‌ଭରରେ ସେ ସେମିତି ଅପ୍ରତିଦ୍ବନ୍ଦ୍ବୀ ଗୋଟାଏ ଅଶ୍ରୁଭଙ୍ଗୀ ବିନ୍ଦୁ ମାତ୍ର ।

ଅନୁକୂଳର ବଜାର ଛକରେ, ଗଛତଳେ, କାହା ପିଣ୍ଡାତଳେ ସେ ଶୋଇଯାଏ । ଏଣୁତେଣୁ ଚକ ଚକ୍ କରୁଥାଏ ଯୌବନରେ ସେ ଥିଲା ପ୍ରେମିକାର ଉପଭୋଗ୍ୟା । ଆଜି ତାର ଏମିତି ଦୁଃସ୍ଥିତିରେ ସେ ଦୁନିଆସାରା ଛୁଆମାନଙ୍କର ଖେଳନାର ସାମଗ୍ରୀ । ଖାଲି ସେତିକି ନୁହେଁ, ଘରେ ଘରେ ମାଆମାନେ ମଧ୍ୟ ନିଜନିଜର ଦୁଷ୍ଟ ଛୁଆଙ୍କୁ ଶୁଆଇବାବେଳେ ଭୟ ଦେଖାଇ କହନ୍ତି—"ହେଇ, କମଳା ଆସୁଛି, ହେଇ କମଳା ଆସୁଛି ।" କମଳା ବାସ୍ତାଣୀ ନାମ ଶୁଣିବା ମାତ୍ରେ ପିଲାଏ ଶୋଇପଡ଼ନ୍ତି । ଭୟରେ ଆଖିରେ ଭରି ନିଦ ଆସିଯାଏ ।

ତାର ଦେହ ଖରାପ ହେବା କେହି କେବେ ଶୁଣିନାହିଁ । ତାର ଭୋକ ଉପାସ ଖବର କେହି କେବେ ରଖିନାହିଁ । ଦୁନିଆ କହେ, ସମସ୍ତେ କହନ୍ତି କମଳା ବାସ୍ତାଣୀ, କମଳା ବାସ୍ତାଣୀ । କମଳା କ'ଣ ଏସବୁ ରହସ୍ୟ ବୁଝିପାରେ । ବୁଝିଥିଲେ ତ ସେ ନିଶ୍ଚୟ ଜବାବ ଦିଅନ୍ତା । ସେହି ଲୋକମାନଙ୍କୁ ଠିକ୍, ଠିକ୍ ବତାଇ ଦିଅନ୍ତା—"ମୁଁ ପାଗଳୀ ନୁହେଁ, ଦୁନିଆ ଏମିତି ମୋତେ ଅସହାୟା କରି ରାଜପଥରେ ଠିଆକରି ଦେଇଛି । ସେ ହେଉଛି ଏହି ସମାଜ, ଏହି ରୁକ୍ଷ ନିଷ୍ଠୁର ସମାଜ, ଯେଉଁଠାରେ ଦୁଃଖୀର ଦୁଃଖରେ ଲୁହ ଝରେନାହିଁ, ଦୁଃଖିର ଦୁଃଖରେ ହସ, ଅଟ୍ଟ ଉପହାସର ବନ୍ୟା ଛୁଟେ ।

ଆଜି କମଳା ଏହିପରି ଏକ ଦୟନୀୟ ଚରିତ୍ର । ନାଳପାଣି ପିଇ, ହୋଟେଲ ଅଇଁଠା ଖଲିପତ୍ରର ରୁଟି, ଅଖା ଘୋଡ଼ାଇହୋଇ ସେ ବଞ୍ଚିବାକୁ ଚାହେଁ ଏଇ ବିରାଟ ପୃଥିବୀରେ । ସେହି ତା'ର ଜୀବନର ସାନ୍ତ୍ୱନା, ଆଉ ବୁଝାମଣା । ଛୋଟ ଛୋଟ ପିଲାମାନେ ଯେମିତି ତାକୁ ଚଢ଼େଇଲେ ସେ ପାଟିତୁଣ୍ଡ କରେ । ମାତ୍ର ସେ ବଞ୍ଚିବାକୁ ଚାହେଁ ଏହି ଦୁନିଆରେ ନିଷ୍ଠୁରତା ମଧ୍ୟରେ ।

ସେଦିନ ବସ୍-ଷ୍ଟାଣ୍ଡରେ କମଳା ପାଟିତୁଣ୍ଡ କରି ପିଲାମାନଙ୍କୁ ଗାଳି ଦେଉଥିବାର ଶୁଣାଗଲା । ବସ୍‌ରେ ଯେତେ ଯାତ୍ରୀ ଥିଲେ ସମସ୍ତେ ହସିଉଠିଲେ, କେହି କହିଲା "ଏଇଟା ଏମିତି ପାଗଳଟା, ଏଇଟା ଏମିତି ଡାଣ୍ଡରେ ବାଟଘାଟରେ ବୁଲୁଥାଏ" ।

ଯୁବକ ଡାକ୍ତର ସୁବ୍ରତ, ତାଙ୍କର ମନେପଡ଼ିଲା "ଏମିତି ଗୋଟାଏ ପାଗଳୀ ଥରେ ତାଙ୍କ କ୍ଲିନିକ୍‌କୁ ଆସିଥିଲା । ଏମିତି ଏଣୁତେଣୁ ଗପୁଥିଲା । ତାର ଆତ୍ମୀୟମାନେ ବଡ଼ ଚିନ୍ତିତ ଥିଲେ ସେ କିପରି ଭଲ ହେବ ।

ପୁଣି ଚକ ଲେଉଟିଲା, ଡାକ୍ତରଙ୍କ ଚିକିତ୍ସାରେ ତା'ର ମାନସିକ ବେଦନା କ୍ରମେ କ୍ରମେ ହ୍ରାସ ହୋଇଗଲା । ସେ ପୁଣି ସୁଖରେ ଘରଦ୍ୱାର କରିଥିଲା । ତେବେ ଅନୁକୂଳ ବଜାରର କମଳା ବାସ୍ତାଣୀ ଯେମିତି କ'ଣ ଭଲ ହେବନାହିଁ ?

# ଅରଣ୍ୟ : ରାତ୍ରିର ନୀରବତା

● ଶ୍ରୀମତୀ ବୀଣାପାଣି ମହାନ୍ତି

ନିଜକୁ ଭୁଲେଇବା, ନିଜକୁ ଠକିବାଠାରୁ ମର୍ମାନ୍ତିକ ଯନ୍ତ୍ରଣା କିଛି ନାହିଁ !

ନିରଞ୍ଜନକୁ ଏପରି ଏକ ଅବସ୍ଥାର ସମ୍ମୁଖୀନ ହେବାକୁ ହେବ ଏକଥା ସେ କେବେ ଭାବି ନ ଥିଲା । ସବୁ କଥାରେ ତାର ବାହାଦୁରୀ ପଣ ଏମିତି ଗୋଟାଏ ମାଟି ଖେଳଣା ପରି ଚୁରମାର୍ ହୋଇଯିବ ସେ ଭୁଲ୍‌ରେ କଳ୍ପନା ବି କରି ନଥିଲା !

ପାଠପଢ଼ା, ଘୁଙ୍କରା, ଦଳ, କମିଟି, ସଭା ସମିତି, ସବୁଠି ସେ ଅଛି ପୁଣି ନାହିଁ ! କୌଣସିଟି ତାର ମନଃପୂତ ନୁହେଁ, ଅଥଚ ସେ କରୁଛି ! କାରଣ ତା'ଛଡ଼ା ତାର ଅନ୍ୟପଥ ନାହିଁ । ମାତ୍ର ନିବୋଲାରେ ନିଜ ଭିତର ଭିତରେ ଲୁଚି ରହିଥିବା ଅନ୍ୟ ଏକ ମଣିଷକୁ ସେ ବୋଧ ଦେଇ କହୁଛି 'ବ୍ୟସ୍ତ ହୁଅନା, ବ୍ୟସ୍ତ ହୁଅନା, ସବୁ ଠିକ ହୋଇଯିବ ।'

ମାତ୍ର ଆଜି ପାନ ଦୋକାନର କଚ୍‌ ଦଉଡ଼ିରେ ସିଗାରେଟରେ ନିଆଁ ଲଗେଇ ଲଗେଇ ନିଜର ଛବିଟା ଯେମିତି ତାକୁ ଖତେଇହୋଇ ଉଠିଲା ଆଉ ଭିତରର ମଣିଷଟା କାନେ କାନେ ପଚାରିଲା—

"କେବେ ଠିକ୍ ହେବ ରେ ମୂର୍ଖ ? ଆଉ କେତେଯୁଗ ଲାଗିବ ?"

ସିଗାରେଟ୍ ପ୍ୟାକେଟ ରଖିବା ବାହାନାରେ ସେ ନିଜ ଭିତରେ ହାତ ବୁଲାଇ ଆଣିଲା ! ନା—ଅନ୍ୟ ମଣିଷଟି ତା' ଭିତରେ ଖୁଜୁବୁଜୁ ଅସ୍ଥିର ହେଉଛି ! ତା' କଥାରେ ବିଶ୍ୱାସ କରୁନି ।

ସବୁଦିନ ପରି ନିଜକୁ ଆଉ ଥରେ ଦର୍ପଣରେ ଦେଖିବାକୁ ନିରଞ୍ଜନ ଆଜି ଇଚ୍ଛା କଲାନି ।

ମେସ୍‌କୁ ଫେରି ଏତେ ଶୀଘ୍ର ଲାଭ ନାହିଁ ! ଖଟସାର ଗୁରପୋକ । ଘରସାର ମଶା ଆଉ ବନ୍ଧୁମାନଙ୍କର ଜ୍ୱାଳା ଯନ୍ତ୍ରଣାର ଗୁଞ୍ଜନ ଶୁଣିବାକୁ ଇଚ୍ଛା ନାହିଁ, ଧୈର୍ଯ୍ୟ ବି ନାହିଁ !

ସିଗାରେଟ ଟାଣି ଟାଣି ସେ ରାସ୍ତା ଉପରକୁ ଉଠିଗଲା ।

ଫୁଟ୍‌ପାଥରୁ ଦୋକାନିଗୁଡ଼ା ଜିନିଷ ସଜାଡ଼ି ବୁଲିଯିବାକୁ ବ୍ୟସ୍ତ ହେଲେଣି । ଦୋକାନର କବାଟଗୁଡ଼ା ଦର ଆଉଜା ହୋଇଲେଣି !

ହଠାତ୍ କଣଟାଏ ପାଦ ଆଙ୍ଗୁଠିରେ ବାଜି ଗଡ଼ିଗଲା । ଗ୍ରେଟ ବଲ୍ ଟାଏ ! ନା—ବଲ୍ ନୁହେଁ ! ପେଣ୍ଡୁ । ନିରଞ୍ଜନ ସେଇଟି ଗୋଟେଇ ପକେଟ୍‌ରେ ରଖିଲା ଅନ୍ୟମନସ୍କ ଭାବରେ ।

ଆଗରେ ଗୋଟାଏ ଫୁଲ ଦୋକାନ ! ଗୋଟାଏ ମଲ୍ଲୀମାଳ ହାତରେ ଧରି ନିରଞ୍ଜନ କିଣିବ କି ନାହିଁ ଭାବୁ ଭାବୁ ରବୀନ୍ଦ୍ର ଆସି ଛିଡ଼ା ହେଲା ତା' ପାଖରେ ! ସାଙ୍ଗହୋଇ ଦି'ଜଣ ପଢ଼ି ଏକା 'ସଗରେ ଏକା ଅଫିସରେ ଚାକିରି କଲେ ! ତଫାତ୍ ଏଇଆ—ରବୀନ୍ଦ୍ର କଚୁଢନ ହେଲା ଏକ ଧନୀ ପରିବାରର ଏକମାତ୍ର ଅନ୍ଧୁଣୀ କନ୍ୟାକୁ ବିବାହ କରି ଧନୀ ହୋଇ ଯାଇଛି ଏବଂ ମେସ୍ ଛାଡ଼ି ଶ୍ୱଶୁର ଘରେ ରହୁଛି ।

ରବୀନ୍ଦ୍ର ତାକୁ ଆଶ୍ଚର୍ଯ୍ୟ ଆଖିରେ ଅନାଇଛି । ସତେ ବା ନିରଞ୍ଜନ ଏକ ଅପରାଧ କରିଛି ! ନିଜ ଅନିଚ୍ଛାରେ ନିରଞ୍ଜନ ପଚାରିଲା—

"ତୁ କିଣିବୁ ନା କଣ ?"

"ନା—ଏତେ ରାତିରେ ତୁ ଏକୁଟିଆଟା ଏ ଗଳି ରାସ୍ତାରେ...ଫେର୍ ମଲ୍ଲୀମାଳ ! ବ୍ୟାପାର କଣ ?"

"କିଛି ନାହିଁ ! ମୋ ନିଜର ସଉକ୍...... !"

ବିରକ୍ତିରେ ପଚଶ୍ ପଇସା ଫୋପାଡ଼ି ଦେଇ ରିଷ୍ଟୱାଚ୍ ତଳକୁ ମଲ୍ଲୀମାଳଟା ଗୁଡ଼ାଇ ଗୁଡ଼ାଇ ରବୀନ୍ଦ୍ର ନ ଅନାଇ ଏକମୁହାଁ ଚାଲିବାକୁ ଆରମ୍ଭ କଲା ନିରଞ୍ଜନ ।

ଭିତରର ମଣିଷଟା ଚିତ୍କାର କରି ଗ୍ରୀବ ଭିତରୁ ପଦାକୁ ଝାମ୍ପ ଦେବାପାଇଁ ସତେ ବା ପ୍ରସ୍ତୁତ ହୋଇଗଲାଣି ! ତାର ପ୍ରସ୍ତୁତିରେ ନିରଞ୍ଜନର କଅଁଳ କଲିଜା ଫାଟି ଫାଟି ଯାଉଛି ।

ସେଇପରି ଅବସ୍ଥାରେ ନିରଞ୍ଜନ ଚାଲୁ ଚାଲୁ ରାସ୍ତା ଉପରେ ନୀରବତା ଲକ୍ଷ୍ୟ କରୁଥିଲା । କ୍ରମଶଃ ରାସ୍ତାର ଦୁଇ କଡ଼ ପାଚେରୀରେ ମରାହୋଇଥିବା ବିଜ୍ଞାପନର ଛବି, ନିର୍ବାଚନ ସ୍ଲୋଗାନ, ସିନେମା ପୋଷ୍ଟର, ଅଶ୍ଳୀଳ ଲେଖା ଆଉ ଇଲେକ୍‌ଟ୍ରିକ୍ ଖୁଣ୍ଟ ତାକୁ ସ୍ପଷ୍ଟ ହୋଇ ଦିଶିଲା ଏବଂ ଏକ ଜୀବନ୍ତ ମଣିଷ ପରି ମନେ ହେଉଥିଲା !

ନିରଞ୍ଜନ ଚାଲୁ ଚାଲୁ ଗତି ମନ୍ଥର କଲା । ରାସ୍ତା ତଳକୁ ପଲମାରି ରହିଥିବା କୁଡ଼ିଆ ସାମ୍ନାରେ ପଥର ଚିରା ଦେଇ ହାଣ୍ଡିରେ ବସିଛି ଭାତ । ନିଆଁ ଜଳୁଛି ହୁରୁ ହୁରୁ । ଆଉ ତା'ପାଖକୁ ଲାଗି ଦି'ଟା ପିଲା, ସ୍ତ୍ରୀ ପୁରୁଷ ପାଞ୍ଚଜଣ ହେବ ବସିଛନ୍ତି । ସେ ଭାବିଲା, ସାମ୍ନାରେ ପଡ଼ିଥିବା ପଥର ଉପରେ ବସିବ ଆଉ ସେମାନଙ୍କ ସଂଗରେ ଗପିବ ! ମାତ୍ର...... ।

ସେମାନେ ବଲବଲ କରି ଆଶ୍ଚର୍ଯ୍ୟଭାବରେ ଅନାଇଲେ । ଝିଅଟିକୁ ତା' ମା' ସତର୍କତା ସହକାରେ ଚମୁଟି ଦେଲା ! ସେ ଉଠି ଚାଲିଗଲା ଘର ଭିତରକୁ । ତା' ଭିତରୁ ଜଣେ ଉଠିପଡ଼ି ସନ୍ତର୍ପଣରେ ଆଗେଇ ଆସିଲା—ସଂଯୋଗ ନେବାକୁ ନୁହେଁ...ଘଉଡ଼େଇ ଦେବାକୁ ।

ନିରଞ୍ଜନର ଭିତର ମଣିଷଟା କଇଁ, କଇଁ ହୋଇ ବାହୁନି ଉଠିଲା !

ଅଗତ୍ୟା ନିରଞ୍ଜନ ଫେରି ପଡ଼ିଲା । ରାସ୍ତାଟା ମନେ ହେଲା ବଡ଼ ଆପଣାର । ଏହାରି ଉପରେ ଚାଲିଥିଲାବେଳେ କେହି ତାକୁ ପ୍ରଶ୍ନ କରିବେନି...କେହି ତାକୁ ତଡ଼ି ଦେଇ ପାରିବେନି । ରାସ୍ତାରେ ତାର ଅଧିକାର ଅଛି; ମାତ୍ର ତାର ଦୁଇ ପାଖରେ ଥିବା ଅସଂଖ୍ୟ ପୃଥିବୀ ଉପରେ ତାର ଇଞ୍ଚେମାତ୍ର ଅଧିକାର ନାହିଁ । ସେମାନଙ୍କର ମଧ୍ୟ ତାକୁ ଅଂଶ ନ ଦେଲେ ନାହିଁ, ଅନ୍ତୁଟିଏ ଆଦର କରି ସ୍ୱାଗତ ଜଣାଇବାର ଡାକନ୍ତି ନାହିଁ... ।

ନିରଞ୍ଜନ କାନ୍ଦି ନ ଥିଲା ସତ, କିନ୍ତୁ ରୁମାଲଟା ନିଜ ଆଖି ଉପରେ ସେ ବୁଲାଇ ଆଣିଥିଲା !

ଗଳି ଗଳି ଦେଇ ସେ ଯେ କେଉଁ ଗଳିରେ ପଶିଯାଇଥିଲା, ଝାପ୍‌ସା ଝାପ୍‌ସା ଆଲୁଅରେ ସେ ବୁଝି ପାରୁନଥିଲା ! ଚାଲି ଚାଲି କ୍ଳାନ୍ତ ଲାଗିଲାଣି । ଖିଆପଣ ଜୋରରେ ଶୋଷ ହେଲାଣି ! ଟୋପାଏ ପାଣି ମିଳିଲେ ସେ ନିର୍ବିଘ୍ନରେ ମେସ୍‌କୁ ଫେରି ଯାଇ ପାରନ୍ତା··· !

ପାଣି ? ଓଃ ! ବଡ଼ ଶୋଷ ! ଘଣ୍ଟାରେ କିନ୍ତୁ ବାର ବାଜିଗଲାଣି । ଏତେବେଳେ ପାଣିମିଳିବା ଦୁଷ୍କର ।

ନିରଂଜନ ଏଣିକି ତେଣିକି ଅନେଇ ଦେଖିଲା କୋଡ଼ିଏ ପଚିଶ ହାତ ପଛରେ ଥିବା ଗୋଟାଏ ଘରର ଦ୍ୱାର ମେଲା ଅଛି । ରିକ୍‌ସାରୁ ଓହ୍ଲାଇ ଦୁ'ଜଣ ଲୋକ ଘର ଭିତରକୁ ପଶି ଯାଉଛନ୍ତି ! ନିରଂଜନ ହଠାତ୍ ଭାବି ନେଲା ସେଇ ଘରୁ ଟୋପାଏ ପାଣି ପିଇ ନେଇ ସେ ରିକ୍‌ସାଟା ନେଇ ମେସ୍‌କୁ ଚାଲିଯିବ··· ।

ରିକ୍‌ସାକୁ ଅଟକାଇ ସେ ବାରଣ୍ଡା ଉପରକୁ ଉଠିଯାଇ କବାଟ ଠକ୍ ଠକ୍ କଲା ।

ସ୍କର୍ଟ ପିନ୍ଧା ବାର ତେର ବର୍ଷର ଝିଅଟିଏ ଧାଇଁ ଆସିଲା ଏବଂ ତାକୁ ଦେଖି ଚିତ୍କାର କରି ଉଠିଲା—

"ବାପା ! ବାପା ! ସେଇ ବଜାଖି ଟୋକା ଆସିଛି··· । ବୋଉ ! ବାପା ! ଧାଇଁ ଆସ······ବଜାଖି ଟୋକା ଆମ ଘରକୁ ଆସିଛି···!"

ଝିଅଟାର ଆର୍ତ୍ତନାଦ ! ସେ ମୂର୍ଚ୍ଛା ହୋଇ ଯିବ କି ଆଉ ?

ନିରଂଜନ ଏପରି ଅପ୍ରତ୍ୟାଶିତ ସମ୍ବୋଧନ ପାଇଁ ପ୍ରସ୍ତୁତ ନଥିଲା ! ସେଇ ଚିତ୍କାରରେ ଝିଅର ବୋଉ ଓ ବାପାଙ୍କର ଧାଇଁ ଆସିବାର ପାଦ ଶବ୍ଦ ସହିତ ସମାନ ଗତି କରି ବିପର୍ଯ୍ୟସ୍ତ ଢଙ୍ଗରେ ନିରଂଜନ କୁଦାମାରି ଧାଇଁ ଚାଲିଗଲା ! କୁଆଡ଼େ କେତେ ବାଟ ଯେ ସେ ଦଉଡ଼ି ପଳାଇଲା, ସେ ଜାଣି ପାରିଲା ନାହିଁ !

ଅବଶେଷରେ ତାର ପାଦ ଥମିଲା ଆସି ମେସ୍ ପାଖରେ । ଭିତର ମଣିଷଟା ତାକୁ ଧକ୍କା ମାରି ମାରି କେମିତି ଯେ ନେଇ ଆସିଲା କେଜାଣି !

ମେସ୍ ସାମ୍ନା ଦୋକାନରେ ବିଜ୍ଞାପନ—'Things go better with Coca cola', ଆଉ ବାମ ପଟ ପାନ ଦୋକାନରେ ଝୁଲ ଆଙ୍ଗୁଠି ଗ୍ରୁପ-ମସ୍ତ 'ଆନାସିନ୍'ର ସବୁଜ ପାମ୍ଫଲେଟ ! କେଜାଣି କାହିଁକି ସେ ଚମକି ପଡ଼ିଲା ! ନିରଂଜନର ତଣ୍ଟି ଶୁଖି ଯାଉଛି ଆଉ କପାଳଟା କଟ୍ କଟ୍ କରି ବିନ୍ଧୁଛି !

ନିରଂଜନର ଭିତର ମଣିଷଟା ଦମ୍ ନେଉଥିବା ତାର କଅଁଳ କଲିଜା ଭିତରେ ଠୋ ଠୋ କରି ହସି ଉଠିଲା !

ସେ ଏଥର ଦ୍ରୁତରେ ହାତ ନ ବୁଲାଇ ପକେଟ୍‌ରୁ ପେଣ୍ଡୁଟି କାଢ଼ି ବଲ୍ ଖେଳିବା ଭଙ୍ଗୀରେ କୁଦା ମାରିବାକୁ ଆରମ୍ଭ କରିଦେଲା······!!!



# ଅଙ୍କୁରୋଦ୍‌ଗମ

● ଶ୍ରୀ ଗୌର ପଟ୍ଟନାୟକ (ବେତାର)

## ( ଏକ )

ଲିଲିର ଆଖି ଯୋଡ଼ିକ ବେଶ୍ ଟଣା ଟଣା । ଅଧରରେ ଲାଗି ଥାଏ ହସର ପ୍ରଲେପ । ତାକୁ ଦେଖିଲେ ମୋର ପେଟ ପୂରିଯାଏ । ଲିଲି ମୋ ଜୀବନର ସମସ୍ତ କ୍ଲାନ୍ତି ଅବସାଦକୁ ଅପହରଣ କରି ମତେ ଆନନ୍ଦର ଖୋରାକ ଦିଏ । ଲିଲି ପାଇଁ ମୁଁ ଏ ଦୁନିଆଁ ରଙ୍ଗମଞ୍ଚରେ ବଞ୍ଚିବାକୁ ଚେଷ୍ଟା କରୁଛି କହିଲେ ହୁଏତ ଅତିରଞ୍ଜିତ ହେବ ନି ।

ମତେ ଦେଖିଲାମାତ୍ରେ ତା'ର ବାବ୍‌ରିବାଳକୁ ବାଁ ହାତରେ ଆଡ଼େଇ ଦେଇ ଜଣେ ପ୍ରଗଲ୍‌ଭା ନାୟିକା ଭଳି ମୋ କୋଳରେ ଲେଟି ପଡ଼େ ମୋଠୁଁ ସ୍ନେହ-ମମତା ଦାବୀ କରି । ତାର ଗୋଲାପୀ ଗଣ୍ଡରେ ଅଜସ୍ର ଚୁମ୍ବନର ସ୍ୱାକ୍ଷର ଆଙ୍କି-ଦେଇ ମୁଁ ସ୍ୱର୍ଗୀୟ ସୁଖପ୍ରାପ୍ତିର ଆନନ୍ଦ ଅନୁଭବ କରେ ।

ପରେ ପରେ ଦୁଇଟି ପୁଅ ସନ୍ତାନ ହରାଇଲା ପରେ ମୋର ମାତୃପ୍ରାଣ ଯେତେବେଳେ ହତାଶାରେ ହାହାକାର କରି ପଳାୟନପନ୍ଥୀ ହେବାକୁ ଯାଉଥିଲା ସେତିକିବେଳେ ମୋ ଅନ୍ତରକୁ ପୂର୍ଣ୍ଣତାରେ ଭରି ଦେଇଥିଲା ଲିଲି । ଲିଲିକୁ ପୁଅ-ଭଳି ବଢ଼େଇବାକୁ ମୁଁ ସ୍ଥିର କଲି ।

## ( ଦୁଇ )

ମନସ୍ତତ୍ତ୍ୱ ବିଭାଗର ଜଣେ ଅଧ୍ୟାପିକା ହିସାବରେ ଲିଲିର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତାର ଚାଲିଚଳନ, କଥାଭାଷା ଏବଂ ରୁଚିର ପରିବର୍ତ୍ତନକୁ ବେଶ୍ ଉତ୍କଣ୍ଠା ଏବଂ ଆଗ୍ରହରେ ନିରୀକ୍ଷଣ କରିବାକୁ ଖୁବ ଭଲ ଲାଗିଲା ।

ଲିଲିର ଦୁଇ ବର୍ଷିଆ ଜିଜ୍ଞାସୁ ମନରେ ବନ ହରିଣୀର ଚଞ୍ଚଳତା ମତେ ଯଥେଷ୍ଟ ମଧୁର ଯନ୍ତ୍ରଣା ଦେଇଛି । ମୁଁ ତା' ଉପରେ ବିରକ୍ତ ହୋଇପାରେ ନି, ବରଂ ଖୁସିରେ ତୋଳିନିଏ କୋଳକୁ । ତାର ଅସଂଖ୍ୟ ପ୍ରଶ୍ନବାଣରେ ଜର୍ଜରିତ ହୋଇ ମୋର ସମସ୍ତ ଭାବପ୍ରବଣତା ମୋଠୁଁ ଦୂରେଇ ଯାଇଛି ।

ନିଜେ ସଫା କରିବା ପୂର୍ବରୁ କମ୍ବା ଧୋବା ଘରେ ଲିଲିର ଲୁଗା ଦେବା ପୂର୍ବରୁ ତାର ଫ୍ରକ ପକେଟ୍‌କୁ ଥରେ ଦେଖି ନିଏ, କାଳେ କିଛି ରହିଯାଇଥିବ ।

ଙ୍କ ପକେଟ୍‌ରୁ ବାହାରେ ଚକ୍ ଖଡ଼, ବାଲ୍, ଗୋଡ଼, ଭଙ୍ଗା କଣ୍ଢେଇ କମ୍ବା କଚ୍ଚ ଖାଇବା ଜନଷ ।

ଲଲ୍‌କୁ ଯେତେବେଳେ ଛ'ବର୍ଷ ହେଲା ମୁଁ ଲକ୍ଷ୍ୟ କଲି ତା' ପକେଟରୁ ବାହାରନ୍ତି ଚକଲେଟ୍, ପେନ୍‌ସିଲ, କାଗଜ, ମିଠେଇ, ଖେଳନା ଇତ୍ୟାଦି ।

ବାର ବର୍ଷଆ ଲଲର ଆଗ୍ରହ ବଢ଼ିଲା ଚଳଚ୍ଚିତ୍ରର ଅଭିନେତା ଅଭିନେତ୍ରୀଙ୍କ ଛବି ବିଭିନ୍ନ ପତ୍ର ପତ୍ରିକାରୁ ସଂଗ୍ରହ କରିବା ଲାଗି । ସେତେବେଳକୁ ପଇସାର କରାମତି ମଧ୍ୟ ସେ ବେଶ୍ ଜାଣି ଯାଇଥିଲା ।

( ତିନି )

ଆଜି ପ୍ରାୟ ଛ' ବର୍ଷ ପରେ ଦିନେ, ଅର୍ଥାତ ଲଲ୍‌କୁ ଯେତେବେଳେ ୧୮ ବର୍ଷ । ମୋ ସ୍ୱାମୀ ଅଫିସ୍‌ରୁ ଫେରିଲେ ରାତି ଆଠଟାବେଳେ । ସେ ଖାଇଲା-ବେଳେ ମୁଁ ଲଲି ପାଇଁ ଭଲ ବରପାତ୍ରଟିଏ ଲାଗି ନଜର ରଖିବାକୁ ତାଙ୍କୁ କହିଲି । ସେ ମୋ ତୁଣ୍ଡରୁ ଏଭଳି ଅପ୍ରତ୍ୟାଶିତ ଭାବରେ ଏ ପ୍ରସ୍ତାବଟି ଶୁଣିବେ ବୋଲି ଆଶା କରି ନଥିଲେ । ପ୍ରଥମେ ମୋ କଥାକୁ ସାଧାରଣ ଭାବରେ ଗ୍ରହଣ କରି ସ୍ୱାଭାବିକ ଢଙ୍ଗରେ ଏଡ଼େଇ ଦେବାକୁ ଯାଇ ପରେ ମୋ କଥାର ଗୁରୁତ୍ୱ ବୁଝି ଚକିତ ହେଲେ ।

ଏତେ କମ୍ ବୟସରୁ ଲଲି ଘର କରିବ, ସେ ଯୁକ୍ତି କଲେ ।

ମୋଭଳି ଜଣେ ସନ୍ତାନ ବତ୍ସଳା ନାରୀ ଯେ ଏତେ ଶୀଘ୍ର ନିଜ ଝିଅକୁ ଶାଶୁଘରକୁ ପଠେଇ ଦେବାକୁ କହିପାରେ ଏକଥା ସେ ବିଶ୍ୱାସ କରିପାରୁ ନଥିଲେ । ମୁଁ ହଠାତ୍ ଏଭଳି ଏକ ପ୍ରସ୍ତାବ ଦେବା ପଛରେ ଯଥେଷ୍ଟ କାରଣ ଥିଲା । ମୁଁ ସେହିଦିନ ଲଲିର ପଞ୍ଜାବୀ ପକେଟ୍‌ରୁ ଆବିଷ୍କାର କରିଥିଲି ଏକ ପ୍ରେମପତ୍ର । ଲଲ୍‌କୁ ସମ୍ବୋଧନ କରି ସୁନ୍ଦର ସୁନ୍ଦର ଅକ୍ଷରରେ ପତ୍ରଟି ଲେଖାଥିଲା ।

ମୋ ସ୍ୱାମୀ ମୋଠାରୁ ସମସ୍ତ ଘଟଣାଟି ଶୁଣି ଗମ୍ଭୀର ହୋଇଗଲେ । ଲଲି ସେଦିନ ବହୁତ ଡେରିରେ ଘରକୁ ଫେରିଲା । ସେ ଲଲ୍‌କୁ ଚିଠି ସମ୍ପର୍କରେ ନାନା ପ୍ରଶ୍ନ କଲେ । ତାର ଉତ୍ତରରେ ଲଲ୍‌ର ବକ୍ତବ୍ୟ ଶୁଣିଲା ପରେ ମୋର ମନେହେଲା ସତେ ଯେମିତି ମୁଁ ଏକ ରୋମାଞ୍ଚକର ସିନେମା ଦେଖୁଛି ।

କାଲି କଲେଜ ଗଲାବେଳେ ଯେଉଁ ବଜାରିଟୋକାଟା ମତେ ଏ ଚିଠିଟା ଦେଇଥିଲା ଆଜି ପୁଣି କଲେଜ ଗଲାବେଳେ ମତେ ଏଣୁ ତେଣୁ ବାଜେକଥା କହିଲା । ମୁଁ ତାକୁ ଚଟିରେ କଭଳି ପୁରସ୍କାର ଦେଇଛି ଆଜିର ଖବର କାଗଜରେ ତାର ସମ୍ପୂର୍ଣ୍ଣ ବିବରଣୀ ପ୍ରକାଶ ପାଇଛି । ନେ ପଢ଼—କହି ହାତରେ ଧରିଥିବା ଖବର କାଗଜଟା ଲଲି ମୋ' ଉପରକୁ ଫୋପାଡ଼ିଦେଲା ।



ବି: ଦ୍ର:—ଏକ ଇଂରାଜୀ କବିତା ପଢ଼ିଲାପରେ ଗଳ୍ପଟିର ସୃଷ୍ଟି ।

# ପଦଚିହ୍ନ

● ଶ୍ରୀ ସତ୍ୟନାରାୟଣ ମହାପାତ୍ର

ତଥାପି…

ତଥାପି ଚିଠିଟିକୁ ବନ୍ଦକରି ରଖିପାରୁ ନଥିଲି ।

ଥରଥର କରି ଦୁଇଥର ପଢ଼ି ଶେଷ କରିବା ପରେ ମଧ୍ୟ କେମିତି ଗୋଟାଏ ଅହେତୁକ ଆନନ୍ଦ, ପଢ଼ିବା ପାଇଁ ପ୍ରବଳ ଆଗ୍ରହ ମନ ଭିତରେ ହଙ୍କି ମାରୁଥିଲା । ପୁଣି ଥରେ ପଢ଼ିବାର ପ୍ରଲୋଭନକୁ ସମ୍ବରଣ କରିପାରୁ ନଥିଲି ।

ନାନା ଅସୁବିଧା ଭିତର ଦେଇ ମୁଁ ଆସି ପନ୍ଦରତାରିଖ ଦିନ ଏଇଠି ଜଏନ କଲି । ଏଠାକୁ ଦିନରେ ମାତ୍ର ଦୁଇଟା ବସ୍ ଯାତାୟତ କରେ । ତେଣୁ ସି. ଟି. ଓ. ଜିପ୍‌ରେ ମତେ ଏଇଠି ଛାଡ଼ି ଦେଇଗଲେ ।

ମନୋଜବାବୁ ଏ. ସି. ଟି. ଓ. ଭାବେ ଜଏନ୍ କରିଛନ୍ତି ଗୋଟିଏ ଅପନ୍ତରା ଜାଗାରେ । ଦୀର୍ଘଦିନ ସହରରେ ରହିରହି, ସହରିଆ ସଭ୍ୟତା ସହିତ ଖାପଖୁଆଇ ଚାଲିବା ପରେ, ବର୍ତ୍ତମାନ ସେ ଓଡ଼ିଶା ସୀମାନ୍ତ ଅଞ୍ଚଳର ଗୋଟାଏ ଚେକ୍ ଗେଟ୍‌ରେ ଆସିଷ୍ଟାଣ୍ଟ କମରସିଅଲ୍ ଅଫିସର ଦାୟିତ୍ୱରେ ନିଯୁକ୍ତି ପାଇଛନ୍ତି । ଏମିତି ଅପନ୍ତରିଆ ଜାଗା ? ସତେ ଯେମିତି ଯମଶାଳା… । ସେଇଠି ଚିଠି ଖଣ୍ଡିଏ ପାଇବା ନିହାତି ମୁସ୍କିଲ୍ । ଖବର କାଗଜ ପହଞ୍ଚେ ଦୁଇଦିନ ବିଳମ୍ବରେ । ଲେଖିଛନ୍ତି— ଏଠାକୁ ଡାକ ଆସିବାରେ ବିଳମ୍ବ ଅନିବାର୍ଯ୍ୟ ।

ଏଇ ହେଲା ଆମ ଓଡ଼ିଶା—

ସାରା ଓଡ଼ିଶାର ସହର ସଂଖ୍ୟା ଆଂଗୁଠି ଅଗରେ ଗଣିଦେଇ ହେବ । ସହରରୁ ପଲ୍ଲୀ ଅଂଚଳକୁ ଯିବାପାଇଁ ଭଲରାସ୍ତା ନାହିଁ ।

ଯୋଜନା ପରେ ଯୋଜନା ଶେଷ ହେଉଯାଉଛି । ଋଣ ସୂତ୍ରରେ ଅନେକ କୋଟି ଟଙ୍କା ବାହାର ଦେଶରୁ ଅଣାଯାଉଛି । ଯୋଜନା କମିଶନ୍ ଦେଶର ପୁଞ୍ଜି କିପରି ଭାବରେ ବିନିଯୋଗ ହେବ, ନିର୍ଦ୍ଧାରଣ କରୁଛନ୍ତି । ସ୍ୱାଧୀନତା ପାଇବାର ଦୀର୍ଘ ୨୩ ବର୍ଷ ପରେ ମଧ୍ୟ ଆମ ଆର୍ଥନୈତିକ ଅବସ୍ଥା ସ୍ୱଚ୍ଛଳ ହୋଇ ପାରିଲା ନାହିଁ । ତଥାପି ଆମେ କହୁଛୁ, ଆମେ ସଭ୍ୟତାର ଚରମ ସୀମାକୁ ଉଠିଗଲୁଣି ବୋଲି ।

ଯେଉଁ କେତୋଟା ସହର ଗଢ଼ିଉଠିଛି ଏଇ ଭାରତର ପଲ୍ଲୀ ଘେର ଭିତରେ ତା'ରି କୋଳରେ ଯେଉଁ କେତେଲୋକ ଦିନ କେଇଟା କଟେଇ ଦିଅନ୍ତି ସେମାନେ ଆଉ ପଲ୍ଲୀ ଅଞ୍ଚଳକୁ ଯିବାକୁ ଚାହାନ୍ତି ନାହିଁ ।

ସେମାନଙ୍କ ଭିତରୁ ଜଣେ ମନୋଜବାବୁ ।

ମାତ୍ର କେତେଟା ଦିନର ପରିସର ଭିତରେ ଆମେ ସମସ୍ତେ ଗୋଟିଏ ପରିଧି ଭିତରକୁ ଚାଲି ଆସିଥିଲୁ । ମୋର ଠିକ୍ ମନେ ପଡ଼େନା ଆମମାନଙ୍କର ମିଳନର ସୂତ୍ର କେମିତି ଆରମ୍ଭ ହୋଇଥିଲା । ତଥାପି ସେ ଏକ ଆକସ୍ମିକ ଘଟଣା ଭଳି ।

ମନୋଜବାବୁଙ୍କ ଚିଠି ପଢ଼ୁ ପଢ଼ୁ ଗୋଟିଏ ସନ୍ଧ୍ୟାର ଘଟଣା ହଠାତ୍ ମୋର ମନେ ପଡ଼ିଗଲା ।

ଶୀତ ଋତୁର ଏକ ରବିବାର ।

ଆମ ପାଞ୍ଚ ଛ' ଜଣଙ୍କୁ ନେଇ ଗୋଟିଏ ଗ୍ରେଟ ସ୍କୋଚର ଆସର ଜମିଥିଲା ବିଜୟବାବୁଙ୍କ ଘରେ ।

ମୁଁ ଟିକିଏ ଡେରିରେ ପହଞ୍ଚିଲି । ମୁଁ ଗଲାବେଳକୁ ଦିଲୀପବାବୁ, ଅଶୋକ ସ୍ୱାଇନା, ମନୋଜବାବୁ ସମସ୍ତେ ପହଞ୍ଚି ଯାଇଥିଲେ ବିଜୟବାବୁଙ୍କ ଘରେ ।

ସେ ଥିଲା ମୋର ଓମର ଖାୟାମୀ ଜୀବନର ପ୍ରଥମ ଦିନ । ଓମର ଖାୟାମୀ ଦର୍ଶନର ଗୋଟିଏ ଦିଗ ।

ସମସ୍ତଙ୍କର ପାତ୍ର ଭରିହୋଇ ସାରିବା ପରେ ପଡ଼ିଲା ମୋ'ର ପାଳି । ଗୋଟାଏ ରଙ୍ଗୀନ ପାତ୍ର ଅଣାଗଲା । ରଖାଗଲା ମୋ'ର ଆଗରେ । ବହୁତ ଅନୁନୟ ବିନୟ କରିବା ପରେ ମଧ୍ୟ ମୋର ଆକୁଳ ଆବେଦନ କେହି ହୃଦୟଙ୍ଗମ କରିପାରି ନଥିଲେ ।

ବୋତଲରୁ ଠିପି ଖୋଲିଲେ ଅଶୋକ ସ୍ୱାଇନା ।

କମ୍ପାଉଣ୍ଡର ବୋତଲରୁ ଆଉନ୍ସ ଗ୍ଲାସରେ ଔଷଧ ଢାଳିଲା ପରି ମୋ' ପାତ୍ରରେ ବିଅର ବୁନ୍ଦାକ ଢାଳିଦେଇଗଲେ ହସି ହସି । ଟିକିଏ ବି କୁଣ୍ଠା ନାହିଁ ତାଙ୍କର ।

ହଠାତ୍ ଚମକି ପଡ଼ିଲି । ଭାବିଥିଲି ମତେ କେହି ଲକ୍ଷ୍ୟ କରି ପାରି ନଥିଲେ ବୋଲି । ମୋର ଚମକା କେହି ଦେଖି ପାରିନଥିଲେ ବୋଲି । କିନ୍ତୁ ସବୁ ଠିକ୍ ଠଉରେଇ ନେଇଥିଲେ ବିଜୟବାବୁ ।

ସମସ୍ତେ ମାତାଲ । ସମସ୍ତେ ସୁରାପାନ କରିବାରେ ବ୍ୟସ୍ତ ।

—କଣ କବି, ଚମକି ପଡ଼ିଲ କାହିଁକି ?—ପ୍ରଶ୍ନର ବଜ୍ରବାଣ ।

ମୋର ହଠାତ୍ ମନେ ପଡ଼ିଗଲା ଗୋଟାଏ ନାଟକର Re-hearsal କଥା । ମୁଖ୍ୟନାୟକ ନଗେନ୍ଦ୍ର ଶିଳ୍ପୀ ଭୂମିକାରେ ଅବତୀର୍ଣ୍ଣ କରିବାର ଥିଲା । ଗୋଟାଏ ତନ୍ୱୀ ରୂପସୀ ତାର ଆକର୍ଷଣରେ ମୋତେ ବାନ୍ଧି ରଖିବାକୁ ଚେଷ୍ଟା

କରୁଥିଲା । ବାସ୍ତବରେ ନଗ୍ନ ଶିଳ୍ପୀର ଜୀବନ । ସେ ଚାହୁଁଥିଲା ତନ୍ୱୀର ଆକର୍ଷଣଠାରୁ ଦୂରରେ ରହିବାକୁ ।

ନିର୍ଦ୍ଦେଶକ ନିର୍ଦ୍ଦେଶନା ଦେଉଥିଲେ ଗୋଟିଏ ରୋମାଣ୍ଟିକ୍ ସିନ୍‌କୁ । ସୋଫା ଉପରେ ବସିଛି ନଗ୍ନ ଶିଳ୍ପୀ । ତନ୍ୱୀ ଆସିଛି । ପାଖରେ ବସିଛି । ପରେ ଦି'ପଦ ରୋମାଣ୍ଟିକ୍ କଥା କହୁଛି । ଶିଳ୍ପୀ ଉପରକୁ ଢଳିଯିବାର ପ୍ରୟାସ କରୁଛି ।

ଶିଳ୍ପୀର ଅଭିନୟ କରିଥିଲି ମୁଁ । ଯେତେଥର ଅଭିନୟ କଲେ ବି ନିର୍ଦ୍ଦେଶକ ମାନିନେଇ ନଥିଲେ କୁମାରୀ ତନ୍ୱୀର ଅଭିନୟକୁ ।

ତାପରେ···

ତାପରେ ନିଜେ ଥରେ ଅଭିନୟ କରି ଦେଖାଇ ଦେବାକୁ ପଡ଼ିଥିଲା ନିର୍ଦ୍ଦେଶକ ମହୋଦୟଙ୍କୁ । ସେ ଯେମିତି ମୋର ଉପରକୁ ଢଳି ଆସିଲେ ତନ୍ୱୀର ଅଭିନୟ କରିକରି; ହଠାତ୍ ମୁଁ ଚମକି ଉଠିଥିଲି । ସେଇ ଚମକ ମୋର ଅତି ବାସ୍ତବ ହୋଇଥିଲା ଓ ଆକର୍ଷଣୀୟ ମଧ୍ୟ ହୋଇଥିଲା ସେଦିନ । ସମସ୍ତେ ମୁଗ୍ଧ ହୋଇଥିଲେ ।

ଅବଶ୍ୟ ସେମିତି ନିଖୁଣ ଅଭିନୟ ମୁଁ ନାଟକ ଅଭିନୀତ ହେବାବେଳେ କରିପାରି ନଥିଲି ।

ମୋ'ର ବିଅର ପାତ୍ର ସେଇମିତି ଭରି ରହିଥିଲା । ମୁଁ ତାକୁ ସ୍ପର୍ଶ ମଧ୍ୟ କରି ନ ଥିଲି । ଯେ ଯାହାର ପାତ୍ର ଥରେ ଲେଖାଏଁ ଶେଷ କରି ପୁଣି ଥରେ ଲେଖାଏଁ ଭରିବାକୁ ଲାଗିଲେଣି । ସମସ୍ତଙ୍କର ଅଧିକରୁ ଅଧିକ ଶେଷ କରିବାର ଉତ୍କଣ୍ଠାକୁ ମୁଁ କେବଳ ଲକ୍ଷ୍ୟ କରୁଥିଲି ।

ମଣିଷ ଏଇଠି, ଏଇ ପୃଥିବୀରେ ଖୁସିରେ ବଞ୍ଚି ରହିବାକୁ ଚାହେଁ— ମତୁଆଲା ହେବାକୁ ଚାହେଁ । ଜୀବନକୁ ଉପଭୋଗ କରିବାକୁ ଚାହେଁ । ନିଜକୁ ଅମାବାସ୍ୟାର ଅନ୍ଧାର ଭିତରେ ମିଶାଇ ଦେବାକୁ ଚାହେଁ ।

ଏଇ ତ ମଣିଷର ଆଦିମ ଆକାଂକ୍ଷା—ଅଦମ୍ୟ ଆକାଂକ୍ଷା ବି ।

ସେମାନେ ଓଲଡ଼୍ ଟାଭରନ୍ ହ୍ୱିସ୍କି ଓ ଡ୍ରାଇଜିନ୍ (Old Tavaran whisky and Drygin) ପେଗ୍ ପରେ ପେଗ ଶେଷ ନିର୍ବିକାର ଭାବରେ ପିଇ ଲଙ୍ଗ ଡ୍ରିଙ୍କ (Long Drink) ଭାବେ ବିଅର ବୋତଲ ଶେଷ କଲାବେଳେ ମୁଁ ସାମାନ୍ୟ କପେ ବିଅର ପିଇବାକୁ କୁଣ୍ଠାବୋଧ କରୁଛି ।

ନିଜକୁ ସେମାନଙ୍କ ସଙ୍ଗେ ତୁଳନା କରୁଥିଲି । କେତେ ଦୁର୍ବଳ, କେତେ ଶ୍ରେଷ୍ଠ ମୁଁ ସତେ; ସେମାନଙ୍କ ଆଗରେ ।

ହଠାତ୍ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା ମୋର ପାତ୍ର । ସମସ୍ତଙ୍କର ଉପହାସର ପାତ୍ର ହେଲି ମୁଁ । ଯେ ଯାହାର ମନ୍ତବ୍ୟ ଦେବାରେ ଲାଗିଗଲେ ।

—ଏଗୁଡ଼ା ଖାଇବା ଯାହା, ବଡ଼ା ସୋଡ଼ା ବୋତଲଟିଏ ଖାଇବା ସେଯା ।

—ଏଇଥିରୁ ଦୁ' ବୋତଲ ଖାଇଲେ ବି କିଛି ହେବ ନାହିଁ ମ । ତମେ ଏଇ ମାତ୍ର ଆଉନ୍ସଟିଏ ଖାଇବାକୁ ଡରୁଛ କିଣ ?

—ତମେ ଭାବୁଛକି ଏଗୁଡ଼ା Harmful ବୋଲି ? ମୋଟେ ନୁହଁ, ମୋଟେ ନୁହଁ । ଏଗୁଡ଼ା କେବଳ ସୋଡ଼ାମେଣ୍ଟର କାମ କରିବ । ତାଠାରୁ କୌଣସି ଅଧିକ ନୁହଁ ।

—ମାଇପିଙ୍କୁ ଦେଲେ ଏଗୁଡ଼ା ପେଟେ ପିଇପିବେ, ତମେ କିଣ ଭୟ କରୁଛ ମ ? ହସି ହସି ବେଦମ୍ ହେଲେ ମନୋଜ ବାବୁ ।

ତମେ ନିଜେ ପିଇବକି ମୁଁ ମାଉଡ଼ବସି ପିଆଇଦେବି କହିଲ—ଅଶୋକ ଭାଇନାଙ୍କ ବଡ଼ା କଣ୍ଠ ।

ପାତ୍ର ଉଠାଇଲି । ହୃଦବେଗ ବଢ଼ିଲା । ହାତ ଥରିଲା । ଓଠ କମ୍ପି ଉଠିଲା ।

ସୁରା ପାତ୍ରରେ ଓଠ ଲଗାଇଲି । ଟୋପାଏ ଦୁ' ଟୋପା ଦେହ ପାକି ଭିତରକୁ ନେଲି । ଜୀବନରେ ପ୍ରଥମ ଥର ପାଇଁ ମଦ୍ୟପ ହେଲି । ବିବେକ ସମାଧି ନେଇଥିଲା ସେଦିନ । ସେତେବେଳେ ମନୁଷ୍ୟତା ଆତ୍ମହତ୍ୟା କରିଥିଲା । ମୁଁ ଗୋଟାଏ କପଟ ପଶୁ ହୋଇପଡ଼ିଥିଲି ।

ମୁଁ ସେତେବେଳେ ଆତ୍ମ ନିରୀକ୍ଷଣ କରୁଥିଲି ।

କିନ୍ତୁ ମୁଁ ଭୁଲ ! ମୁଁ ଭ୍ରାନ୍ତ !!

ନିଜକୁ ପୁଣି ସାନ୍ତ୍ୱନା ଦେଉଥିଲି । ମୋଭଳି ତ ଏ ପୃଥିବୀରେ ଅନେକ ଅଛନ୍ତି । ମୁଁ ବା ସେଇଥିପାଇଁ ଚିନ୍ତା କରିବି କାହିଁକି ?

ରାତି ଗୋଟାଏ ହୋଇଯାଇଥିଲା ଆମେ ସମସ୍ତେ ଯେ ଯାହା ବସାକୁ ଫେରିଲାବେଳକୁ ।

ଦିଲୀପ ବାବୁ ଅଭିନବ କିଛିଭଳି ମତେ ଜଣାଗଲା । ମୁଁ କିନ୍ତୁ ଠିକ୍ ଠଉରେଇ ନେଲି ତାଙ୍କ ଅବସ୍ଥା ।

ଦୂରନ୍ତ ଅତୀତରୁ ବର୍ତ୍ତମାନକୁ ଫେରି ଆସିବାକୁ ଚେଷ୍ଟା କରୁଥିଲି ।

ମୁଁ ବି ତ ମଣିଷ । ଟିକିଏ ସମୟ ଓ ସୁଯୋଗ ପାଇଲେ ମଣିଷ ତାର ଅଜାଣତରେ ଅନେକ ପଚ୍ଛକଥା ଭାବିବସେ । ଅତୀତକୁ ମନେ ପକାଇ ଆତ୍ମସନ୍ତୋଷ ଲାଭ କରେ । ସେମିତି ମନୋଜ ବାବୁଙ୍କ ଚିଠି ପଢ଼ି ପଢ଼ି ମୁଁ ଅତୀତର ପଦଚିହ୍ନ-ଗୁଡ଼ିକ ସ୍ପଷ୍ଟଭାବେ ନିରୀକ୍ଷଣ କରିବାକୁ ପ୍ରୟାସ କରୁଥିଲି ।

ଆଖି ଆଗରେ ମନୋଜ ବାବୁଙ୍କ ଚିଠି ।

ସେଠାକାର ବନ୍ଧୁତ୍ୱ ପରିବେଶ ପରିତ୍ୟାଗ କରି ଏଠାରେ ନିକାଞ୍ଚନ କାନ୍ତାର ମଧ୍ୟରେ ଦିନ କାଟିବା କେତେ ଯନ୍ତ୍ରଣାଦାୟକ ବେଶ୍ ଅନୁମାନ

କରିପାରୁଥିବେ । ଏଠାରେ ଗୋଟିଏ କୁଣ୍ଡଆଘରେ ରହୁଛୁ । ଘରର ଭଡ଼ାଟ ନାହିଁ । ଷ୍ଟେଶନ ଠାରୁ ବି ଖଣ୍ଡପ । କିନ୍ତୁ ସୁବର୍ଣ୍ଣରେଖା ନଦୀତୀରରେ ସନ୍ଧ୍ୟା ବେଶ ଉପଭୋଗ୍ୟ ।

ସମସ୍ତ ଅତିବାହିତ କରିବାର ମାତ୍ର ଗୋଟିଏ ପନ୍ଥା । ଦୀର୍ଘ ସହରିଆ ଜୀବନ ପରେ ଯେମିତିକା ପରିବେଶକୁ ନିକାଞ୍ଚନ ମନେକରିବା ନିହାତି ସ୍ୱାଭାବିକ । ଉପଯୁକ୍ତ ସାଙ୍ଗସାଥି ନାହାନ୍ତି । ସିନେମା, ଥିଏଟର କିଛି ନାହିଁ ।

କିନ୍ତୁ ଜୀବନକୁ ଜୀବନ ଭାବେ ଉପଭୋଗ କରିବାକୁ ପଡ଼ିରହିଛି ବିଶେଷ ପ୍ରାକୃତିକ ସୌନ୍ଦର୍ଯ୍ୟର ଅଧିକାରିଣୀ ସୁବର୍ଣ୍ଣରେଖା । ସତେ ଯେମିତି ଶୁଭ୍ର ସୁବର୍ଣ୍ଣର ଗୋଟିଏ ଧାର । ସେଠିକାର ଜୀବନରେ ପରିପୂର୍ଣ୍ଣତା ଆଣିବା ପାଇଁ ଗୋଟିଏ ସହାୟକ । ବନ୍ଧୁହୀନ ପରିବେଶର ଏକମାତ୍ର ବନ୍ଧୁ—ତଟିନୀ ସୁବର୍ଣ୍ଣରେଖା ।

ମୂକ ଅଥଚ ଚଞ୍ଚଳ । ସୁବର୍ଣ୍ଣ ରେଖାର କୁଳୁକୁଳୁ ଧାର ସତେ ଯେମିତି ମନ ଭିତରେ ସୃଷ୍ଟି କରେ ଅପୂର୍ବ ସଙ୍ଗୀତର ରାଗିଣୀ । ଉଦ୍ଦିପନା ଜନ୍ମାଏ ମନ ଭିତରେ ।

ଏଠିକାର ବନ୍ଧୁତ୍ୱ ପରିବେଶକୁ ସେଇଠି ଖୋଜିଲେ ମିଳିବ କେଉଁଠୁ ?

କିନ୍ତୁ କେବଳ ବନ୍ଧୁତ୍ୱପୂର୍ଣ୍ଣ ପରିବେଶ ଖୋଜିଲେ ତ ଜୀବନ କଟିବ ନାହିଁ । ଜୀବିକା ପାଇଁ ଦରକାର ଚାକିରି—ଦରମା ।

ମନୋଜ ବାବୁ ସରକାରୀ ଚାକିରିଆ—ଚାକିରି କରିବା ନିହାତି ଦରକାର ପେଟ ପୋଷିବା ପାଇଁ । ତାଁର ଭିତରେ ହିଁ ଯେମିତି ପରିବେଶ ସୃଷ୍ଟି କରାଯିବା ଆବଶ୍ୟକ । ପରିବେଶ ଯାହାହେଉ, ଦିନ ବିତାଇବା ସୁଖ ହେଉ ବା ଦୁଃଖ ହେଉ, ବସାଘର ଦୋମହଲା ହେଉ ବା କୁଡ଼ିଆଘର ହେଉ, ଘରେ ଦୁଆର ଥାଉ ବା ନ ଥାଉ, ସେଇଠିହିଁ ମନୋଜ ବାବୁଙ୍କୁ ରହିବାକୁ ହେବ । ଆଉ ପରିବେଶ—

ଏଇଠି ବ୍ରହ୍ମପୁର ସହରର ସାଙ୍ଗସାଥି ପରିପୂର୍ଣ୍ଣ ପରିବେଶ ଓ ସେଇଠି ସୁବର୍ଣ୍ଣ ରେଖା ନଦୀତୀରର ନିକାଞ୍ଚନ ପରିବେଶର ତୁଳନା କରୁଥିଲି ମୁଁ ।

ଏଇଠି—

ସନ୍ଧ୍ୟାର ଝଲମଲ ବିଜୁଳି ଆଲୁଅ, ସିନେମାର ମନୋହର ସଙ୍ଗୀତ, ହୋଟେଲ—ରେଷ୍ଟୁରେଣ୍ଟ ଓ କାଫେ ଆଗରେ ଲୋକଭିଡ଼...

ଆଉ ସେଇଠି—

ସୁବର୍ଣ୍ଣରେଖା ନଈ ସୁଅର କୁଳୁକୁଳୁ ଶବ୍ଦ, ଏକା ଏକା ନୌକା ବିହାର, ଚନ୍ଦ୍ରର ଜ୍ୟୋଛନା ଆଲୁଅ, ବେଳେ ବେଳେ କେଉଟ ନାହରିଆ ମାନଙ୍କର ପଦେ ଦ'ପଦ ମନଫୁଲଣିଆ ଗୀତ ଓ ମନ୍ଦ ମନ୍ଦ ଶୀତଳ ପବନ...

ତୁଳନାକରି ମଧ୍ୟ ମୁଁ ଠିକ୍ କରିପାରୁ ନଥିଲି କେଉଁଟା ବେଶ୍ ଆରାମ ଦାୟକ, କେଉଁଟା ବେଶ୍ ଉପଭୋଗ୍ୟ ।



# ଧ୍ରୁବ ତାରା

**● ଶ୍ରୀମତୀ ବିଜୟିନୀ ଦାସ**

ପୋଷ୍ଟମ୍ୟାନ୍ ହାତରୁ ଚିଠିଟାକୁ ନେଇ ଶଶାଙ୍କଶେଖର ଏପଟ ସେପଟ ଓଲଟାଇଲେ ।

ବେଶ୍ ଗ୍ରେଟ ଗ୍ରେଟ ଗୋଲ ଗୋଲ ଅକ୍ଷରରେ ଆଡ୍ରେସ ଲେଖା ହୋଇଛି, ସତେକି ଇଷତ୍ ନୀଳ ସେଇ ଲଫାପାର ଆକାଶରେ ଗାଢ଼ ନୀଳ ବଳୟ ଘେରା କେତୋଟି ସନ୍ଧ୍ୟା ତାରା ଫୁଟି ଉଠିଛନ୍ତି ।

ଶଶାଙ୍କଶେଖର ମୁଗ୍ଧ ହେଲେ, ଚିଠିଟି ତାଙ୍କ ପରିଚିତ ବନ୍ଧୁ ବା ବାନ୍ଧବୀ ଭିତରୁ କେହି ଲେଖି ନାହାନ୍ତି, ଏଥିରେ ସେ ନିଶ୍ଚିତ । କିନ୍ତୁ ଅପରିଚିତ ଯେ କେହି ହୁଅନ୍ତୁ ନା କାହିଁକି ସେ ଯେ ନିଶ୍ଚୟ ଜଣେ ସ୍ତ୍ରୀ ଏଥିରେ ସେ ସନ୍ଦେହ-ମୁକ୍ତ ।

ଶଶାଙ୍କଶେଖର ଟିକିଏ ଶିହରି ଉଠିଲେ । ଏ ଶିହରଣ ନୂଆ ନୁହେଁ ବା ଏମିତି ଚିଠି ଆସିବାଟା ବି ନୂଆ ନୁହେଁ । ସଜ ଛଳଛଳ କିଶୋରୀ ମନର କ୍ଷଣିକ ଆବେଗ ନେଇ ବହୁ କୁମାରୀ ତାଙ୍କ କବି ପ୍ରତିଭାକୁ ବଧେଇ ଜଣାଇ ଚିଠି ଲେଖିଛନ୍ତି । ଏଇ ଚିଠି ମାଧ୍ୟମରେ ଦିନେ ତାଙ୍କ ଜୀବନରେ ଅବିବାହିକାର ସୃଷ୍ଟି ହୋଇଥିଲା । ତାଙ୍କର ପ୍ରତିଭା ଦିନେ ଧୂମକେତୁ ଭଳି ସେଇ ପ୍ରତିଭାର ଅସ୍ତ୍ରନରେ ଠିଆ ହୋଇଥିଲା । କିଶୋର ବୟସରେ କବିତ୍ୱର ବଇଁଶୀ ଫୁଙ୍କି ସେ ବାଟବଣା କରିଥିଲେ ପ୍ରତିମାକୁ—ଗୋଟିଏ ତେର ବର୍ଷର ଫ୍ରକ ପିନ୍ଧା କିଶୋରୀକୁ, ଘରର ଉତ୍କଣ୍ଠା ନେଇ ସେ ବି ଦିନେ ଶୁଣୁଥିଲା ତାଙ୍କ କବିତାରେ ବଇଁଶୀର ମୁର୍ଚ୍ଛନାକୁ । ଘରର ଅଶ୍ରୁ ନେଇ ସେ'ବି ପ୍ରତୀକ୍ଷା କରୁଥିଲା ତା' ପ୍ରିୟତମର ଫେରିବା ବାଟକୁ । ତାକୁଇ କେନ୍ଦ୍ର କରି କବି ଶଶାଙ୍କଶେଖରଙ୍କ କକ୍ଷମୁକ୍ତ କଳ୍ପନାର ଗ୍ରହଗୁଡ଼ିକ ଘୂରି ବୁଲିଲେ, ଦିନେ ପୃଥ୍ୱୀ ତା'ର ଆଘାତରେ ସେ କବିରୁ ଗାଳ୍ପିକ ଓ ଔପନ୍ୟାସିକ ପାଲଟିଗଲେ ।

ଦୀର୍ଘଶ୍ୱାସ ଛାଡ଼ିଲେ କବିଶେଖର ।

ସେଇ ବେଦନା ଓ ଆଘାତରେ ତାଙ୍କ କ୍ଷତବିକ୍ଷତ ରକ୍ତାକ୍ତ ମନରୁ ସେଦିନ ଲୁହ ଓ ଲହୁ ଝରିଲା ସେଇ ଲୁହ-ଲହୁର ଲିପି ହିଁ ଦେଲା ତାଙ୍କୁ ଶ୍ରେଷ୍ଠ ଗାଳ୍ପିକର ସମ୍ମାନ, କାନ୍ତକାରୀ ଔପନ୍ୟାସିକର ଗୌରବ । ସେଇ ପାଷାଣୀ ପ୍ରତିମା ନିକଟରେ ଆଜି ସେଥିଲାଗି ସେ କୃତଜ୍ଞ ।

ଜଳ-ନିନାଦିନୀ ବର୍ଷା ଝରଣାଟି ଭଳି ଛଳଛଳ ହୋଇ ଝରି ଆସିଥିଲା ତାଙ୍କର ମରୁ-ବୁକୁରେ ଅମୃତର ଶୀତଳ ସ୍ପର୍ଶ ଦେଇ 'ପ୍ରୀତି' ଯୌବନର ମଧ୍ୟାହ୍ନରେ । ଏଇମିତି ଏକ ମୁକ୍ତ ଅପରାହ୍ଣରେ ସେ ତା'ଠୁ ପାଇଥିଲେ ପ୍ରଥମ ଚିଠି । ଅପରିଚିତାର ଲେଖାରେ ଭରି ରହିଥିଲା ଯେଉଁ ସଂଯତ ଶୈଳୀ ଓ ସାହିତ୍ୟିକ ଛଟା ସେଥିରେ ମୁଗ୍ଧ ହୋଇଥିଲେ, ପ୍ରଲୁବ୍ଧ ବି ହୋଇଥିଲେ । ସେଦିନ ବି ତାଙ୍କର ମରୁ-ପ୍ରାଣରେ ପଲ୍ଲବି ଉଠିଥିଲା ଶତ ସପନର ମରୂଦ୍ୟାନ, ଶ୍ୟାମଳିମାରେ ମୁଗ୍ଧ କରିଥିଲା ଅନେକ ସ୍ୱପ୍ନ-ପିପାସୀ ମନ । ପରିଚୟରୁ ପ୍ରଣୟ, କିନ୍ତୁ ପ୍ରଣୟରୁ ପରିଣୟ ହୋଇପାରିଲା ନାହିଁ । ଏବେ ବି ପ୍ରୀତିକୁମାରୀ ପରିଣୟକୁ ପ୍ରତ୍ୟାଖ୍ୟାନ କରି ଯେଉଁ ଦିନ ସେ ତାଙ୍କ ଜୀବନ ପରିଧିରୁ ଦୂରେଇଗଲା, ସେ ଦିନର ବଜ୍ର-ନିର୍ଘୋଷ ଏବେ ବି' ତାଙ୍କ ଶ୍ରବଣରେ ଉତ୍ତପ୍ତ ଲାଭା ବର୍ଷଣ କରେ—ଏତେ ସ୍ୱାର୍ଥପର ତମେ ; ଏତେ ନୀଚ ତମ ଦୃଷ୍ଟିକୋଣ, ଏତେ ସଂସାରାଭିମୁଖୀ ? ତମ ମାନସ କନ୍ୟାକୁ ନିତି-ଦିନିଆ ତେଲ ଲୁଣ ସଂସାର ଭିତରେ ବାନ୍ଧିରଖି ପାଇବାର ସୁଲଭତା ଭିତରେ ଖୋଜିବାର ଦୁର୍ଲ୍ଲଭତା ହରାଇ ବସିବାକୁ ଏତେ ବ୍ୟାକୁଳ ?? ଏତେ ବ୍ୟଗ୍ର ?? ଯଦି ମୋ ଆଘାତରେ ତମ ପ୍ରତିଭା ଆହୁରି ଜାଜ୍ୱଲ୍ୟମାନ ହୁଏ, ଆହୁରି ମର୍ମସ୍ପର୍ଶୀ ହୁଏ, ତେବେ ଧରିନିଅ ମୁଁ ତମକୁ ଆଘାତ ଦେଇ ଚାଲିଯାଉଛି, ମୁଁ ଭଲ ପାଇଥିଲି ତମରି ଅମର ପ୍ରତିଭାକୁ, ଏ ମର ଶରୀରଟାକୁ ନୁହେଁ, ଆଉ ଅନନ୍ତକାଳ ପାଇଁ ପାଉଥିବି ବି ।

ପ୍ରୀତି ଚାଲିଯାଇଥିଲା, ହତବାକ୍ ଶେଖର ଚାହିଁ ରହିଥିଲେ କେବଳ ।

ମର ଶରୀରଟା ଅମର ପ୍ରତିଭାକୁ ଧରି ରଖିଚି, ଏ କଥା ସେଦିନ ବୁଝି ନ ଥିଲା ଦର୍ଶନ ଶ୍ରେଣୀର ଛାତ୍ରୀ ପ୍ରୀତିଲତା ।

ପ୍ରୀତି !

ଏବେ ବି କୁମାରୀ ।

ତାଙ୍କର ଅଗଣିତ କଳ୍ପନାର ଦୂର ନଭ-ଚାରିଣୀ ବର୍ଷା ମରାଳୀ ।

ଶଶାଙ୍କଶେଖର ଦୀର୍ଘଶ୍ୱାସ ଛାଡ଼ି ଚିଠି ଖୋଲିଲେ, ଇସ୍, ଅକ୍ଷର ନୁହେଁ ତ—ଆକାଶ ପଥରେ ଯାଉ ଯାଉ ସଚେତକ କେଉଁ କଳହଂସର ଗଳାରୁ ଛିଣ୍ଡି ପଡ଼ିଛି ମୁକ୍ତାହାରଟା ! ସମ୍ବୋଧନ ଉପରେ କେତୋଟି ସେକେଣ୍ଡ ତାଙ୍କର ଦୃଷ୍ଟି ସ୍ଥିର ହୋଇଗଲା । 'ପ୍ରିୟ ଶଶାଙ୍କବାବୁ ।' ମନର ଆବେଗ ନେଇ ସେ 'ଇତି'ରେ ସେ ଆଖି ଘୂରାଇ ନେଲେ 'ଅପରିଚିତା ମାଳବିକା ।'

ଶଶାଙ୍କଶେଖର ଟିକିଏ କ୍ଷୁବ୍ଧ ହେଲେ, ଅଗଣିତ ପାଠକ ପାଠିକାଙ୍କର 'ପ୍ରିୟ ଶଶାଙ୍କ ବାବୁ' 'ପ୍ରିୟ' ହୋଇପାରିଲେନି । ସମସ୍ତେ ଭଲ ପାଇଲେ ତାଙ୍କର ପ୍ରତିଭାକୁ, ତାଙ୍କୁ ନୁହେଁ । ହଠାତ୍ ସେ ତାଙ୍କ ପ୍ରତିଭା ଉପରେ ଈର୍ଷା କରି ବସିଲେ ।

ହୁଏତ ଏ କେହି ତାଙ୍କର ଗୁଣମୁଗ୍ଧା ପାଠିକା । କୌଣସି ଉପନ୍ୟାସର କୌଣସି ଚରିତ୍ରର ମନସ୍ତତ୍ତ୍ୱ ହୁଏତ ତା' ନିଗୂଢ଼ ମନସ୍ତତ୍ତ୍ୱ ତା' ଅବଚେତନ ମନର ସ୍ତରେ ସ୍ତରେ ଥିବା ପୁଞ୍ଜୀଭୂତ ରହସ୍ୟ ସଙ୍ଗେ ମିଳିଯାଇଛି ବୋଲି ଅନ୍ୟମାନଙ୍କ ଭଳି ତାଙ୍କ ପ୍ରଶଂସାରେ ଶତମୁଖ ହୋଇ ଚିଠି ଲେଖିଛି—ଯେମିତି ମେନା, ସୁମତି, ଚନ୍ଦ୍ରଲେଖା, ବନ୍ଦିତା ଓ ବନ୍ଦନା—(ଅନେକ ନାଁ ବି' ସେ ଭୁଲି-ଗଲେଣି) । ତାଙ୍କ ଜୀବନ ପରିଧିକୁ ସମସ୍ତେ ଆସିଛନ୍ତି ପ୍ରତିମା ଓ ପ୍ରୀତି ଭଳି କେବଳ ପୂଜା କରିବାକୁ, କିନ୍ତୁ ଆସି ନାହାନ୍ତି ପ୍ରୀତିର ପ୍ରତିମା 'ପତ୍ନୀ' ରୂପରେ ପୂଜା ଗ୍ରହଣ କରିବାକୁ ।

ଚିଠିଟି ସେ ପଢ଼ିବାକୁ ଚେଷ୍ଟା କରୁଥିଲେ ।

ପ୍ରିୟ ଶଶାଙ୍କ ବାବୁ,

ଆପଣଙ୍କର ଜଣେ ପ୍ରତିଭା-ପୂଜାରିଣୀ ମୁଁ ଅନେକ ଦୂରରୁ ପ୍ରଣାମ ଜଣାଉଛି । ଏମିତି ତ ଅନେକ ପ୍ରଣାମ, ଅନେକ ଅଭିନନ୍ଦନ ସମ୍ବଳିତ ଚିଠି ଅନେକ ଝିଅଙ୍କଠୁ ପାଇଥିବେ । କାରଣ ଆପଣଙ୍କ ଭାଷାରେ ଝିଅମାନେ ପୁରୁଷର ପ୍ରତିଭାରେ ଅଧିକ ଲୁବ୍ଧ ହୁଅନ୍ତି, ସତକଥା ; କିନ୍ତୁ ଆପଣ କାହିଁକି ଧରିନିଅନ୍ତି ଯେ ପ୍ରତିଭାରେ ମୁଗ୍ଧ ହେବା ଅବା ଗୁଣକୀର୍ତ୍ତନ କରିବା ଅର୍ଥ ପରୋକ୍ଷରେ ବିବାହ ପାଇଁ ଇଚ୍ଛା ପ୍ରକାଶ କରିବା ? ଆପଣଙ୍କ ପୁରୁଷ ବନ୍ଧୁମାନେ ତ ତଥାକଥିତ ପ୍ରତିଭାର ଜୟଗାନ କରିଥାନ୍ତି ।

( ଆହତ ହେଲେ ଶଶାଙ୍କଶେଖର—ଝିଅଟାର ଏତେ ସୁନ୍ଦର ହସ୍ତାକ୍ଷର ଭିତରେ ଏମିତି ବର୍ଚ୍ଛା ଲୁଚି ରହିଛି ? ହୁଏତ ଏ ପ୍ରୀତି ବା' ପ୍ରତିମାର ଦଲିଲ । ସବୁ ଝିଅଙ୍କର ମନସ୍ତତ୍ତ୍ୱ ଏକା କିମିତି ହେଲା ? )

ଆପଣଙ୍କର ସମସ୍ତ ଉପନ୍ୟାସ ମୁଁ ପଢ଼ିଛି । ପ୍ରଶଂସାରେ ଶତମୁଖ କିନ୍ତୁ ହୋଇପାରିନି, କ୍ଷମା କରିବେ । କାରଣ ସମସ୍ତ ଉପନ୍ୟାସର ସମସ୍ତ ଅଂଶ ମୁଁ ପଢ଼ିପାରିନି, ଅନେକ ଚେଷ୍ଟାସତ୍ତ୍ୱେ ବି । ଆପଣ ଲେଖକ, କବି, କଳାକାର । ସତ୍ୟ ଶିବ ସୁନ୍ଦରର ଉପାସକ । କେବଳ ମୋର ନୁହେଁ, ସେ ଦୃଷ୍ଟିରୁ ପୃଥିବୀର ପ୍ରଣମ୍ୟ; ଏଇଠି ଶଶାଙ୍କ ଟିକିଏ ଉତ୍ଫୁଲ୍ଲିତ ହୋଇଉଠିଲେ । କିନ୍ତୁ ଆପଣଙ୍କ ଲେଖା ଏତେ ଅଶ୍ଳୀଳ, ! ଏତେ କୁତ୍ସିତ । ଏତେ ବିଭତ୍ସ ବର୍ଣ୍ଣନା ସ୍ଥାନେ ସ୍ଥାନେ ଫୁଟି ଉଠିଛି ଯେ ସେ ଦୃଷ୍ଟିରୁ କେବଳ ମୋର ନୁହେଁ, ସମଗ୍ର ପୃଥିବୀର ଆପଣ ଘୃଣ୍ୟ । କାରଣ ମୋର ମନେହୁଏ ଆପଣ ଅଧିମାତ୍ରାରେ ବିକାର ବ୍ୟାଧିଯୁକ୍ତ ଏକ ରୁଗ୍ଣ ବ୍ୟକ୍ତିତ୍ୱ । ଚମକି ପଡ଼ିଲେ ଶଶାଙ୍କଶେଖର ! ଆତ୍ମସମ୍ମାନ କ୍ଷୁଣ୍ଣର ଅପମାନରେ ଜର୍ଜ୍ଜରିତ ହୋଇପଡ଼ିଲେ । ମୁହୂର୍ତ୍ତରେ ତାଙ୍କର ସତେ ବା' କିଏ ଅନ୍ଧାରମୁଠେ ବିଞ୍ଚିଦେଲା ।

ଲଜ୍ଜାଭୟରେ, ଅପମାନରେ ସେ ଆଉ ଅଧିକ ଆଗେଇବାକୁ ସାହସ କରୁ ନ ଥିଲେ । ତଥାପି ବାପାଙ୍କ ଶାଳସତ୍ତ୍ୱେ ହାଇସ୍କୁଲର ଗ୍ରନ୍ଥିଟି ମନରେ ଡିଟେକ୍‌ଟିଭର ନିଶା, ନୂଆକରି ଫ୍ରକ୍‌ଛାଡ଼ି ଶାଢ଼ୀ ପିନ୍ଧୁଥିବା ଝିଅଟି ମନରେ ଯେମିତି ଲୁଚେଇ ଲୁଚେଇ ବଡ଼ଭାଇର ତକିଆତଳୁ "ବ୍ୟାକୁଳ ହୃଦୟ" "ବେଶ୍ୟା ପିରଙ୍ଗାର ଗୋପନ କଥା" ଭଳି ଶସ୍ତା ଉପନ୍ୟାସ ପଢ଼ିବାର ନିଶା ଲାଗିଥାଏ, ସେମିତି ଦପ୍ ଦପ୍ ଛାତିରେ ଶଶାଙ୍କଶେଖର ଚିଠିଟିକୁ ପଢ଼ୁଥିଲେ ।

ଆପଣ ନାରୀ ମନର ଗୋପନ ଇତିହାସକୁ ଯେପରି ଗଭୀର ଅନୁଶୀଳନ କରିଛନ୍ତି, ତା'ର ସହଜାତ ପ୍ରକୃତି, ତା'ର ଆଦିମ ବୁଭୁକ୍ଷା, ତା'ର ଉଦ୍ଦାମ ପ୍ରେମ, ସହଜ, ସରଳ ଜୀବନର ସାବଲୀଳ ଗତି ଆଉ ସର୍ବୋପରି ସନ୍ଦେହଯୁକ୍ତ ମନଟାକୁ ଯେମିତି ଚିତ୍ରଣ କରିଛନ୍ତି, ମୁଁ ବିସ୍ମିତ ହୁଏ । ନାରୀ ନ ହୋଇ ନାରୀ ମନର ଏତେ ନିଭୃତ ତଥ୍ୟ ଜାଣିଲେ କେମିତି ? ସେ ଦୃଷ୍ଟିରୁ କେବଳ ମୋର ନୁହେଁ, ସମଗ୍ର ନାରୀ ସମାଜର ଆପଣ ବନ୍ଦନୀୟ । (ଶଶାଙ୍କଶେଖର ଅନୁଭବ କରୁଥିଲେ ନିଜ ଭିତରେ ଏକ ମନୋବିଜ୍ଞାନୀର ସ୍ୱର୍ଗୀୟ ଭାବ) କିନ୍ତୁ ଆପଣ ନାରୀ ରୂପର ଯେପରି ନଗ୍ନ ବିଶ୍ଳେଷଣ କରନ୍ତି, ତା'ର ଦୁର୍ମୂଲ୍ୟ ଚରିତ୍ରକୁ ଯେପରି ମୂଲ୍ୟହୀନ କରିଦିଅନ୍ତି, ଗୃହିଣୀ ନାରୀ ଦୁର୍ଗା ଅନ୍ନପୂର୍ଣ୍ଣାର ଜୀବନରେ ଯେପରି ସ୍ୱେଚ୍ଛାଚାର ଓ ପରକୀୟା ପ୍ରେମର ପଙ୍କ ବୋଳି ଦିଅନ୍ତି ଏବଂ ପୁରୁଷର ନିର୍ମଳ ସ୍ୱଚ୍ଛ ଚରିତ୍ର ଆଗରେ ନାରୀର ଚରିତ୍ରକୁ ଆବିଳ କରିବାକୁ ଆପଣ ଯେପରି ପ୍ରଚେଷ୍ଟା କରନ୍ତି, ତାହାହିଁ ଆପଣଙ୍କୁ ନିନ୍ଦନୀୟ କରିଛି । ବ୍ୟଭିଚାର, ଈର୍ଷା, ସନ୍ଦେହ, ସ୍ୱେଚ୍ଛାଚାର ନାରୀର ଯେପରି ସହଜାତ ପ୍ରକୃତି—କ୍ଷମା, ଦୟା, ଉଦାରତା ଓ ସହନଶୀଳତା ପୁରୁଷର ସେପରି ସହଜାତ ଗୁଣ । ଏସବୁ ଉପହାସନୀୟ ଉପମା ପଢ଼ିଲେ କେବଳ ମୋର ନୁହେଁ ସମସ୍ତ ନାରୀ ସମାଜର ଆପଣ ନିନ୍ଦନୀୟ—ଘୃଣ୍ୟ ! (ଶଶାଙ୍କଶେଖରଙ୍କ କପୋଳରେ ଘର୍ମ ବିନ୍ଦୁର ଆଲେଖ୍ୟ; ଇସ୍, ଝିଅଟା ଅତିମାତ୍ରାରେ ଉଦ୍ଧତ । ) ଆପଣ ହୁଏତ ପରିବାର ଭିତରେ ବଢ଼ି ନାହାନ୍ତି ଶଶାଙ୍କବାବୁ; ବଢ଼ିଥିଲେ ପରିବାରରେ ବାପା ବୋଉଙ୍କ ଭୂମିକାକୁ ତୁଳନା କରି ନାରୀ ପୁରୁଷର ମୂଲ୍ୟ ନିର୍ଣ୍ଣୟ କରିପାରନ୍ତେ । ମାନୁଚି, କବିର ସଂସାର, ସମାଜ ଓ ପରିବାର ସାଧାରଣ ସଂସାରଠାରୁ ପୃଥକ । କିନ୍ତୁ ତା'ବୋଲି ସେଇ ପୃଥକ ସଂସାରର ରୂପ ଯଦି ଆପଣ ଏମିତି ଅବାନ୍ତର ଭାବେ ଦିଅନ୍ତି, ଏ ସଂସାରରେ କିଏ ବା କାହିଁକି ତାକୁ ସାର୍ବଜନୀନ ସତ୍ୟ ବୋଲି ମାନିନେବ ?

ଆପଣ ପରିବାରର ଘନିଷ୍ଠ ସଂସ୍ପର୍ଶରେ ଆସି ନାହାନ୍ତି ହୁଏତ, ଅବା କୌଣସି ପ୍ରେମିକା ଆପଣଙ୍କୁ ଠକିଛି । ତା'ର ହୃଦୟ, ମନ ଓ ଚରିତ୍ରର ଦର୍ପଣରେ ଆପଣ ସମସ୍ତ ନାରୀସମାଜକୁ ଦେଖିଲେ କାହିଁକି ? ପ୍ରେମିକାର ନିକଟରେ ଜନନୀ ଜାତିକୁ ତଉଲିଲେ କାହିଁକି ??

ଆମ ପରିବାରକୁ କେବେ ଥରେ ଆସନ୍ତୁ ଶଶାଙ୍କ ବାବୁ—ଦେଖିବେ, ପରିବାର କ'ଣ । ବାପା ମୋର ସାମାନ୍ୟ ବେତନଭୋଗୀ କର୍ମଚାରୀ, ବୋଉ ମୋର ସ୍ୱଳ୍ପ ଶିକ୍ଷିତା । ଆମେ ଗୋଟାଏ ଡଜନ ଭାଇ ଓ ଭଉଣୀ । ଅଭାବ ଅନାଟନର ଝଡ଼ ଆମ ପାରିବାରିକ ଜୀବନର ଜାହାଜକୁ ସବୁବେଳେ ବିକ୍ଷିପ୍ତ କରିଚି—ପଥଭ୍ରଷ୍ଟ କରିବାର ପ୍ରଚେଷ୍ଟା କରିଚି । ମାତ୍ର ବୋଉ ମୋର ସୁଦକ୍ଷ କପ୍ତାନ, ବାପାଙ୍କର ମାସିକ କେଇଟି ଟଙ୍କା ଦରମାରେ ସେ ଏପରି ଚଳାଏ ଯେ କୌଣସିଦିନ ଆମେ ଅଭାବ ଜାଣିନୁ । ପିଲାଦିନୁ ବୋଉ ଆମକୁ ଆତ୍ମନିର୍ଭରଶୀଳ ହେବା ଶିଖାଇଚି, ଅନେକ ଅଭାବ ସତ୍ତ୍ୱେ ମଧ୍ୟ ଆମେ ସୁଖୀ । ପରସ୍ପରକୁ ନିବିଡ଼ଭାବେ ଭଲ ଯେମିତି ପାଉ, ଆମ ଭିତରେ ସାମୟିକ କଳି ବି ଲାଗେ ସେମିତି । ଶୀତରାତିରେ ଗୋଟିଏ ରେଜେଇ ତଳେ ଆମେ ଗୋଟିଏ ଡଜନ ପିଲା ଶୋଇ ଶୋଇ ଅନେକ ରୋମାଞ୍ଚକର କାହାଣୀ ପରସ୍ପର ଭିତରେ କୁହାକୋହି ହେଉ ହେଉ ଶୀତ କ'ଣ ଜାଣୁନି । ଶୋଇପଡ଼ୁ । ସେଇ ଗୋଟିଏ ବଖରା ଘରେ କଲେଜ, ହାଇସ୍କୁଲ ଠାରୁ ଧରି ଦୁଇଦୁଣେ ଚାରି ଓ ଅ-ଆର ସମଷ୍ଟିଗତ ଧ୍ୱନି ଉଠାଇ ଆମେ ପାଠପଢ଼ୁ । ବଡ଼ଭାଇ ମୋର କୃତୀଛାତ୍ର—ନିଜ ଚେଷ୍ଟାରେ ସେ ଜଣେ ପ୍ରାଣୀତତ୍ତ୍ୱବିତ । ମଝିଆଁ ଭାଇ ଡାକ୍ତର । ସାନଭାଇ ଏମ୍. ଏ. ପାଶ୍‌କରି ସୈନ୍ୟବାହିନୀରେ ଜଣେ ଉଚ୍ଚପଦସ୍ଥ ମିଲିଟାରୀ ଅଫିସର । ବଡ଼ଭଉଣୀ ମୋର ଜଣେ ମନସ୍ତତ୍ତ୍ୱବିତ୍, ତା'ତଳ ତା'ତଳ ଭାଇ ଭଉଣୀ ସମସ୍ତେ ସ୍କୁଲ କଲେଜରେ ପଢ଼ନ୍ତି । ଲଳିତ କଳାର ସାଧକ ଅନେକ । ଅବସର ବେଳେ ଗଳ୍ପ କବିତା ଲେଖନ୍ତି, ଛବି ଆଙ୍କନ୍ତି, ଗୀତ ଗାଆନ୍ତି । ଛୁଟିରେ ଆସିଲେ ସମସ୍ତେ ବାପାଙ୍କ ସଂଗେ ଆମ ଜମି ଚାଷ କରିବାକୁ ଘରଛପର କରିବାକୁ ଆମର ମଫସଲ ଗାଁକୁ ଯାଆନ୍ତି । କୃଷିକଲେଜରେ ପଢ଼ୁଥିବା ଭାଇ ଦ୍ୱିଗୁଣ ଉତ୍ସାହରେ ଲାଗିଯା'ନ୍ତି । ଆମେ ଭଉଣୀମାନେ ବୋଉକୁ ପ୍ରତ୍ୟେକ କାମରେ ସାହାଯ୍ୟ କରୁ ଏବେ ବି । ଏତେ ବଡ଼ ବଡ଼ ଭାଇ ଭଉଣୀଙ୍କର ଦୋଷ ଦେଖିଲେ ବୋଉ କାନମୋଡ଼ା ଶାସନ କରେ ବାପା—ନାଲିଆଖି ଦେଖାନ୍ତି ।

ବାପାବୋଉ ଆମକୁ ଭଲପା'ନ୍ତି, ସନ୍ଦେହ ବି କରନ୍ତି । ସେଇ ସନ୍ଦେହ ଆମକୁ ଆପଣଙ୍କ ତଥାକଥିତ ନାୟକ ନାୟିକାଙ୍କ ଭଳି ସ୍ୱେଚ୍ଛାଚାରୀ କରି ନାହିଁ । ମୋ ବଡ଼ ଭାଉଜ ଆସିଲେଣି—ବୋଉ ନିଜ ଗୁଣରେ ତାଙ୍କୁ ଆଣି ନେଇଛୁ । ବାପା ଯେଉଁଠି ଠିକ୍‌କଲେ, ଭାଇ ବି କନ୍ୟା ନ ଦେଖି ହଁ ଭରିଲେ । ଆପଣ ଦେଖନ୍ତେ ହେଲେ ଥରେ—ନାରୀତ୍ୱର ଦୀପ୍ତିରେ ଜାଜ୍ୱଲ୍ୟମାନ ଏଗାର ଦିଅର ନଣନ୍ଦଙ୍କ ଦୌରାତ୍ମ୍ୟକୁ ହସି ହସି ସହୁଥିବା କର୍ମପ୍ରବଣା, ସ୍ନେହ-ଉଚ୍ଛଳା ଏଇ ମହନୀୟା ନାରୀ ମୂର୍ତ୍ତିକୁ !! ତେବେ ଦେଖନ୍ତେ ନାରୀର ଭୂମିକା କ'ଣ । ଆପଣଙ୍କ ନାୟିକା ଆଉ ମୋ ବୋଉ, ନୂଆବୋଉ ଭଉଣୀମାନଙ୍କ ଭିତରେ ସାମଞ୍ଜସ୍ୟ କ'ଣ ।

ଆପଣଙ୍କର କେତେକ ଲେଖା ପଢ଼ି ଆପଣଙ୍କୁ ମୁଁ ଅନେକ ଶ୍ରଦ୍ଧା କରୁଥିଲି । ଠିକ୍ ମୋର ଲେଖକ ମଝିଆଁ ଭାଇଙ୍କୁ ଯେମିତି ସ୍ନେହ ଓ ଭକ୍ତି କରେ, ଆମଘରେ ଆପଣଙ୍କ ଲେଖା ଆଲୋଚନା ହୁଏ । ବଡ଼ଭାଇ କହନ୍ତି—ଶଶାଙ୍କବାବୁ କବି, ଲେଖକ ହିସାବରେ ପ୍ରତିଭାଶାଳୀ; କିନ୍ତୁ ମଣିଷ ହିସାବରେ ପଶୁ । କାରଣ ପାଶବିକତା ମାନବିକତାକୁ ଟପି ଯାଇଛି ତାଙ୍କ ଲେଖାରେ । ବିଶ୍ୱାସ କରନ୍ତୁ, ସେତେବେଳେ ମୁଁ ଆହତ ହୁଏ । ବଡ଼ ଭଉଣୀ ମଣିଷ ମନର ଗୋପନ ତଥ୍ୟ ଉପରେ ରିସର୍ଚ୍ଚ କରୁଚି । ସେ ବି କହେ ଶଶାଙ୍କବାବୁ କେତେକ ସତ କଥା ଲେଖନ୍ତି, କିନ୍ତୁ ମିଥ୍ୟାର ପ୍ରଲେପ ଏତେବେଶୀ ଯେ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ସାବଲୀଳ ପ୍ରବାହ ସେଥିରେ ରୁଦ୍ଧ ହୁଏ । ବାପା ମତ ଦିଅନ୍ତି—ଶଶାଙ୍କବାବୁ ଯଦି ଭଞ୍ଜ କବିଙ୍କ ପରି ହେବାକୁ ପ୍ରୟାସ କରୁଥାନ୍ତି, ତାଙ୍କ ନାୟକ ନାୟିକାମାନଙ୍କୁ ଏକ-ପତ୍ନୀ-ଧର୍ମୀ ବା ଏକ-ପତି ନିଷ୍ଠାର ଉଜ୍ଜ୍ୱଳ ଦୀପ୍ତିରେ ଦୀପ୍ତିମାନ କରନ୍ତୁ । କେବଳ ଅଶ୍ଳୀଳ ଲେଖା ଲେଖିଲେ ଭଞ୍ଜ କବିର ସ୍ଥାନ ମିଳିବନି । ଭଞ୍ଜଙ୍କ ପ୍ରେମର ଐକାନ୍ତିକ ନିଷ୍ଠା ଲୋଡ଼ା ।

ଭାବିଦେବନି ଏତେ ଲମ୍ବା ଚିଠି ଲେଖୁଚି ବୋଲି । ଆପଣଙ୍କ ନାୟିକା-ମାନଙ୍କ ଭଳି "ପୁରୁଷର ପ୍ରତିଭା ନିଆଁରେ ନାରୀ ପତଙ୍ଗ ଭଳି ଝାସ ଦିଏ ।" ମୋର ବିବାହ ପାଇଁ ନିର୍ବନ୍ଧ ସରିଛି । ଅନେକ ଦିନୁ ଆପଣଙ୍କୁ ଲେଖିବି ଲେଖିବି ଭାବି ପାରି ନ ଥିଲି । ଦେଖିଲି ବିବାହ ପରେ ବି ଲେଖିବା ସମ୍ଭବ ନୁହେଁ । କାରଣ ମୋ ସ୍ୱାମୀଙ୍କୁ ତ ମୁଁ ଆଗରୁ ଦେଖିନି, ଚିହ୍ନିନି, ତାଙ୍କ ପ୍ରକୃତି ସଂପର୍କରେ କିଛି ଜାଣିନି । ସେ ଯଦି ମୋ ସାନଭାଇଙ୍କ ଭଳି ପ୍ରତି ନାରୀକୁ ସନ୍ଦେହ କରୁଥିବେ !! କାରଣ ପୁରୁଷ ବନ୍ଧୁ ନାରୀବନ୍ଧୁ ସଙ୍ଗେ ଅବାଧ ଭାବେ ମିଶିଲେ ମଧ୍ୟ, ପତ୍ନୀର ଏକ-ପୁରୁଷ ନିଷ୍ଠାକୁ ସେ ସହ୍ୟକରି ପାରେନା, ଏଟା ସ୍ୱତଃସିଦ୍ଧ ! ଏକନିଷ୍ଠ ପ୍ରେମର ସ୍ମାରକ ! ଭାବିଦେବନି ମୁଁ ପ୍ରତିଶୋଧ ନେଉଚି ଆପଣଙ୍କ ଲେଖାର ପ୍ରତିବାଦରେ ପୁରୁଷକୁ ଗ୍ଲେଟକରି । ନା-ନା ପୁରୁଷର ଏଇ ସନ୍ଦେହଗୁଣଟାକୁ ମୁଁ ପସନ୍ଦକରେ । କାରଣ ଆପଣଙ୍କ ନାୟକ ଏଇ ସନ୍ଦେହରୁ ମୁକ୍ତ, ସରଳ ବିଶ୍ୱାସୀ ବୋଲି ପତ୍ନୀ ତା'ର ଅନ୍ୟ ପ୍ରେମିକ ସଙ୍ଗେ ପଳାୟନର ସୁଯୋଗ ପାଏ ।

ଏହାରି ସତ୍ତ୍ୱେ ବି ଆପଣଙ୍କର ପ୍ରତିଭା ଅଛି । ସୃଷ୍ଟିକାରୀ ଶକ୍ତି ଅଛି । ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରୁଚି, ଶେଷରେ ସେଇ ପ୍ରତିଭା ନିକଟରେ ମୁଁ ମଥା ନତ କରି ଆଶୀର୍ବାଦ ମାଗୁଚି । ମୋ ଲେଖା ଓ ଲେଖନୀ ତଥାକଥିତ କଳଙ୍କ-ଶୂନ୍ୟ ହେଉ ।

। ଇତି ।

ଆପଣଙ୍କର

ମାଳବିକା

ଚିଠିଟି ପଢ଼ି ସ୍ତବ୍ଧ ହୋଇଗଲେ ଶଶାଙ୍କ ଶେଖର । ତାଙ୍କ ଆଖି ଆଗରେ ନାଚି ଉଠୁଥିଲା ଗୋଟିଏ ଶ୍ରମ-ଶାନ୍ତ ନାରୀ ମୂର୍ତ୍ତିର ଆଗ୍ନେୟ ବ୍ୟକ୍ତିତ୍ୱ । ସେ ପ୍ରୀତି ଓ ପ୍ରତିମାଠାରୁ ପୃଥକ୍ । ଆହା ! ତାଙ୍କର ଏମିତି ଭଉଣୀଟିଏ ଥାନ୍ତାକି !! ସମସ୍ତ ନାରୀକୁ ପ୍ରେମିକା ଭାବି ଭାବି ଜୀବନସାରା ଦହନର ଜ୍ୱାଳାରେ ଛଟପଟ ହେଉଥିବା ଲେଖକ ଶଶାଙ୍କଶେଖରଙ୍କ ଜୀବନରେ ପ୍ରଥମ ଥର ପାଇଁ ଜାଗୁଥିଲା ଭଗ୍ନୀର ଅଭାବ । ନାରୀକୁ ଜୀବନସାରା ବିଭିନ୍ନ ଭାବେ ଚିତ୍ରଣ କରି ଆସୁଥିବା ଗୋଟିଏ ପୁରୁଷ ପ୍ରାଣରେ ଜାଗୁଥିଲା ନାରୀଜାତି ପ୍ରତି ଏକ ଅନାବିଳ ପ୍ରେମ ଓ ମମତାର ସ୍ୱତଃ ପ୍ରବହମାନା ଫଲ୍ଗୁ ।

ଚିଠିଟିକୁ ଓଲଟପାଲଟ କରି ଶଶାଙ୍କଶେଖର ଖୋଜୁଥିଲେ ପତ୍ର ପ୍ରେରକର ଠିକଣା — କିନ୍ତୁ ନିରର୍ଥକ ।

ଆକାଶରେ ଜଳଉଠୁଥିଲା ଅସଂଖ୍ୟ ତାରାର ଶ୍ରେଣୀ—ସେଇ ଅସଂଖ୍ୟ ତାରା ଭିତରେ ଶଶାଙ୍କଶେଖର ନିରୀକ୍ଷଣ କରୁଥିଲେ ସେଇ କ୍ଷୁଦ୍ର ଅଥଚ ଦୀପ୍ତିମାନ ଧ୍ରୁବତାରାକୁ ।

ଅପରିଚିତା ମାଳବିକାର ଚିଠିଟି ପଢ଼ୁଥିଲା, କଥା କହୁ କ୍ଳାନ୍ତହୋଇ ପଡ଼ୁଥିବା ଏକ ପ୍ରଗଲ୍ଭ କିଶୋରୀ ଭଳି ।



# ବଜ୍ର କାପ୍ତା

**ଅଧ୍ୟାପକ ହରିହର ମିଶ୍ର**

ଗାଢ଼ ମେଘ । ଖୋଲା ଅନ୍ଧାର ସୋରିଏ ଅଂଶଭଳି ଉଲଗ୍ନ ଦିଗନ୍ତର ଉଚ୍ଛୁଳ ବିସ୍ତରଣ ।

ବର୍ଷା ସାଙ୍ଗେ କାଉ ଉଡ଼ୁଛନ୍ତି, ଆଉ ଶିଶୁଟି ମୁହଁ ଲୁଚେଇଲା ଭଳି ସୂର୍ଯ୍ୟ ବେଳେବେଳେ ଜଣାପଡ଼ୁଛି ତ କେତେବେଳେ ଚନା ଚନା ହସଭଳି ବୈଶାଖର ଶିମିଳି ତୂଳା ଫାଟିଲା ଭଳି ପବନରେ ଉଡ଼ୁଛି । ଶିଶୁଙ୍କର ଖେଳପଡ଼ିଆର ଚନ୍ଦା ମୁଣ୍ଡକୁ ଶାଗୁଆକରି କାହାର ଚତୁର ହାତ ଗୁଡ଼ାଏ ଅଜଣା ବିହନ ବୁଣି-ଚାଲିଛି ।

ଘରେ ଟ୍ରାଂଜିଷ୍ଟର୍ ଫାଟୁଛି ଗୋଳା ବାରୁଦ ଭଳି ଓ କାଲି ରାତିର ଏକ ଜାଗରଣ ଅବସ୍ଥା ମନେପଡ଼ୁଛି—ଗୋଟାଏ ସ୍ୱପ୍ନକୁ ଖୋଜିବାକୁ ଜଣେ ମଧ୍ୟମ ବୟସ୍କାଙ୍କ ସହିତ ମୁଁ ମିଳିତ ଭାବରେ ମହାକାଶରେ ଏକ କମ୍ପଦନ୍ତୀ ସୃଷ୍ଟି କରୁଥିଲି । ··ସେମିତି ସୃଷ୍ଟି, ଗୋଟାଏ ବିଧବା । ବହୁଯୁଗରୁ ଶବ ପଛେ ପଛେ ଧାଇଁ ଧାଇଁ ଶବର ଆଗକୁ ଚାଲିଗଲାଣି । ନାରୀଟି ଫେରି ଚାହୁଁନି । ମୁଣ୍ଡ ମୁକୁଳା କରିଛି । ପୂର୍ବ ତପସ୍ୱୀଙ୍କ ଦୃଢ଼ତା ନାହିଁ, ଅଥଚ ସେଇ ନିରଶ୍ରୁ ନୟନ ଜମାଟ ବାନ୍ଧି ମାଙ୍କଡ଼ା ପଥରର ଏକ ମୂର୍ତ୍ତିଭଳି ଦିଶୁଛି ।

ଆଜି ଖରାବେଳ । କଦଳୀପତ୍ରର ପାନିଆ ଭିତରେ ପବନ ଶୁଭୁଛି··· ମାଇକ୍ ଭିତରେ ନିର୍ବାଚନ ପ୍ରାର୍ଥୀର କାତର ସ୍ୱରଭଳି; ଅଥଚ ମୋ ଅନ୍ତରର ବ୍ୟାକୁଳତା ସହିତ ତାର ଲେଶ୍ ସମ୍ପର୍କ ନାହିଁ । ଏକ ଶୀତଭଳି ଋତୁ ଭୁଲି ହେଇଗଲାଣି । ଓଠରେ ଶୀତ ନାହିଁ କି ସହରରେ ଋତୁ ନାହିଁ ; ଅଥଚ ପ୍ରତ୍ୟେକଟି ମିନଟ୍‌ରେ ଋତୁର ପରିବର୍ତ୍ତନ ହୋଇ ଚାଲିଛି । ଦଳକାଏ ବର୍ଷା ପବନ ବିଜୁଳୀର ସତର୍କତା ସତ୍ତ୍ୱେ 'ଆଷାଢ଼ସ୍ୟ ପ୍ରଥମ ଦିବସ' ଭଳି ମୁହୂର୍ତ୍ତର ସୂର୍ଯ୍ୟାସ୍ତ ଘୋଟି ଆସୁଛି···ଅନେକ ଦିନ ଧରି ଶ୍ରାବଣଠାରୁ ଅଶିଣଯାଏଁ ପାଣି ଭରି ନଈର ପଠାରେ । ସେଇ ସଞ୍ଜର ଗୋଟିଏ କାଚ ଚୁଣୁଟୁଣୁ ଓ ଅକସ୍ମାତ୍ ଟକୁଆ ପକ୍ଷୀର ହାଡ଼ଥରା ସ୍ୱରରେ ବିସ୍ତୃତ ନିର୍ଜନତାର ଅତଳ ପ୍ରତିଧ୍ୱନିର ଅବିରାମ ଶବ୍ଦ । ଶବ୍ଦ··· ସୂର୍ଯ୍ୟ···ଦେଉଳର ବୃକ୍ଷାବତରଣ...ସାମାନ୍ୟ ସୂର୍ଯ୍ୟ...କ୍ରୋଧ···ରକ୍ତିମତା··· ବର୍ଷା···ଅଶ୍ରୁ···କୋଇଲି ଡାହୁକ କାହିଁ [illegible] ଗୋଟାଏ [illegible]

ଘୂରି ଘୂରି ମୋର ଶୋଇବା ଶେଯରୁ ମତେ ନେଇ ବୁଲାଉଛନ୍ତି । ବିଜମଲ୍ଲୀ ଓ ବଣର ମନ୍ଦାର ଟାଙ୍ଗିଆ କରି ଗୋଟାଏ କାଠ ନେଇ ପାଣିଚୋଲା ଯାଉଥିବା ଦଣ୍ଡ, ଉଦଣ୍ଡମାନେ ଫୁଙ୍ଗୁଲା କଳା ଦେହ ଉପର ହାତ ଧଳାକନା ପିନ୍ଧି ପାଞ୍ଚଣ ପିଟି ରକ୍ତରେ ଚକ୍କାର କରୁଛନ୍ତି—

"ଏକ ତାଳେ ହନୁମନ୍ତ ଦ୍ୱିତାଳେ କଟାକ"

ସେ ଆଗେ ଆଗେ ଚାଲିଗଲା । ଚେକ୍ ସାଟ ···ଡେଙ୍ଗା ଟ୍ରାଉଜର୍ ଟାଏ ଘୋଡ଼ାହୋଇ ପବନରେ ଦୋହଲୁଥିଲା ବେତାଳ ଭଳି । ସେ କାଲି ମୁହୂର୍ତ୍ତିକ ପୂର୍ବରୁ ଯଥେଷ୍ଟ ଦାବୀ କରୁଥିଲା ଯେ "ଜୀବନର ଶେଷ ଅଭିଜ୍ଞତା କଣ ?"

"ମୃତ୍ୟୁ ?"

"ନା"

"ତେବେ"

ସେ ପଡାକୁ ଫୁଲେଇ ଦେଲା ଓ ତାର ଦେହ ହାତ ଶିଥିଳ ହୋଇଆସିଲା ଉଚ୍ଚକାଳର ଜଞ୍ଜାଳ ଶୀର୍ଣ୍ଣ ଶୀତଳ ନପୁଂସକତା ଭଳି । "ଅନେକ ଦିନ ଧରି ମୁଁ ଯନ୍ତ୍ରଣା ପାଉଛି—" ଠିକେ ପାଖକୁ ନଅ ! ଗୋଟାଏ ବତାସରେ କବା ବାତ-ଚକ୍ରରେ, ରକ୍ତ ଭିତରେ କବା ମୃତ୍ୟୁ ଭିତରେ । ମତେ ସେଇ ଭିତରକୁ ନେଇଯାଅ ଯେଉଁଠି ସେଇ ସଞ୍ଜ ଆଲୁଅର ଝାପ୍ସା ନଦୀ ।

ଯେଉଁ ଆଲୁଅ ତମକୁ ଭଲ ଲାଗେ, କାରଣ ସେତେବେଳକୁ କୌଣସି ଆଲୁଅ ଲାଗି ନ ଥାଏ ଓ ଅନେକ ଆଲୁଅ ବାକିଥାଏ । 'ଆଜିର ଏ ସଞ୍ଜରେ ନକ୍ଷତ୍ର ସାକ୍ଷାତ୍...ନକ୍ଷତ୍ର'

ସେ ଆଉ ଘରକୁ ଚାଲିଗଲା ବୋଧହୁଏ ନିଜେ ଏକା ଏକା ରହିବାକୁ ଓ ମତେ ଏକା ଏକା ଛାଡ଼ିଦେବାକୁ ।



# ॥ ଅଂତଲିପି ॥

● ଭଗବାନ ଜୟସିଂହ

ରେଖା, ତୁମ ପାଦର ଝୁମ୍ ଝୁମ୍ ନୂପୁର ଧ୍ୱନିରେ ବାୟୁମଣ୍ଡଳ ତରଙ୍ଗାୟିତ କରି ମୋ ନିକଟକୁ ଫେରିଆସ । ମୋର ଏଇ ନିର୍ଜନ କୋଠରୀରେ ମୁଁ ଏକା । ମୋର ଝରକାପାଖରେ ବଣ ପାହାଡ଼ର ସୁଷମା, ଅସ୍ପଷ୍ଟ ଜହ୍ନରାତି ଏବଂ ସ୍ମୃତିର କେତୋଟି ଆଦିମ ନୀଳ ଭାଷା । ସବୁ ଯେମିତି ତୁମ ପ୍ରତୀକ୍ଷାରେ ବ୍ୟାକୁଳ, ଏଠାରେ ସବୁ ଯେମିତି ଖାଁ—ଖାଁ । ଜୀବନ ନିଶୂନ ହୋଇଉଠୁଛି, ମୋର ଏଇ ଶୂନଶାନ୍ ଆଖିରେ ତୁମର ସୁଷମା ଯେମିତି ମୋତେ ଅଥୟ କରିଦେଉଛି ।···ରେଖା, ତୁମେ କେମିତି ଜାଣିବ ଯେ, ତୁମର ଯୋଗୁଁ ହିଁ ମୁଁ ଆଜି ସର୍ବହରା ହୋଇଗଲି । ଜୀବନର ସମସ୍ତ ଦମ୍ଭ ଭାଙ୍ଗି ଗଲା । ଭବିଷ୍ୟତର ସମସ୍ତ ସ୍ୱପ୍ନ ମରିଗଲା । ହଜିଗଲା ଯୁଗସଞ୍ଚିତ ଅବଶୋଷ, ଆବେଗ ଓ ସବୁଜିମା, ସବୁ କିଛି । ତୁମେ ବା କମିତି ଜାଣିବ ଯେ ତୁମକୁ ଓ ଏ ପୃଥିବୀକୁ ଭୁଲିଯିବାକୁ ଚେଷ୍ଟା କରି ମୁଁ ଆଜି ପ୍ରଚୁର ସିଗାରେଟ୍ ପିଉଛି ଓ ମଦ ନିଶାରେ ବିଭୋର ହୋଇ ଏଇ ନିର୍ଜନ କୋଠରୀରେ ଛଟପଟ ହେଉଛି । କହ ରେଖା—ମୁଁ କିଛି ଭୁଲ କରୁନି ତ । ସେ ଯା'ହେଉ ଏଇ ରାତିର ଅସ୍ପଷ୍ଟ ଆଲୋକରେ ତୁମେ ମୋ ନିକଟକୁ ଫେରିଆସ ।

ରେଖା, ତୁମର ପ୍ରତୀକ୍ଷାରେ ମୁଁ ଏଠି ବସିଛି । ଏଠାର ଜହ୍ନରାତି, ବଣ ପାହାଡ଼, ବୃକ୍ଷ ଆକାଶ ସବୁ ଯେମିତି ସମ ସ୍ୱରରେ ମୋତେ ତାଚ୍ଛଲ୍ୟ କରୁଛନ୍ତି । ମୋର ନିର୍ଜନ କୋଠରୀ ଭୟଙ୍କର ହୋଇଉଠୁଛି । ମୁଁ ଆଉ ଆଗେଇ ପାରୁନି । ଜୀବନର ସମସ୍ତ ମାୟା ମମତା ସବୁ ମୋ ନିକଟରେ ତୁଚ୍ଛ ହୋଇଯାଉଛି । ମୁଁ ଏଠାରେ ଗୋଟିଏ ଚୁନ୍‌ଷେନ୍ ବର୍ତ୍ତିର ପରି ଜଳୁଛି । (ପ୍ରବଳ ଅନ୍ତର୍ଦାହରେ ଏପରି ଜଳିଜଳି ନିଃଶେଷ ହୋଇଯିବାକୁ ମୁଁ ଚାହୁଁଛି । ) ଏ ପୃଥିବୀ ମୋ ପକ୍ଷରେ ବିଷାକ୍ତ ହୋଇ ଉଠୁଛି । ତୁମେ ହୁଏତ ଏସବୁ ଜାଣିପାରୁ ନ ଥିବ, ରେଖା । କାରଣ ତୁମେ ସେଠି ବିଳାସ ବ୍ୟସନରେ ବୁଡ଼ି ରହି ଏ ସବୁ ଭାବିବାକୁ ସମୟ ପାଉ ନ ଥିବ ବା ଏ ସବୁ ଭାବିବାକୁ ପସନ୍ଦ କରୁ ନ ଥିବ ।

ରେଖା, ରେଖା ମୋର ! ଅନେକ ସମୟରେ ତୁମ ପାଖକୁ ଚିଠି ଲେଖି ଏ ସବୁ ଜଣେଇ ଦେବାକୁ ଚେଷ୍ଟା କରିଛି ; କିନ୍ତୁ କଲମ ମୋର ସ୍ଥିର ହୋଇ-ଯାଇଛି । ସେ ଯେମିତି ମୋ ବିରୁଦ୍ଧରେ ବିଦ୍ରୋହ କରି ଉଠିଛି । ସତରେ ରେଖା,

ତୁମ କଥା ଭାବିଲାବେଳେ ଏ ସୃଷ୍ଟି ମୋ ପକ୍ଷରେ ରହସ୍ୟମୟ ହୋଇ ଉଠେ । ଜୀବନର ସମସ୍ତ ସ୍ୱପ୍ନ, ଅଭିମାନ, ଆବେଗ, ବିଭିତ୍ସତା ବା ନଗ୍ନତା ଗୋଟି ଗୋଟି ହୋଇ ନାଚିଉଠେ । ମୋର ହୃଦୟରେ ଯନ୍ତ୍ରଣାର ତୋଫାନ ଉଠେ । × ×

ଆଃ—ତୁମେ ଚାଲି ଆସ ରେଖା ! ଦେଖ, କୋଠରୀ ବି ଏବେ ସୁଦ୍ଧା ମୋର ସେଇମିତି ଖାଲି ପଡ଼ିଛି । ତୁମ ବିନା ମୋର ବେଦନାକ୍ତ କବିତାଗୁଡ଼ିକ ସେଇମିତି ପବନରେ ଇତସ୍ତତଃ ଘୂରୁଛି । ମୋର ଏଇ କୋଠରୀର ଟେବୁଲ ଉପରେ ମୁହଁ ରଖି ମୁଁ ତୁହା ତୁହା କୋହ ଭିତରେ ଖାଲି କାନ୍ଦୁଛି ଏବଂ ମୋର ସେଇ ନିର୍ଗତ ତପ୍ତ ଲୁହରେ ଟେବୁଲର ସମସ୍ତ ବହିପତ୍ର ଓଦା ହୋଇଯାଉଛି ।...ଏଁ, ତମେ ବିଶ୍ୱାସ କରିପାରୁନ ରେଖା, ନାଁ—ନା, ତୁମେ କେମିତି ବା ବିଶ୍ୱାସ କରିପାରିବ, କେମିତି ବା ତୁମେ ମୋ ଅନ୍ତର କଥା ଜାଣିପାରିବ ?

ଦୀର୍ଘ ଦୁଇ ବର୍ଷ ପରେ ସେଦିନ ତୁମକୁ ହଠାତ୍ ପାଖରେ ଦେଖି କାହିଁକି ତୁମକୁ ନିଜର ବୋଲି ଭାବିପାରିଲିନି ରେଖା । ତୁମକୁ ଦେଖିବା ଯେପରି ଆକର୍ଷିକ ତୁମର ରୁକ୍ଷ ସ୍ୱଭାବ ମଧ୍ୟ ଆହୁରି ଆକର୍ଷିକ ହୋଇ ଉଠିଲା; କିନ୍ତୁ ରେଖା— ଏଇ ଦୀର୍ଘ ଦିନର ବ୍ୟବଧାନକୁ କି ଭଳି ଭାବରେ ମୁଁ ଆଡ଼େଇ ଯାଇଛି, ମୋ ବ୍ୟତୀତ ଅନ୍ୟ କେହି ହୁଏତ ଅନୁଭବ କରିପାରିବେ ନି । ସତରେ ରେଖା—ଏତକ ଦିନ ଭିତରେ ତୁମେ କ'ଣ ମୋତେ ଦିନକ ପାଇଁ ମନେ ପକେଇ ନ ? କିନ୍ତୁ ତୁମକୁ ପାଇବାର ସ୍ୱପ୍ନ ଭିତରେ ମୁଁ ଆଜି ବଞ୍ଚିପାରୁନି ରେଖା । ମୋତେ ତୁମେ ହୁଏତ ଘୃଣା କରିପାର । ମୋର ମନର ସବୁଜ ପୃଥିବୀକୁ ଆକ୍ଷେପ କରିପାର । କିମ୍ବା ମୋର ହୃଦୟର ସୌଖୀନ ବଗିଚାରେ ଝଡ଼ ସୃଷ୍ଟି କରିପାର ବା ମୋ' ପ୍ରତି ସହୃଦୟ ହୋଇ ନ ପାର, ସେଥିରେ ମୋର ଦୁଃଖ ନାହିଁ । କାରଣ ମୁଁ ଜାଣେ ଦୁନିଆରେ ମୁଁ ଏକା ଗୋଟାଏ ବଣମଲ୍ଲୀ । ଅକାଳରେ ସେଇମିତି ଅଜାଣତରେ ହିଁ ଝଡ଼ିଯିବ । ମୋର ବାସ୍ନା ହୁଏତ କା' ପାଖରେ ପହଞ୍ଚି ପାରିବ ନି ।

ରେଖା, ଦିନ ଥିଲା, ତୁମେ ଗ୍ରେଷ୍ଟିଏ ଥିଲ । ତୁମର କୁନି କୁନି ପାଦ ପକେଇ ମୋର ହଷ୍ଟେଲ୍ ସାମ୍ନାରେ ତୁମ ସ୍କୁଲକୁ ପାଠ ପଢ଼ିବାକୁ ଯାଉଥିଲ । ମୋର ଉପସ୍ଥିତିରେ କେତେ ହସୁଥିଲ, କେତେ କେତେ ଲମ୍ବା ଲମ୍ବା କଥା କହୁଥିଲ, ମୋତେ ଜଣେ 'ଭବିଷ୍ୟତ ବକ୍ତା' କହିବାରେ ତୁମେ କେତେ ଯେ ଆନନ୍ଦ ପାଉଥିଲ ମୁଁ ଜାଣେ ନା, ତଥାପି ତୁମକୁ ମୁଁ ଚିଡ଼ଉଥିଲି । ଟିକେ ଟିକେ ସାମାନ୍ୟ କଥାରେ ତୁମକୁ ଚିଡ଼େଇବାରେ ମୁଁ ଯେତିକି ଆନନ୍ଦ ପାଉଥିଲି, ତୁମର କ୍ଷଣସ୍ଥାୟୀ ରାଗ ଟିକକ ସୃଷ୍ଟି ହେବାରେ ତା'ଠାରୁ ଅଧିକ ଆନନ୍ଦ ପାଉଥିଲି । ନିକଟସ୍ଥ ବଗିଚାର ଗ୍ରେଷ୍ଟ ଗ୍ରେଷ୍ଟ ଫୁଲ ଛିଣ୍ଡାଇ ଛିଣ୍ଡାଇ ମୁଁ ତୁମର ମୁହଁର ରଙ୍ଗକୁ ଲକ୍ଷ୍ୟ କରୁଥିଲି । ଆଃ—ରେଖା, ତୁମେ କେଡ଼େ ସୁନ୍ଦର ଦେଖାଯାଉଥିଲ ସେତେବେଳେ !!!.

ଏସବୁକୁ ତୁମେ ଆଜ ମନେପକେଇବାକୁ ରାଜି ହୋଇ ନ ପାର । କାରଣ ଏବେ ତୁମେ ଖୁବ୍ ବଡ଼ ହୋଇଗଲ । ଜୀବନର ହଦାମତା ଭିତରେ ତୁମର ବି ଅନେକ ପରିବର୍ତ୍ତନ ହୋଇଗଲା । ତୁମ ଚଲାପଥ ସୁଷ୍ଠିତ ହୋଇଉଠିଲା । ତୁମର ଏ ନିଷ୍ଠୁରତାକୁ ମୁଁ ଆଜ ଆକ୍ଷେପ କରୁଛି ରେଖା ! ତୁମକୁ ହୁଏତ ମୋର ଏଇ ଚିତ୍କାର ଶୁଣାଯାଉ ନ ଥିବ, ବା ବର୍ତ୍ତମାନ ତୁମେ ନିଘୋଡ଼ ନିଦରେ ଅନ୍ୟ କେଉଁ ସ୍ୱପ୍ନ ଭିତରେ ଶୋଇ ଯାଇଥିବ । ଅତୀତର ଏ ସାମାନ୍ୟ କଥାକୁ ମନେରଖିବାର ପ୍ରୟାସ ହୁଏ ତ ତୁମେ କରୁ ନ ଥିବ । କାରଣ ତୁମ ମତରେ ଏ ଅତୀତ ଅତୀତ ନୁହେଁ । ସାମାନ୍ୟ ବାଲି ଝଡ଼ ଠିକ୍ ସମୟରେ ହିଁ ଥମି ଯାଇଛି ।

ତୁମେ ଆଜ ମୋର କବର ନିକଟକୁ ଚାଲି ଆସ ରେଖା ! ଏଠି ମୋ ପାଖରେ ଆଉ କେହି ନାହିଁ । ମୁଁ ଏକା । ସତରେ ରେଖା ମୁଁ ଆଜ ଆତ୍ମହତ୍ୟା କରିଦେଇଛି । କିମ୍ବା କେଉଁ ସହସା ଆକସିଡେଣ୍ଟରେ ମରିଯାଇଛି । ତୁମ ନିକଟକୁ ହୁଏତ ଏ ଖବର ଯାଇ ସାରିଥିବ କିମ୍ବା ଯାଇ ନ ଥିବ, ଏ ସବୁକୁ ସଠିକ୍ ଜାଣେ ନା । କାରଣ ତୁମରି ସ୍ମୃତିନାରେ ମୁଁ ଆଜ ଦୁନିଆର ସବୁ କଥାକୁ ହିଁ ଭୁଲି-ଯାଇଛି । ରେଖା, ତୁମକୁ ମୋ ରାଣ, ତୁମେ ଥରକ ପାଇଁ ମାତ୍ର ଏଠାକୁ ଆସ । ତୁମକୁ ଅନେକ କିଛି କହିବାର ଅଛି । ···ଏଁ, ତୁମେ ଭୟ କରୁଛ ରେଖା ! ନାଁ—ନା ଏ ଶ୍ମଶାନ ନୁହେଁ । ଏ ଗୋଟାଏ ପବିତ୍ର ଜାଗା । ମୁଁ ବି ଦିନେ ଏପରି ଭୟ କରୁଥିଲି । ଆଜ ସେ ସବୁ ଦୂର ହୋଇଯାଇଛି ।

ଏ କବର ଭିତରେ ମଧ୍ୟ ମୁଁ ତୁମପାଇଁ କବିତା ଲେଖୁଛି, ରେଖା !

ଏ ପ୍ରେତ ରାଜ୍ୟରେ ମୁଁ ବି ଗୋଟାଏ ମସ୍ତବଡ଼ କବି ହୋଇଯାଇଛି । ସମସ୍ତେ ମୋ କବିତା ଶୁଣୁ ଛନ୍ତି ବା ଶୁଣୁ ନାହାନ୍ତି । ଆନନ୍ଦରେ କିଏ ତାଳି ମାରୁଛନ୍ତି ବା କିଏ କେତେ ଦୁଃଖରେ ଲୁହ ଗଡ଼ାଉଛନ୍ତି । ସେଥିରେ ବା ମୋର ଯାଏ ଆସେ କେତେ !

ସତରେ ରେଖା, କଲେଜ ପାଖର ସେଇ ଇଉକାଲିପଟସ୍ ଅରଣ୍ୟ ଭିତରେ ଗୁଡ଼ିରହି ଅନ୍ଧାର ରାତିରେ ତୁମର ଘରକୁ ଚାହିଁ ରହିବାରେ ମୁଁ କେତେ ଯେ ସାନ୍ତ୍ୱନା ପାଉଛି, ତାହା ତୁମେ ଅନୁଭବ କରିପାରୁ ନ ଥିବ । ମୋର ଆତ୍ମା ବି ସେଇ ବାଗରେ ଠିକ୍ ଘୂରିବୁଲୁଛି । ହୁଏତ ତମକୁ ସେ ପାଉନି କିମ୍ବା ଅତି ନିକଟରେ ଦେଖି ସୁଦ୍ଧା କଥା ପଦେ କହିବାକୁ ସାହସ କରିପାରୁନି । କାରଣ ଏ ଜମା ସମାଜକୁ ସେ ଖୁବ ଜୋରରେ ଭୟ କରୁଛି । ···ହିଁ ଠିକ୍ ଏଇଠିକି ତୁମେ ଚାଲିଆସ ରେଖା, ତୁମେ କ'ଣ ଆସିବନି ?

ଏଁ —କିଛି କହୁନ ଯେ—???

ଆଜ ତୁମେ ଅଠରଟି ଦ୍ୱୀପ ଜାଳସାରିବଣି ।

ସଭ୍ୟତାର ଅନୁପମ ଆଶୀର୍ବାଦରେ ତୁମେ ମସ୍ତିସ୍ଥାନ ହୋଇଉଠିବଣି । କେତେ ନଈ ସେମାନଙ୍କର ଗତିପଥ ବଦଳେଇ ଦେବେଣି । (କିନ୍ତୁ ରେଖା, ଅନେକ ନଈ ତ ଖରସ୍ରୋତ, ସମୁଦ୍ର ତ ଶାନ୍ତ ! ) ସତରେ ରେଖା, ତୁମେ ଆଜି ମୋ ପାଖକୁ ଫେରିଆସ । ଲକ୍ଷ ଲକ୍ଷ ତାରାଙ୍କର କ୍ଲାନ୍ତି ନେଇ ମୁଁ ଜଳୁଛି । ତୁମକୁ ଭାବି ଭାବି ମୁଁ ଅନେକ ଦୁର୍ବଳ ହୋଇଗଲଣି । ମୁଁ ଆଜି ଆକାଶପରି ନିର୍ବାକ ହୋଇଯାଇଛି । ପୃଥିବୀ ପରି ସହୀହ୍ନାନ ବା ସମୁଦ୍ର ପରି ଗମ୍ଭୀର ହୋଇଯାଇଛି । (ହୁଏତ ଦିନେ ମୋର ଦେହର ସୁସ୍ଥତା ପାଇଁ ଜିଦ୍ ଧରୁଥିଲ ଏବଂ ସାମାନ୍ୟ କଥାରେ ଫୁଲ୍ ଫୁଲ୍ କାନ୍ଦୁଥିଲ ବା ଅଭିମାନ କରୁଥିଲ । )

ରେଖା, ଏଇ କଲେଜ ଜୀବନରେ ଅନେକ ଝିଅଙ୍କ ସଂସ୍ପର୍ଶରେ ଆସିଲେ ସୁଦ୍ଧା ତୁମକଥା ଭାବିଲାବେଳେ ସେମାନେ ଯେ କେତେ ତଳକୁ ଖସିଯାଉଛନ୍ତି ମୁଁ ଜାଣିପାରୁନି । ହୁଏତ ସେମାନଙ୍କର ଅଯାଚିତ ସ୍ନେହ ସୌହାର୍ଦ୍ଦ୍ୟରେ ତୁମକଥା କ୍ଷୀଣ ହୋଇଯିବା କଥା । କିନ୍ତୁ ମୁଁ କ'ଣ ତା' କରିପାରୁଛି ? ଏହାର ମୂଳରେ ଅଛି ତୁମପ୍ରତି ମୋର ଆକର୍ଷଣ, (ରକ୍ତ କିମ୍ବା ମାଂସର ନୁହେଁ, ସ୍ନେହ କିମ୍ବା ସହାନୁଭୂତିର ମାତ୍ର । ) ଅନିମା ବା ପୁଷ୍ପମିତାର ସ୍ନେହ ହୁଏତ ମୋ ନିକଟରେ ତୁଚ୍ଛ ହୋଇଗଲା । ଅନେକ ଝିଅ ମଧ୍ୟ ସେଇ ମରୀଚିକା ପଥରେ ଦୌଡ଼ି ଦୌଡ଼ି ନିସ୍ପ୍ରାଣ ହୋଇଗଲେ । କିନ୍ତୁ କେହିହେଲେ ସେମାନଙ୍କ ନିକଟକୁ ମୋତେ ଟାଣି ନେଇପାରିଲେନି । ଆଃ—ମୁଁ ଆଉ ଲେଖିପାରୁନି ରେଖା !

ତାପରେ କହିପାରିବ ରେଖା, ତୁମପାଇଁ ହିଁ ଆଜି ମୁଁ କେତେ ତଳକୁ ଖସିଗଲି । ବିଶ୍ୱବିଦ୍ୟାଳୟରେ ଡ୍ରଉଜନ୍ ହସାଇଲି, ସିଗାରେଟ୍ ପିଇଲି ଓ ମଦ ଖାଇଲି, ସମାଜକୁ ଘୃଣାକରି ବସିଲି, ସବୁକିଛି କରିପାରିଲି । କିନ୍ତୁ କାହିଁକି—କେବଳ ତୁମରି ପାଇଁ ରେଖା—କେବଳ ତୁମରି ପାଇଁ ।

ତୁମେ କିନ୍ତୁ ଏବେ ସବୁକଥାକୁ ହିଁ ଅଳଗକେ ଭୁଲିଯାଉଥିବ । ବର୍ତ୍ତମାନ ଜୀବନର ରଙ୍ଗୀନ ସମ୍ଭାବନା ଭିତରେ ମୟୂରୀ ପରି ପୁଚ୍ଛ ମେଲାଇ ନାଚିଉଠୁଥିବ । କଲେଜ ଲାବରେଟୋରୀର ଅଳସ ପରିସର ଭିତରେ ତୁମେ କେତେ କେତେ ବିକର, ଟେଷ୍ଟଟ୍ୟୁବ୍, ବ୍ୟୁରେଟ ଆଦି ଭାଙ୍ଗି ଚାଲିଥିବ ଓ ଏସିଡ଼ର ତୀବ୍ର ଗନ୍ଧରେ ତୁମ ଘୂମନ୍ତ ଶାଢ଼ୀର ନୀଳରେଖା ଗୁଡ଼ିକ ଅସଙ୍କୁଚିତ ହୋଇଉଠୁଥିବେ ନିଶ୍ଚୟ । ତୁମେ ହୁଏତ ଏ ସବୁକୁ ହିଁ ବେଖାତିର କରି ଚାଲିଥିବ କିମ୍ବା ଉଦ୍ଭିଦ ବିଜ୍ଞାନ ଶ୍ରେଣୀରେ ବିଭିନ୍ନ ରଙ୍ଗୀନ ଫୁଲର ସମାହାର ଭିତରେ ତୁମେ ବିମୋହିତ ହୋଇଉଠୁଥିବ କିମ୍ବା ସୁନୀଳ ସ୍ୱପ୍ନର ମୃଦୁ ଶିହରଣ ଭିତରେ ତୁମେ ଭବିଷ୍ୟତ ଜୀବନ ପାଇଁ ଛେଉ ସୃଷ୍ଟି କରୁଥିବ, ଏଥିରେ ସନ୍ଦେହ ନାହିଁ ।

କିନ୍ତୁ ସେ ଯାହାହେଉନା କାହିଁକି ରେଖା, ତୁମ ସହ ଯଦି ନିର୍ଜନରେ କେବେଥରେ ଦେଖା ହୁଅନ୍ତା, ତା'ହେଲେ ତୁମର ଭିକ୍ଷା ଅଟକାଇ ମୁଁ ପ୍ରଶ୍ନ

ଛଳରେ କହନ୍ତ "ରେଖା, ତୁମ ହୃଦୟ କ'ଣ ବଦଳିବନ ?" ହୁଏତ ତୁମର ଉତ୍ତରକୁ ଅପେକ୍ଷା କରନ୍ତ ବା ନ କରନ୍ତ ସେ ଭିନ୍ନକଥା । ନଚେତ୍ ମୋର ପ୍ରଶ୍ନର ଉତ୍ତର ଖୋଜିଥାନ୍ତ ତୁମ ମନରେ, ଓଠରେ ବା ହୃଦୟରେ । ତୁମେ ହୁଏତ ଉତ୍ତର ଦିଅନ୍ତ ବା ଶିକ୍ସା ନ ଦେଇ ଫେରିଯାନ୍ତ । ମୁଁ ଖୁବ ଦୁଃଖ କରନ୍ତ । ହୃଦୟର କୋହକୁ ଚାପିଧରି ଘରକୁ ଫେରିଆସନ୍ତ ।

କିନ୍ତୁ ତୁମେ ଏବେ ଚାଲିଆସ ରେଖା । ତୁମର ପାଦର ରୁମ୍ଝୁମ୍ ଶବ୍ଦରେ ଘରଟିକୁ ମୁଖରିତ କରିଦିଅ । ମୋତେ ଆଉ କିଛୁଦିନପାଇଁ ବଞ୍ଚିବାକୁ ଦିଅ । ମୋର ହୃଦୟରେ ଯେଉଁ ବ୍ୟଥାର ଅଗ୍ନିବଳୟ ସୃଷ୍ଟିହୋଇଛି ତାକୁ ତୁମେ ଶାନ୍ତ କର । ମୋତେ ମନଭରି ହସିବାକୁ ଦିଅ ।

ଆଜିର ଏ ନିଷ୍ଠୁର ଅନ୍ଧକାରରେ ମୁଁ ତୁମର ଛବିକୁ ସ୍ପଷ୍ଟଭାବରେ ଦେଖି-ପାରୁଛି ରେଖା । ତୁମର ଶଙ୍ଖଶୁଭ୍ର ଦନ୍ତ, ସମୁଦ୍ରନୀଳ ଆଖି, ଚମ୍ପାବର୍ଣ୍ଣର ଚିବୁକ ଏବଂ ପଳାଶ ଫୁଲର ଅଧର ସବୁହିଁ ମୋ ଆଖିଆଗରେ ନାଚି ନାଚି ଯାଉଛି । ତୁମେ ଗୋଟିଏ ଦୂରଗତ ସ୍ୱାଧୀନ ପକ୍ଷୀପରି ଉଡ଼ିବୁଲୁଛ । ମୁଁ ଧରିବାକୁ ଚେଷ୍ଟା କଲେ ସୁଦ୍ଧା ଯେମିତି ପାରୁନ । ତୁମେ ଯେମିତି ପିଞ୍ଜରାବଦ୍ଧ ହେବାକୁ ଚାହୁଁନ, ତୁମେ ହୁଏତ ଶେଷରେ ଉଡ଼ିଯିବ ଆଉ କେଉଁ ଆଡ଼କୁ । ମୁଁ ସେଇମିତି ପଲକ ନ ପକାଇ ଚାହିଁଥିବି । ଆଖିରେ ମୋର ଭରିଆସୁଥିବ ବ୍ୟଥାତୁର ଲୁହ । ତୁମେ ଅନୁଭବ କରିପାରୁଛ ତ ରେଖା !

ରେଖା, ତୁମକୁ ମୋ'ରାଣ । ତୁମେ ମୋ ନିକଟକୁ ଥରକ ପାଇଁ ଫେରିଆସ । ଆଉ ମୋତେ କୁହନ । ହଁ—ହଁ ତୁମେ ଚାଲିଆସ । ତୁମେ ବର୍ତ୍ତମାନ ଯାହା କରୁଥାଅନା କାହିଁକି ସବୁକୁ ପଛରେ ପକାଇ ଚାଲିଆସ । ଏଁ—ତୁମେ ଆସିବନି ରେଖା—କିଛି କହୁନ ଯେ—ନା—ନା, ତୁମେ ଅତିଶୀଘ୍ର ଫେରିଆସ । ଇତି ।



# ମୃତ୍ୟୁ ଶିବିର

● ଶ୍ରୀ ଦୟାଲାଲ ଯୋଷୀ

ଫିଲଡେଲଫିଆ ସହର ଉପକଣ୍ଠରେ ବୁଲୁଁ ବୁଲୁଁ ଦେଖିଲି ଗୋଟିଏ ସାଇନବୋର୍ଡ ଲେଖା ଥିଲା—"Old Men's Cottage"। ଦେଖିବାପାଇଁ ଖୁବ ଇଚ୍ଛା ହେଲା। କାରଣ ଏସବୁ ବିଷୟରେ ଭାରତରେ ପାଶ୍ଚାତ୍ୟ ଫେରନ୍ତା ବନ୍ଧୁଙ୍କଠାରୁ ଅନେକ ପ୍ରଶଂସା ଶୁଣିଥିଲି।

ସନ୍ଧ୍ୟା ଆସନ୍ନ। ଲକ୍ଷହୀନ ଭାବରେ ବୁଲୁଥାଏ ଇତସ୍ତତଃ। ସେଇ ସାଇନ୍‌ବୋର୍ଡ ଆଡ଼େ ଦେଖିଲି ବାହାରୁ ଛୋଟ ଆକାର ଦିଶୁଥିଲେହେଁ ଭିତରକୁ ଦୃଷ୍ଟି ପକାଇଲେ ତାହା ଗୋଟିଏ ବିରାଟ ସ୍ଥାନ। ପାଖକୁଯାଇ ଜଣକୁ ପଚାରିଲି, "ଏ ଭିତରକୁ ଦେଖିବାକୁ ଚାହେଁ, କାହାର ଅନୁମତି ଲୋଡ଼ା?" ସେ ଭଦ୍ରଲୋକ ପ୍ରତି ପ୍ରଶ୍ନ କଲେ—କାହା ସାଙ୍ଗରେ ଦେଖା କରିବାକୁ ଚାହାଁନ୍ତି କି? ମୁଁ କହିଲି, "ସେମିତି କିଛି ନୁହେଁ ଯେ ଦେଖାଦେଖି କରି ଗୋଟାଏ ଧାରଣା ନେବାପାଇଁ ଇଚ୍ଛା।"

ସେ ଭଦ୍ରଲୋକ ମତେ ତାଙ୍କ ସଙ୍ଗରେ ନେଇଗଲେ ଗୋଟିଏ ଅଫିସକୁ। ସେଠାରେ ଜଣକୁ କହିଲେ, "ଏ ଭଦ୍ରଲୋକ ଆମ କଟେଜ୍ ଭିତର ଦେଖିବାକୁ ଚାହୁଁଛନ୍ତି। ଟିକିଏ ସୁବିଧା ଭାବରେ ଦେଖେଇ ଦିଅନ୍ତୁ।"

ଅଫିସରେ ବସିଥିବା ଭଦ୍ରଲୋକ ଜଣକ ପ୍ରୌଢ଼ କହିଲେ ଅଥୁତ ହେବନାହିଁ। ମତେ ଅତି ବିନମ୍ର ସହକାରେ ତାଙ୍କ ପାଖରେ ବସିବାପାଇଁ ଅନୁରୋଧ କଲେ। ତା'ପରେ ଗୋଟିଏ ଫର୍ମ ବାହାରକରି ମତେ ପଚାରିଲେ—

"ଆପଣ କେଉଁ ଦେଶରୁ ଆସିଛନ୍ତି?"

"ଭାରତ"।

"ଭାରତରେ ଆପଣଙ୍କ ଠିକଣା କଣ?"

"ସମ୍ବଲପୁର, ଓଡ଼ିଶା"।

"ଆମେରିକା ଆସିବା ଉଦ୍ଦେଶ୍ୟ?"

"ଦେଶ ଦେଖିବା ପାଇଁ।"

"ଆପଣ କୌଣସି ଜଣକ ସଙ୍ଗରେ ଦେଖା କରିବାକୁ ଚାହାଁନ୍ତି କି?"

"ନା, ଅବଶ୍ୟ ସେପରି କେହିନାହାନ୍ତି; ଯଦି କାହାସହିତ କଥାବାର୍ତ୍ତା ହେବାପାଇଁ ସୁବିଧା ସୁଯୋଗ ପାଏ ତା' ହେଲେ ବିଶେଷ ଖୁସି ହେବି ।"

ସେତିକ କାଗଜରେ ନୋଟକରି ନେଲାପରେ ସେ ତାଙ୍କ ସଙ୍ଗେ ମତେ ଭିତରକୁ ନେଇ ଚାଲିଲେ ।

ବିରାଟ ସୌଧମାଳା ଚାରିଆଡ଼େ । ମଝିରେ ସୁନ୍ଦର ଏକ ଉଦ୍ୟାନ । ଉଦ୍ୟାନର ଘାସରେ ଅନେକ ଗଡ଼ୁଛନ୍ତି ତ ଅନେକ ଏଲ୍‌ମୁନିୟମ ଚଉକିରେ ବସି ଘୁମାଉଛନ୍ତି । ସମସ୍ତଙ୍କ ବୟସ ପ୍ରାୟ ୭୦ ବର୍ଷ ଉପରେ ।

ପ୍ରଥମେ ଭଦ୍ରଲୋକ ଜଣକ ଚାରିଆଡ଼େ ଆଙ୍ଗୁଳି ନିର୍ଦ୍ଦେଶକରି ଦୂରରୁ ଦେଖେଇଦେଲେ । ଡାକ୍ତରଖାନା, ମେସ୍‌ଘର, ନର୍ସମାନଙ୍କର ଘର, ଡାକ୍ତର-ମାନଙ୍କର ବସା ଇତ୍ୟାଦି । ତା' ପରେ ମତେ ନେଇ ଚାଲିଲେ ଉଦ୍ୟାନର ମଧ୍ୟ-ଭାଗକୁ ।

ଉଦ୍ୟାନର ସରୁଆ ରାସ୍ତାରେ ଯାଉଁ ଯାଉଁ ଗୋଟିଏ ସ୍ଥାନରେ ହଠାତ୍ ଅଟକି ଡାକଲେ—"ଜନ୍—ଜନ୍" ।

ଗୋଟିଏ ଅଶୀତିପରବର୍ଷ ବୃଦ୍ଧ ମୁହଁଟା ଉଠେଇ ଆମ ଆଡ଼କୁ ପ୍ରଶ୍ନବାଚୀ ଆଖିରେ ଚାହିଁଲେ – ସତେ ଯେପରି ସେ ଢୁଲାଉଥିଲେ ।

ଜନ୍, ତୁମେପରା ଭାରତରେ ଅନେକଦିନ ଥିଲ । ଏହି ଭାରତୀୟ ବନ୍ଧୁ ଆମ କଟେଜ୍ ଦେଖିବାପାଇଁ ଓ ତମମାନଙ୍କ ସଙ୍ଗରେ କଥାଭାଷା ହେବାପାଇଁ ଚାହାନ୍ତି । କହୁ କହୁ ଆମେ ସେହି ବୃଦ୍ଧ ପାଖକୁ ଚାଲିଗଲୁ ।

ବୃଦ୍ଧ ଜଣକ ତାଙ୍କ ପାଖରେ ଥିବା ହାତବାଡ଼ି ଧରି ସହାସ୍ୟ ମୁଖରେ ଛିଡ଼ାହୋଇ ତାଙ୍କ ହାତକୁ ବଢ଼େଇ ଦେଲେ—"ଆପଣଙ୍କ ସାକ୍ଷାତରେ ମୁଁ ଅତ୍ୟନ୍ତ ଆନନ୍ଦିତ ।"

ମୁଁ ମଧ୍ୟ ମୋ ହାତ ତାଙ୍କ ହାତରେ ମିଳେଇ କହିଲି, "ମୁଁ ମଧ୍ୟ... ।

ତା'ପରେ ତାଙ୍କ ପାଖରେ ଖାଲିଥିବା ଆଉ ଗୋଟିଏ ଚଉକି ଆଡ଼େ ମତେ ଦେଖେଇ ବସିବାପାଇଁ କହିଲେ । ମୁଁ ବସିଲି । ମୋ ସଙ୍ଗରେ ଆସିଥିବା ଭଦ୍ରଲୋକ ଜଣକ ମୋଠାରୁ ଅନୁମତି ନେଇ ଫେରିଗଲେ ସ୍ୱ ସ୍ଥାନକୁ ।

ବୃଦ୍ଧଜଣକ ସତେ ଯେମିତି ମୋର ପରିଚିତ ଥିଭ ମତେହିଁ ଅପେକ୍ଷା କରି ବସିଥାନ୍ତି ।

କହିଲେ, "ମୁଁ ଭାରତରେ ୫୦ ବର୍ଷ କାଳ ମିସନ ହସ୍‌ପିଟାଲ୍‌ରେ କାମ କରିଛି । ସେ ଅତି ସୁନ୍ଦର ଦେଶ । ମତେ ଭାରତ ଘରଭଳି ଲାଗେ । ଲୋକଗୁଡ଼ାକ ଅତି ଭଦ୍ର ଓ ଅତିଥି ପରାୟଣ । ଆଚ୍ଛା ଆପଣ କେଉଁ ପ୍ରଦେଶରୁ ଆସିଛନ୍ତି ?

"ଓଡ଼ିଶାରୁ ।"

"କେଉଁ ଜିଲ୍ଲା ?"

"ସମ୍ବଲପୁର ।"

ବୃଦ୍ଧ ହଠାତ୍ ଉଠିପଡ଼ି ମତେ ସାନନ୍ଦରେ ଆଲିଙ୍ଗନ କରି କହିଲେ, "There you are ? There you are !"

ତା'ପରେ ସେ ମୋ' ସହିତ ଓଡ଼ିଆରେ କଥାବାର୍ତ୍ତା କରିବା ଆରମ୍ଭ କଲେ । ମୁଁ ଆଶ୍ଚର୍ଯ୍ୟ ହେଲି, ଅତି ସ୍ପଷ୍ଟ ଓଡ଼ିଆ କହୁଥାନ୍ତି ସତେ ଯେମିତି ଓଡ଼ିଶା ମାଟିରେ ତାଙ୍କର ଜନ୍ମ ।

ପୁଣି କହିଲେ—"ଷଜାଣପୁର ମିସନ୍ ହସପିଟାଲ୍ ବିଷୟରେ କିଛି ଜାଣନ୍ତି ?" ମୁଁ କହିଲି—"ନିଶ୍ଚୟ, ମୋ ସହରଠୁଁ ମାତ୍ର କୋଡ଼ିଏ ମାଇଲ ଦୂର । ଆଉ ଜାଣିବି ନାହିଁ ।"

"ସେଇଠି, ସେଇଠି । ପଚିଶ ବର୍ଷ କାଳ କଟେଇଛି ଟିକିଏ ବିଷାଦରେ ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ି କହିଲେ, "ଆଃ ପନ୍ଦର ବର୍ଷହେଲା ଆଉ ଯଦୁ ମଧୁ ମାଳତୀ ରେବତୀଙ୍କୁ ଦେଖିନାହିଁ । ମଝିରେ ମଝିରେ ପତ୍ର ଆସେ, କିନ୍ତୁ ଆଉ ସେମାନଙ୍କୁ ଦେଖିପାରିବି କି ?"

"ମାଳତୀକୁ ତା' ମା ପ୍ରସବ ପରେ ପରେ ଛାଡ଼ି ଚାଲିଯାଇଥିଲା । ତାକୁ ମୋ ହାତରେ କ୍ଷୀର ଖୁଆଇ ବଢ଼େଇ ବଡ଼ କରିଥିଲି । ଯଦୁ ମଧୁଙ୍କୁ ପୁଅପରି ରଖି ପାଠ ପଢ଼େଇଥିଲି । ରେବତୀ ପିଲାଦିନୁ ବିଧବା ହୋଇ ମୋରି ପାଖରେ ଝିଅଭଳି ରହିଥିଲା । ତାର ପୁଣି ପୁନର୍ବିବାହ କରିଥିଲି । ଆପଣ ଜାଣନ୍ତି ସେମାନେ ମତେ ବାପା ବୋଲି ଡାକନ୍ତି । ଆଃ, କି ସ୍ନେହ ।"

ତାଙ୍କୁ ଛାଡ଼ି ଆସିବାର ମୁହୂର୍ତ୍ତ ମନେପଡ଼ିଲେ ମୋ ଛାତିରେ କିଏ ଶେଳ ଟାଏ ହୋଇଯାଉଛି । ଏଟା ମତେ କାହିଁକି ବିଦେଶଭଳି ଲାଗୁଛି । ସତେ ଯେପରି ମୋର ଆଉ ଏ ସଂସାରରେ କେହିନାହାନ୍ତି ।

ବୃଦ୍ଧ ବିହ୍ୱଳ ହୋଇ ପଡ଼ୁଥିଲେ । ତାଙ୍କ ଅବସ୍ଥା ଦେଖି ମୁଁ ବିଶେଷ କିଛି କହିପାରିଲି ନାହିଁ । ତଥାପି ସାହାସ ବାନ୍ଧି ପଚାରିଲି—"ଏତେ ସ୍ନେହ ଏତେ ମାୟା ମମତା ଛାଡ଼ି ତା'ହେଲେ ଏଠାକୁ ଆସିଲେ କାହିଁକି ?"

"ହଁ, ପ୍ରକୃତରେ ଆସୁ ନ ଥିଲି, କିନ୍ତୁ ଏକେତ ମିଶନର ଚୁକ୍ତିକାଳ ସମସ୍ତ ଶେଷ ହୋଇଯାଇଥାଏ, ତାପରେ ମୋର ପୁଅ, ବୋହୂ, ଝିଅ, ଜ୍ୱାଇଁ ଓ ନାତି ନାତୁଣୀ ସମସ୍ତେ ଏଇଠି । ସମସ୍ତେ ଜୋର ଦେଲେ ଆମେରିକାକୁ ଫେରିଆସିବାକୁ । ତାଙ୍କ ଆଗ୍ରହ ଏଡ଼େଇପାରିଲି ନାହିଁ ।"

"କ୍ଷମା କରିବେ, ଆପଣଙ୍କ ସ୍ତ୍ରୀ କେଉଁଠି ?"

"ତାକୁ ଚରିଦିନ ପାଇଁ ଭାରତରେ ଛାଡ଼ିଆସିଛି । ଦଶବର୍ଷକାଳ ତା' କବରରେ ପ୍ରତ୍ୟେହ ଫୁଲ ଦେଇଛି । ଅବଶ୍ୟ ଆଜି ମଧ୍ୟ ଯଦୁ, ମଧୁ, ମାଳତୀ, ରେବତୀ ଫୁଲ ଦେଉଥିବେ—ହଁ, ନିଶ୍ଚୟ ଦେଉଥିବେ । ସେ ତାଙ୍କର ଥିଲା ମା ।"

"ମୁଁ କିନ୍ତୁ ଆଉ ଦେଇପାରୁ ନାହିଁ । ଗଲ ମାସରେ ମାଳତୀ ପତ୍ର ଦେଇଥିଲା । ଲେଖିଛି—ସେ ବରାବର ଫୁଲତୋଡ଼ା ତା ମା କବରରେ ଦେଉଛି । ଆଉ ଅନ୍ୟମାନେ ମଧ୍ୟ ।"

ବାସ୍ତବିକ ପ୍ରେମହିଁ ମତେ ଏଠିକି ଟାଣିଆଣିଲା ; ନ ହେଲେ ମୁଁ କେବେ ଏଠିକି ଆସିନଥାନ୍ତି ।

"ଆପଣଙ୍କ ପରିବାର କୁଟୁମ୍ବର ଲୋକେ କେଉଁଠି ? ଆପଣଙ୍କ ଏଇଠି ସମସ୍ତ ସୁବିଧା ହୋଇ ପାରୁଛି ?"

"ହଁ ଅସୁବିଧା କିଛି ନାହିଁ । ବରଂ ସୁବିଧା ଅନେକ । ପ୍ରତ୍ୟହ ଡାକ୍ତରମାନେ ଆସି ସ୍ୱାସ୍ଥ୍ୟ ପରୀକ୍ଷା କରିଥାଆନ୍ତି । ନର୍ସମାନେ ସମସ୍ତ ଯତ୍ନ ନେଇ-ଥାଆନ୍ତି । ଖାଇବା ପିଇବାରେ ମଧ୍ୟ କୌଣସି ଅସୁବିଧା ନାହିଁ । ସମୟ ସମୟରେ ପଢ଼ାପଢ଼ି କରେ, ନହେଲେ ଆସି ଏଇଠି ବସି ଆରାମ କରେ । କୌଣସି ବାଧା ବିଘ୍ନ ନାହିଁ କିନ୍ତୁ..." କହି ଚୁପ୍ ରହିଗଲେ । ଆଖି ଛଳଛଳ ହେଲା, ରୁମାଲ ବାହାର କରି ଆଖି ପୋଛିବା ଆରମ୍ଭ କଲେ ।

ତାଙ୍କ ଅବସ୍ଥାକୁ ଦେଖି ମୁଁ ନୀରବରେ ବସି ରହିଲି । କିଛିକ୍ଷଣ ଗଲାପରେ ପୁଣି କହିଲେ—"କଥା କ'ଣ କି ଏଇଠି ସମସ୍ତ ସେବା ଶୁଶ୍ରୂଷା ସତ୍ତ୍ୱେ, ଏତେ ଲୋକଙ୍କ ସମାଗମ ସତ୍ତ୍ୱେ ମତେ ନିସ୍ତବ୍ଧିଆ ଲାଗୁଛି; ସବୁ ଶୂନ୍‌ଶାନ୍ ପରି ଲାଗୁଛି, ଭଲ ଲାଗୁନାହିଁ ।"

ପୁଣି କିଛିକ୍ଷଣ ଚୁପ୍ ରହି କହିଲେ—"ହଁ, ଏଇଟା ତ ଆଉ ଭାରତ ନୁହେଁ ଯେ ମୁଁ କୁଟୁମ୍ବ ପରିବାରରେ ରହି ନାତି ନାତୁଣୀ ସଙ୍ଗେ ଖେଳି, ଖେଳାଇ ଦିନ କାଟିଦିବି, ଏଇଟା ପରା ଆମେରିକା । ଏଇଠି ମୋପରି ଅଥର୍ବ ସ୍ଥାଣୁ ବୃଦ୍ଧପାଇଁ ସମୟ ନଷ୍ଟ କରିବାକୁ କାହାର ଧୈର୍ଯ୍ୟ ଅଛି ?"

ମୁଁ କେବଳ ଜଳକାପରି ବୃଦ୍ଧଙ୍କର ମୁଖଭଙ୍ଗୀ ଦେଖୁଥାଏ ଓ ହୃଦୟର ବେଦନାକୁ ଶୁଣୁଥାଏ । ମନରେ କୋହ ଉଠୁଥାଏ କିନ୍ତୁ ଚାପି ରଖୁଥାଏ ।

ଅନେକ ସମୟ ଗଡ଼ି ଯାଇଥାଏ । ଚାରିଆଡ଼େ ନିଅନ୍ ଲାଇଟ ଜଳି ଚତୁର୍ଦ୍ଦିଗ ଉଜ୍ଜ୍ୱଳ ଆଲୋକରେ ଉଦ୍ଭାସିତ କରିଥାଏ; କିନ୍ତୁ ମୋ ମନ ଓ ହୃଦୟ...?

ହାତଯୋଡ଼ି ତାଙ୍କଠୁ ବିଦାୟ ନେଇ ଯିବାପାଇଁ ବାହାରିଲି ।

ମତେ ବୃଦ୍ଧ କହିଲେ—"ଆପଣ ଏଇଠି ଯେତେଦିନ ରହିଛନ୍ତି ଏଠାକୁ ନିଶ୍ଚୟ ଆସିବେ ।"

କିଛି କହି ପାରିଲି ନାହିଁ । ମୁଣ୍ଡ ଟେକାଇ ବାହାରି ଆସିଲି ।



# ଘଡ଼ି ଚରଳବା କାହାଣୀ

● ଶ୍ରୀ ଅଶୋକ କୁମାର ଚନ୍ଦନ

ବୋର୍ଡ଼ ହସିଲା ପୂଅକୁ ଦେଖିବା ପରେ ସୁଶାନ୍ତ ତା' ଦୋକାନକୁ ଗ୍ରହିଁଲା । ନେମ୍‌ପ୍ଲେଟକୁ ବାରମ୍ବାର ପଢ଼ିଲା । 'ଏଠାରେ ଘଡ଼ି ବକ୍ରୀ ଓ ମରାମତି ହୁଏ' । ଏ ଅଞ୍ଚଳରେ ଆଦୌ ଘଡ଼ି ଦୋକାନ ନାହିଁ । ପାଖରେ ସଂପୂର୍ଣ୍ଣ ଗୋଟିଏ ସାହି ଲମ୍ବି ଯାଇଛି । ଠିକ ସାମ୍ନାକୁ କୌଣସି ରାୟବାହାଦୂରଙ୍କ ଦ'ତାଲା ଫ୍ଲାଟଟିଏ । ଭଦ୍ରବ୍ୟକ୍ତିଙ୍କ ଦୃଷ୍ଟିଭଙ୍ଗୀ ମାର୍ଜିତ । ବରାଟ ଉଦ୍ୟାନ । ପ୍ରଥମଥର ଦୋକାନ ଖୋଲିବା ବେଳରୁ ସେ କୋଠାଟି ସୁଶାନ୍ତର ଦୃଷ୍ଟି ଆକର୍ଷଣ କରିଥିଲା । ସମଗ୍ର ସ୍ଥାନଟି ଅପେକ୍ଷାକୃତ ନିର୍ଜନ । ନିର୍ଜନତାକୁ ସେ ଭଲପାଏ ।

ସୁଶାନ୍ତ ବକ୍ରୀପାଇଁ ଉଦ୍ଦିଷ୍ଟ ଘଣ୍ଟାମାନଙ୍କୁ ଗ୍ରହିଁଲା । ସେଗୁଡ଼ିକ ମୋ'ପାଇଁ । ଅତଏବ ନିଶ୍ଚଳ । କଣ୍ଟାମାନେ ସ୍ଥିର । ପ୍ରତିଫଳିତ ଯେପରି ସୁଶାନ୍ତର ଗୋଟିଏ ଗୋଟିଏ ମୁହଁ । ସାମାନ୍ୟ ଲମ୍ବା ଈଷତ୍ ହସ । ଉଜ୍ଜ୍ୱଳ ଆଖି । ବସ୍ତୀର୍ଣ୍ଣ କପାଳ । ସେ ଗୋଟିଏ ପ୍ରଚଣ୍ଡ ବ୍ୟକ୍ତିତ୍ୱକୁ ଦେଖୁଥିଲା ।

ସୁଶାନ୍ତ ସାମାନ୍ୟ ହସିଲା ।

ବାହାରେ ଭିକାରୀଟିଏ ଗୀତ ବୋଲୁଛି ।

ସମସ୍ତର ଚକର ? ଗାୟକ ସହିତ ଓ୍ୱାଚ୍ ମେକର ସୁଶାନ୍ତ ଆଦୌ ଏକମତ ହୋଇ ପାରୁ ନ ଥିଲା । ସେ ପଇସାଟିଏ ମାଗୁଥିଲା । ସୁଶାନ୍ତର ଇଚ୍ଛା ହେଲା ଲୋକଟାକୁ ଦୟାକରିବାକୁ । ସମସ୍ତ ସହିତ ତା'ର କାରବାର । ଭିକାରୀ ଅନେକାଂଶରେ ସମୟକୁ ତୋଷାମୋଦ କରୁଥିଲା । ସେ ପକେଟ ଦଉଣ୍ଡିଲା, ଲୋକଟା ସମୟଠାରେ ସାଂଘାତିକ ଭାବେ ପରାଜିତ । ଅସମ୍ଭବ ନୁହେଁ । ତା'ର ବର୍ଦ୍ଧିତ ଶ୍ମଶ୍ରୁ ଓ ରୁକ୍ଷ ଦେହରେ ସମୟର ଅତ୍ୟାଚାର ସ୍ପଷ୍ଟ । ଓ୍ୱାଚମେକର ସୁଶାନ୍ତର ସେ ସମ୍ଭାବନା ନାହିଁ । ସୋ' କେସର ଘଡ଼ିମାନଙ୍କର ହସ୍ତପଦ ଅଚଳ । ସେମାନେ ସୁଶାନ୍ତର ଦୟାର ପାତ୍ର । ଗ୍ରାହକମାନଙ୍କ ପାଇଁ ଦର୍ପଣଟିଏ ଟଙ୍ଗା ହୋଇଛି । ନୂଆଘଡ଼ି ପିନ୍ଧିବା ପରେ ସେମାନଙ୍କ ମୁହଁରେ ଆନନ୍ଦର ମାନଦଣ୍ଡ । ଆପାତତଃ ଦର୍ପଣର କର୍ତ୍ତବ୍ୟ ଏତିକ । ସୁଶାନ୍ତ ଦର୍ପଣରେ ମୁହଁ ଦେଖିଲା । କିଛି ଦାନ କରିବା ପାଇଁ ଆଖିମାନେ ପ୍ରସ୍ତୁତ ଥିଲେ ।

ସୁଶାନ୍ତ ବାହାରକୁ ଆସିଲା । ଭିକାରୀ ହାତକୁ ଦଶପଇସିଟିଏ ବଢ଼ାଇ ଦେଲା । ସେ ହଠାତ୍ ଗୀତ ବନ୍ଦକରି ଭଦ୍ରଲୋକଙ୍କୁ ଚାହିଁଲା । ଅନାକାଂକ୍ଷିତ ଅନୁକମ୍ପା । ବନ୍ଧ୍ୟାଘାତରେ ଅବଶ ରାଜା ରାମଚନ୍ଦ୍ର, ମିଥିଳା ରାଜକୁମାରୀ, ଅଯୋଗ୍ୟ ନନ୍ଦ ଜଣଭରେ ଅଟକି ଗଲେ । ଭିକାରୀର ଆଖି ଦୁଇଟା ଦ' ଖଣ୍ଡ ରୁଟୀ ପାଇଥିବା ଷ୍ଟେଶନ ଶିଶୁ ପରି ଦିଶୁଥିଲେ । ଭିକାରୀଟି ପୁଣି ହାଲୁକା କଣ୍ଠରେ ତା'ର ପରାଜୟ ଘୋଷଣା କଲା । ଏଥର କିନ୍ତୁ ସୁଶାନ୍ତ ରାଗି ଯାଇଥିଲା ।

—କବେ ଗୋଟିଏ ପଡ଼ୁ ଦୋକାନ କରୁନୁ ?

—ବାବୁ ଅଛା କରୁଛ !

ସୁଶାନ୍ତ ଆଖି ଉଠାଇ ଚାହିଁଲା । ସେତେବେଳକୁ ଭିକାରୀ ରାସ୍ତାର ମେଳା ପାଟିରେ ଅନ୍ତର୍ଦ୍ଧାନ ହୋଇ ସାରିଥିଲା ।

ସୁଶାନ୍ତ ଯେପରି କ୍ଲାନ୍ତ ହୋଇ ପଡ଼ୁଥିଲା । ସେ ଶୂନ୍ୟ ଦୃଷ୍ଟିରେ ସାମ୍ନା କୋଠାକୁ ଚାହିଁଲା । ଦିନରେ ମଧ୍ୟ ସମସ୍ତ ଦର୍ଜା ଓ ଝର୍କା ବନ୍ଦ । ରାୟବାହାଦୂରଙ୍କ ଖେୟାଳୀ ମନୋଭାବ । ରକ୍ଷଣଶୀଳତାର ମୂର୍ତ୍ତିମନ୍ତ ପ୍ରତୀକ କୋଠାର ମଡ଼େଲ । ପୁରୁଣା ଇଣ୍ଡୋ-ସ୍ୱିସ ଘଣ୍ଟାଟି ରାୟବାହାଦୂରଙ୍କ ମୁହଁପରି ଦିଶୁଥିଲା । ସୁଶାନ୍ତ ଜାଣେନା ରାୟବାହାଦୂର ମୃତ ନା ଜୀବିତ । ସେ ତାଙ୍କର କଳ୍ପିତ ପ୍ରତିମୂର୍ତ୍ତିଟିଏ ଗଠନ କରୁଥିଲା । ତା' ଆଗରେ ଯେପରି ସେ ଜଣେ ଠିଆ ହୋଇଥିଲେ । ପାଟିଏ ଜହରୀ ଜଣ । କୁଞ୍ଚିକରି ଧୋତି । ଓ୍ୱାକିଂ ଷ୍ଟିକ୍ । ଜ୍ଞାନ ଓ ରକ୍ଷଣଶୀଳତାର ସମାହାର ସେ ଭଦ୍ରଲୋକ । ତାଙ୍କ ପଛରେ ଥିଲା ଏକ ଇତିହାସ । ତାହା ରା-ୟ-ବା-ହା-ଦୂ-ର -ଛଅଟି ଅକ୍ଷରରେ ପ୍ରକାଶିତ ହେଉଥିଲା ।

କଳ୍ପିତ ରାୟବାହାଦୂର ସୁଶାନ୍ତକୁ ସମୟ ପଚାରିଲେ ।

—ବାରଟା ।

—ସନ୍ଧ୍ୟା କେତେ ଡେରି ?

—ଛ' ଘଣ୍ଟା ।

ତା'ପରେ ଗୋଟିଏ ଦୀର୍ଘଶ୍ୱାସ । ବୃଦ୍ଧ (ଯେପରି କି ରାୟବାହାଦୂର ସାହେବ) ମାନଙ୍କର ସନ୍ଧ୍ୟାପ୍ରତି କିପରି ଏକ ଦୁର୍ବଳତା ଥାଏ, ସୁଶାନ୍ତ ଶୁଣିଛି । ସେମାନେ ଅତୀତ ଇତିହାସର କରିପଦ ଅଧ୍ୟୟନ କରନ୍ତି । ଏଇସ୍ୱାତ ପ୍ରଶସ୍ତ ମୁହୂର୍ତ୍ତ । ନଅନ୍ ବତୀଜଳା କୋଠରୀ ଭିତରୁ ପାଦ କାଢ଼ିବା ପାଇଁ ସେମାନେ ଉପଯୁକ୍ତ । ଅନ୍ଧାର ହିଁ ଅନସ୍ତିତ ଆସନ୍ନାକାଳ । ଏକାଥରକେ ଏକାଧିକ ଘଣ୍ଟାର ଯାନ୍ତ୍ରିକ ଚକ୍ରାର ନିସ୍ତରଙ୍ଗ ବାୟୁମଣ୍ଡଳରେ ମିଳାଇଗଲା । ରାୟବାହାଦୂର ଅନ୍ତର୍ଦ୍ଧାନ ହେଲେ ପୁରୁଣା ଇତିହାସ ବହିର ମଲାଟ ପରି ଦିଶୁଥିବା ଲୁହା ଗେଟ୍ ପାଖରେ । କୌଣସି ଜଣେ ତରୁଣ ନୂଆ ମଡ଼େଲର ଶସ୍ତା ଓ୍ୱାଚଟିଏ ଚାହୁଁଥିଲେ ।

— ଟିକେଟ ଅଛି ?

—ଆପଣଙ୍କ ପାଖରେ ପୁରୁଣା ଓ୍ୱାର୍ ନାହିଁ ?

—ମୁଁ ନୂଆ ଗ୍ରହେଁ ।

—ପୁରୁଣା ଓ୍ୱାର୍ ତ' ମରାମତି କରାଇ ନେଇ ପାରନ୍ତେ !

—ଆବଶ୍ୟକ ନାହିଁ । ଆମେ ନୂଆ ଗ୍ରହୁଁ ; ମରାମତି ନୁହେଁ —

—ଆପଣ କିନ୍ତୁ ପୁରାତନ ପ୍ରତି ଅବମାନନା କରୁଛନ୍ତି ।

—ମାର୍କସ କହନ୍ତି...

—ଗ୍ଲୁଡ଼ନ୍ତୁ ।

ସେ ନୂଆଘଣ୍ଟା ପିନ୍ଧି ଗ୍ଲଲିଗଲେ । ସୁଶାନ୍ତ ବସ୍ତୁତଃ ତାଙ୍କୁ କ୍ଷମାକରି ପାରୁ ନ ଥିଲା । କିନ୍ତୁ କାହିଁକି ?

କୋଠାଟି ମନ୍ଦିରଟିଏ ପରି ଦିଶୁଥିଲା । ତାହା ତା' ପ୍ରଶ୍ନର ନୀରବ ଉତ୍ତର । ମନ୍ଦିର ନନେଇ ତ ସବୁ ପ୍ରଶ୍ନର ଉତ୍ତର । କୋଠା ମନ୍ଦିର ସଂଲଗ୍ନ ଉଦ୍ୟାନ । ସେଠାରେ ଅନେକ ଡେଙ୍ଗା ନାଶକେଲ ଗଛଥିଲା । ସେଗୁଡ଼ା ମିଛ ଗାମ୍ଭୀର୍ଯ୍ୟର ଅବତାରଣା । ଆଉଥିଲା ଗୋଟିଏ ଆତଗଛ । ବୁଏତ ଏ ଗଛକୁ ସେମାନେ ଭୟ କରୁଥିଲେ । ତା' ସ୍ଥିର ପାଖେ ଅଯତ୍ନ ବର୍ଦ୍ଧିତ ଫୁଲ । ଆରଣ୍ୟକ ଔଦ୍ଧତ୍ୟରେ ବଢ଼ିଥିଲା ଆତଗଛଟି । ଏମିତି ଗଛର ଫଳ ଖାଇବାକୁ ସୁଶାନ୍ତ ଭୟ କରେ । କାହିଁକି ? ସୁଶାନ୍ତର ଆଖି ଦୁଇଟା ଭୟରେ ବୁଜି ହେଉଥିଲା । ଆତଗଛଟି ତା' ଆଗରେ ଛିଡ଼ା ହୋଇଥିଲା । ରୂପକଥାର ଦାନବପରି ଅଟ୍ଟହାସ କରୁଥିଲା । ଘଣ୍ଟା-ଗୁଡ଼ାକର ମୁହଁ ଶେତା ଦିଶୁଥିଲା । ଯାହି ଯାହି ଚିତ୍କାର ।

—ସେଭେଣ୍ଟି ମଡ଼େଲ୍ ଲେଡ଼ି ରିଷ୍ଟଓ୍ୱାଚ ଅଛି ?

— ଆ — ତ — ଗ — ଛି—

—ସେଭେଣ୍ଟି ମଡ଼େଲ୍ ଲେଡ଼ି ରିଷ୍ଟଓ୍ୱାଚ୍ ଅଛି ?

— ଫର ବିଡ଼ନ୍ ଫ୍ରୁଟ୍—ନିଷିଦ୍ଧ ଫ···ଳ···

ସୁଶାନ୍ତ ଆତ ଗଛକୁ ହାତଦେଖାଇଲା । ନିଷିଦ୍ଧ ବୃକ୍ଷ ।

—ଓଃ···ଆପଣ ଆମ ବଗିଚ୍ଚ କଥା କହୁଛନ୍ତି !

—ହିଁ ?

—ସେ ଗଛ ପାଖକୁ କେହି ଯାଆନ୍ତି ନାହିଁ ।

—କାହିଁକି ?

—ସେଠି ସାପ ଅଛି ।

—ମୁଁ ଯିବି ।

— ଅସମ୍ଭବ ।

—ମୁଁ ଯି…ବ…

ସେ ତରୁଣୀ ଓ୍ୱାଚ୍ ନ ନେଇ ଚାଲିଗଲା । ସୁନେଲିସ୍ଫ୍ରୀବା । ବ୍ୟସ୍ତ ଜଡମ୍ବା ଶାଗୁଆ ଶାଢ଼ୀ । କଲଙ୍କି ଲଗା ଘଣ୍ଟାର ଡାଏଲ୍ ପରି ଦିଶୁଥିବା ଗେଟ ପାଖରେ ସେଗୁଡ଼ିକ ଅଦୃଶ୍ୟ ହେଲେ । ସୁଶାନ୍ତ ସଂପୂର୍ଣ୍ଣ ଲୁଚିଯିବା ପର୍ଯ୍ୟନ୍ତ ତାଙ୍କୁ ଚାହିଁଥିଲା । ମୃତ ବାଦୁଡ଼ି ଭଳି ତା’ ଆଖିମାନେ ସ୍ଥିର ଥିଲେ । ସୂର୍ଯ୍ୟର ଅବଶିଷ୍ଟ ରଶ୍ମି ଆତଗଛ ଉପଦ୍ରୁତ ଇଲାକାରେ ଆତ୍ମ ଗୋପନର ପ୍ରୟାସ କରୁଥିଲା ।

ତା’ ପରଦିନ…

ସେ ତରୁଣୀ ଓ୍ୱାଲ୍ କ୍ଲକ୍‌ର ବ୍ୟସ୍ତ ପେଣ୍ଡୁଲମ ପରି କୋଠାଘରରେ ପଦ ଚାରଣ କରୁଥିଲା । ଗତକାଲି ପିନ୍ଧିଥିବା ଶାଢ଼ୀ ଆତଗଛ ଶାଖାରେ ଶୁଖୁଥିଲା ଏବଂ ତା’ର ସାୟା । ବ୍ଲାଉଜ୍ । ବ୍ରେସିଆର୍ ।

ସେ କାଲି କହୁଥିଲା ସେଠି ସାପଥିବା କଥା ।

ଆଜି ତା’ର ସାହସିକତା ସୁଶାନ୍ତକୁ ଚକିତ କରୁଥିଲା । ସେ ସେଠାକୁ କମିତ ଗଲା । ରାସ୍ତବାହାଦୂରଙ୍କ ଏକମାତ୍ର ଝିଅ । ସେଠାରେ ଅନେକ ସାପ । ଅନେକ ଗୁଳ୍ମ । ନଷିଦ୍ଧ ଇଲାକା । ନଷିଦ୍ଧ ବୃକ୍ଷ । ନଷିଦ୍ଧ ଫଳ ।

—ସେଠି ସାପ ଅଛୁ ।

—ମୁଁ ଯିବ ।

—ସେଠି ସାପ ଅଛୁ ।

—ମୁଁ ଯିବ ।

—ସା…ପ…

—ଯି…ବ…

ସୁଶାନ୍ତ ସେ କୋଠାକୁ ଦୌଡ଼ିଲା । ବହୁଳ ବ୍ୟବହୃତ ରହସ୍ୟ ଉପନ୍ୟାସର ମଳିନ ଚେହେରା ପରି ଗେଟ୍ ଖୋଲି ଦ୍ରୁତପଦରେ ଆଗେଇଲା । ପ୍ରଥମ ଦର୍ଜାର ପରଦା ଆରପଟେ ଗୋଟିଏ ଭ୍ରମମାନ ଚେହେରା । ପାଟିଏ କହରା ଜଣ । ଧଳା ପଞ୍ଜାବୀ । କୁଞ୍ଚକରା ଧୋତି । ଓ୍ୱାକିଂ ଷ୍ଟିକ୍ ।

—ଏ ଅସମୟରେ କିଏ ?

—ମୁଁ ଓ୍ୱାଚ୍‌ମେକର୍ ସୁଶାନ୍ତ ଦାସ ।

—ଫୁଲିସ୍ ୟଙ୍ଗ ମେନ୍ ।

—ମୁଁ ସମୟକୁ ଖାତିର କରେନା । ମୁଁ ଯିବ ।

—ତାହା ନଷିଦ୍ଧ ଇଲାକା ।

—ସେଠି ଆତଗଛ । ଶାଢ଼ୀ ।

—ତୁମେ ଉଦଭ୍ରାନ୍ତ ।

—କିନ୍ତୁ ‘ଗଡ’ ଅଛୁ ।

—ହଇମ ।

—ଧନ୍ୟବାଦ ।

ତରୁଣୀ ଆତଗନ୍ତୁଠାରୁ ନଅପଦ ଦୂରତ୍ୱରେ ଛିଡ଼ା ହୋଇଥିଲା । ସୁଶାନ୍ତ ତା'ର କଟୀ ବେଷ୍ଟନ କଲା । ସେମାନେ ଆଗେଇଲେ । ନଷିଦ୍ଧ ଇଲକା । ସେମାନେ ନଗ୍ନ । ପ୍ରଜ୍ଞା—ପାରମିତା ।

ପକ୍ଷାଘାତଗ୍ରସ୍ତ ଗ୍ୱସ୍ଥବାହାଦୂର (ଗ୍ୱ-ସ୍ଥ-ବା-ହା-ଦୂ-ର) ଯନ୍ତ୍ରଣାରେ ଚିତ୍କାର କରୁଥିଲେ । ଅରମା ଘାସବଣରେ ନିଆଁ ଲାଗିଥିଲା । ସୁଶାନ୍ତ ଓ ତରୁଣୀ ନିଷିଦ୍ଧ ଫଳ ପାଇଁ ହାତ ବଢ଼ାଇଲେ ।

ଏବଂ ଘଡ଼ିମାନେ ତରଳି ଯାଉଥିଲେ···

[ ସରରିଆଲିଷ୍ଟ ପେଣ୍ଟର ଡାଲୀଙ୍କ ଋଣ ସ୍ୱୀକାର୍ଯ୍ୟ ]



## * ନେପଥ୍ୟ ନାୟକ

● ଶ୍ରୀ ଭାନୁପ୍ରକାଶ ଯୋଷୀ

(ଏକ)

ଚିରା ଗାମୁଛାରେ ଝାଳ ମଚମଚ କଙ୍କାଳସାର ଦେହଟାକୁ ପୋଛୁ ପୋଛୁ ପାଖ ପଳାଶ ଗଛ ଛାଇ ତଳେ ଟିକିଏ ଦମ ନେବାକୁ ଚାଲି ଆସିଲା ଚଇତୁ । ବସି ପଡ଼ିଲା । ଚିରା ଗାମୁଛାରେ ବିଞ୍ଚି ହେଲା । ଝାଳ ଶୁଖିଲା ନି । ପାଟି ସେମିତି ଅଠାଳିଆ ଲାଗୁଛି ତାକୁ । ଭଙ୍ଗା ସିଲଭର ଡେକ୍‌ଚିରେ ଥିବା ଗୋଳିଆ ପାଣି ମୁନ୍ଦାଏ ଢକ୍‌ ଢକ୍‌ ପିଇ ଡେକ୍‌ଚିଟିକୁ ତଳେ ଥୋଇ ଦେଲା । କ୍ଷଣିକ ପାଇଁ ମେଣ୍ଟିଲା ତାର ତୃଷ୍ଣା ।

ମୁହଁ ଫେରାଇଲା ଟିକିଏ ପରେ କାମ କରୁଥିବା ତା ସ୍ଥାନକୁ । ତାର ଆଖ-ପାଖରେ ଆହୁରି ଅନେକେ ମାଟି ଖୋଳୁଛନ୍ତି । ସକାଳୁ ସଞ୍ଜ ଖଟି ଖଟି ସେମାନେ ପାଇବେ ମୋଟେ ଦଶ କି ବାର ଅଣା । ଅନ୍ୟ ବର୍ଷ ହୋଇଥିଲେ ସେତିକି ପରିଶ୍ରମରେ ପାଇଥାନ୍ତେ ଦେଢ଼ ଟଙ୍କା ଉପରେ, କିନ୍ତୁ ଭାଗ୍ୟ ବାମ ହେଲା । ବର୍ଷା ହେଲା ନି । ମରୁଡ଼ି ପଡ଼ିଲା । ଲୋକେ ହାହାକାର କଲେ, ଆହାର ଯୋଗାଡ଼ ପାଇଁ ଭିଟାମାଟି ଛାଡ଼ିଲେ । ଯିଏ ଯେତେ ରହି ଯାଇଥିଲେ ଅଖାଦ୍ୟ ଖାଇ ବଞ୍ଚି ରହିଲେ । ସେମାନଙ୍କ ଅବସ୍ଥା ଛ'କଡ଼ା ନ'ଗଣ୍ଡା ହେଲା ବେଳକୁ ସରକାରଙ୍କ ଆଖି ଫିଟିଲା । ଲୋକଙ୍କୁ କାମ ଯୋଗାଇବା ପାଇଁ ରାସ୍ତାଘାଟ, କୂଅ-ପୋଖରୀ ଖୋଳା କାମ ଆରମ୍ଭ ହେଲା । ଟିକିଏ ବଳ ଶକତ ଥିବା ଲୋକେ ଠିକାଦାରଠୁଁ ଧାର କରି ଗଇନ୍ତି, ରମ୍ଫା, ଝୁଆଁ ଆଣି ମାଟି ତାଡ଼ିଲେ । ସେ ବି ଆଣିଲା । ସ୍ୱାମୀ-ସ୍ତ୍ରୀ ମାଟି ଖୋଳିଲେ ; ହେଲେ ଉଚିତ ପାଉଣା ମିଳୁ ନାହିଁ । ହାତେ ଗଭୀର ସ୍ଥାନରେ ନ' ହାତ ମାଟି ଖୋଳି ମଧ୍ୟ ଠିକାଦାର ଦେଉଛି ଅତି କମ୍ ପାଉଣା । ପ୍ରତିବାଦ କରିବ କିଏ ? ପାଟି ଫିଟେଇଲେ ତଡ଼ା ଖାଇବେ ! ଅନ୍ୟ ଠିକାଦାର ପାଖକୁ ଯିବାକୁ ପଡ଼ିବ ମଜୁରି ପାଇଁ । ସେ ବି ସେପରି ଖଟେଇ ନିଜ ପକେଟ ଗରମ କରିବେ । କିଛି ନ ମିଳିବା ଅପେକ୍ଷା, ଯେତିକି ମିଳୁଛି ସେତିକି ହିଁ ଯଥେଷ୍ଟ । ଅଧାରୁ କମ ପାଉଣା ହେଉ ପଛକେ ପେଟରେ ପେଜ ମୁନ୍ଦାଏ ତ ପଡ଼ୁଛି ! 'ପଡ଼ି'

---

* ୧୯୬୫ରେ କଳାହାଣ୍ଡିରେ ପଡ଼ିଥିବା ମରୁଡ଼ି ଉପରେ ଲିଖିତ କାଳ୍ପନିକ ଏକ ଗଳ୍ପ ।

ରୂପେ ପାଉଥିବା ଗୋଣ୍ଡ଼ ମିଶା ଗୁହାଳ ବା ବାଡଗା ଉପରେ ନିର୍ଭର ତ କରି ହେବନି । କାମ କରି ଆଣ୍ଟୁରି ମୁଠାଏ ଯୋଗାଡ଼ କରିବାକୁ ହି ହେବ ! ନ କଲେ ନ ଚଳେ ।

ଏମିତି ନିଜ ଦୁରବସ୍ଥା ଭାବୁ ଭାବୁ ଉତ୍ତେଜିତ ହୋଇଉଠିଲା ଚଇତୁ । ମନ ତାର କଲା ବିଦ୍ରୋହ ; ଏଥର ପାତି ଫିଙ୍ଗେଇବ ନିଶ୍ଚୟ । ନାଯ୍ୟ ଦାବୀ କରିବାକୁ ପଛେଇବ କାହିଁ ? କିନ୍ତୁ ପରକ୍ଷଣରେ ପ୍ରତିକୂଳ ବାତାବରଣ ଉପଲବ୍ଧି କରି ମନକୁ ସାନ୍ତ୍ୱନା ଦେଲା ସେ ।

× × × ×

ଉର୍ଆଁସୀ ଆସି ଠିଆ ହେଲା ତାର ସାମ୍ନାରେ । ଭାଙ୍ଗିଗଲା ଚଇତୁର ଭାବନା । କରୁଣ ଦୃଷ୍ଟିରେ ତାକୁ ଅନେଇଲା ସେ । ଇଏ ତାର ସ୍ତ୍ରୀ । ବାହା ହେବାର ବର୍ଷେ ବି ହୋଇନି । କି ଲଗ୍ନରେ ତାର ହାତ ଧରିଥିଲା ଚଇତୁ ! ଖାଇବାକୁ ମୁଠାଏ ବି ଦେଇ ପାରୁନି । ହାଡ଼ ସବୁ ଗଣି ହେଉଛି । ବଳ ନାହିଁ । ତେବେ ବି ଝୁଡ଼ିଆରେ ମାଟି ବୋହି ନେଇ ପକାଉଛି ରାସ୍ତା ଉପରେ ।

ଟିକିଏ ପରେ ଉର୍ଆଁସୀ ବସିଲା ଚଇତୁ ପାଖରେ । ଚଇତୁ ମୁଣ୍ଡରୁ ଝାଡ଼ିଦେଲା ଧୂଳି । ଉର୍ଆଁସୀକୁ ଅନେଇଲା ଚଇତୁ । ଏଇ ଦୁର୍ଦ୍ଦିନରେ ମଧ୍ୟ ତା' ସ୍ତ୍ରୀ ଓଠ ସନ୍ଧିରେ ହସର ଲହଡ଼ି ଭାଙ୍ଗୁଛି । ଆଖି ତାର ଜକେଇ ଆସିଲା । ନିଃଶ୍ୱାସଟେ ବାହାରିଗଲା ତାର ପଞ୍ଜରା ଅଗରେ । ନାକପୁଡ଼ା ତାର କୋହରେ ଫୁଲିଉଠିଲା ଘନ ଘନ ; କିନ୍ତୁ କାନ୍ଦିପାରିଲା ନାହିଁ । ମୁହଁ ବୁଲାଇଦେଲା ଆରପାଖକୁ ।

ଉର୍ଆଁସୀ ବୁଝିଲା ସ୍ୱାମୀର ଦୁଃଖ । ହାତ ଧରି ଉଠାଇଲା ସେ । ଉଠିଲା ଚଇତୁ । ସ୍ତ୍ରୀର ମନୋଭାବ ବୁଝୁଛି । ମନବଳ ତାର ଯେମିତି ଭାଙ୍ଗି ନଯାଏ ସେଥିପାଇଁ ସେ କରୁଛି ଏସବୁ କୌଶଳ । ହେଲେ ସେ ପ୍ରତିଦାନରେ ତାକୁ ଦେଉଛି କ'ଣ ? କିଛି ନାହିଁ ! ଖାଲି ହା-ହୁତାଶ !

ତ'ଥର ଗର୍ଭିନ୍ତୁକୁ ମାଟି ଉପରେ କଢ଼ଚଢ଼ ରାସ୍ତା ଉପରକୁ ଚାହିଁଲା ଚଇତୁ । ଠିକାଦାର ନରହରି ରାସ୍ତା ଉପରେ ଠିଆହୋଇ ଚାହିଁରହିଛି ଏକଲୟରେ ତାର ସ୍ତ୍ରୀକୁ । ଏ ଦୁର୍ଦ୍ଦିନରେ ମଧ୍ୟ ଏମାନଙ୍କର ଶିକାରୀ ମନ ଦବିଯାଉନି ବରଂ ଚେଇଁ ଉଠୁଛି । ଦଇବ ଏମାନଙ୍କୁ ସହୁଛି କେମିତି ?

ଆଖି ଫେରାଇ ଆଣିଲା ଚଇତୁ । ମନଦେଲା ନିଜ କାମରେ ।

ଉର୍ଆଁସୀ ବୁଝିଲା ନରହରିବାବୁଙ୍କ ଆଖିର ଭାଷା । ସଥିଳ ପଥିଳ ପାଦ ପକାଇ ଫେରିଆସିଲା ରାସ୍ତା ତଳକୁ । ସ୍ୱସ୍ତିରେ ନିଃଶ୍ୱାସ ମାରିଲା । ହାତରୁ ଖସେଇ ଦେଲା ଝୁଡ଼ିଆଁ ।

ଝୁଡ଼ିଆଁରେ ମାଟି ଅଜାଡ଼ୁ ଅଜାଡ଼ୁ ଚଇତୁ କଣେଇ ଚାହିଁଲା ପୁଣି ରାସ୍ତା ଉପରକୁ । ଠିକାଦାର ନରହରି ଚାହିଁ ରହିଛି ଉର୍ଆଁସୀକୁ ସେମିତି । ଘୃଣାରେ ତାର

ମୁହଁ ବିକୃତ ହୋଇଉଠିଲା । ବେଞ୍ଚ ଉପରେ ଦୃଢ଼ହୋଇ ଆସିଲା ତାର ହାତ ମୁଠା—ମନ ଭିତରେ କୁହୁଳି ଉଠିଲା ପ୍ରତିଶୋଧ—ନିଆଁ ।…କିନ୍ତୁ ମରୁଡ଼ି ଯେ ଏକବାରେ ମୁହଁ ବନ୍ଦକରି ଦେଇଛି ।……

ମୁହଁ ବୁଲାଇଲା ଚଇତୁ ଉଆଁସୀ ଆଡ଼କୁ । ଅସହାୟ ହୋଇ ଆକୁଳ ନୟନରେ ସେ ଚାହିଁ ରହିଛି ତାକୁ । ସାନ୍ତ୍ୱନା ଦେଲା ମୁରୁକି ହସାରେ । ଆଖି ତା'ର ସତେ ଯେପରି ସ୍ତ୍ରୀକୁ କହୁଛି,—"ଭୟ କିଆଁ ?—ଆମେ ମାଟିର ମଣିଷ—ଖଟିବା ଆମର କାମ -ଅନ୍ୟର କୁଦୃଷ୍ଟିକୁ ଦେଖି ପଛେଇଯିବା ଆମ ଭୀରୁତା ! ଏପରି କେତେ ଚାହିଁବେ—କେତେ ପରିହାସ କରିବେ, ତାର କି ହିସାବ ଅଛି ।.. ନିଜେ ଭଲ ଥିଲେ ବାକି ସବୁ ଭଲ ।"

ଉଆଁସୀ ନଇଁପଡ଼ିଲା, ମାଟିବୋଝ ତା' ମୁଣ୍ଡ ଉପରକୁ ଉଠାଇଦେଲା ଚଇତୁ ।

ଠିକାଦାର ନରହରି ରାସ୍ତା ଉପରେ ସେମିତି ଠିଆହୋଇ ବାରମ୍ବାର ପାଟିରୁ ଛାଡ଼ୁ ଚାଲିଛି ଧୂଆଁ…

( ଦୁଇ )

ଘୁଁ-ଘୁଁ ଶବ୍ଦ ହେଲା । ମଟର ଆସୁଥିବ । ମାଟିଗୁହାଳିଙ୍କ ପିଲାମାନେ ଧାଇଁଲେ ରାସ୍ତାଉପରକୁ ହୋ ହା ପାଟିକରି । ମଟର ରହିବ । ଦେଖିବେ ସେମାନେ; ଭୁଲିଯିବେ କ୍ଷଣକ ପାଇଁ ପେଟର କ୍ଷୁଧା ।

ଟିକିଏ ପରେ ଆସି ରହିଲା ଜିପ୍‌ଟେ । ଠିକାଦାର ନରହରି ଗଲେ ପାଖକୁ । ଜିପ୍‌ରେ ବସିଥିବା ବାବୁଙ୍କୁ ନମସ୍କାର କଲେ । କଥାବାର୍ତ୍ତା ଚାଲିଲା ଦୁହିଁଙ୍କ ମଧ୍ୟରେ ।

ଚଇତୁ ଚାହିଁଲା ସେ ଦିଗକୁ ଟିକିଏ ପରେ । ଇଏ ତ ସେହି ନବଘନବାବୁ ! ଭୋଟ ବେଳକୁ ଦେଖା ଦିଅନ୍ତି । ଅନ୍ୟବେଳକୁ ଦେଖାମିଳେନି । ଆଗରେ ଭୋଟ; ତେଣୁ ମୋଟର ଚଢ଼ି ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ବୁଝିବାକୁ ଆସୁଛନ୍ତି ! ଆଗରୁ ସେ ବୁଝିଥିଲେ ଆଜି ଅନାହାରରେ ଲୋକଙ୍କର ଏ ଅବସ୍ଥା ଉପୁଜି ନ ଥାନ୍ତା । କିନ୍ତୁ ଲୁଚି ରହିଲେ ସେ । ଏତେବେଳକୁ ଆସି ଆଖିରେ ଲୁହ ଜକେଇ ଦୁଃଖ ପ୍ରକାଶ କରୁଛନ୍ତି । ଏସବୁ ଅନ୍ନଛତ୍ର, କାମଦାମ କୁଆଡ଼େ ସରକାରଙ୍କ ସହ ଲଢ଼ିଲଢ଼ି କରାଇଛନ୍ତି !!…ଲୋକ ଭୁଲିଣିଆ କଥା । ଆଗରେ ଭୋଟ । ନିଜ ଗୁଣଗ୍ରାମ ଗୀତ ପରି ଏବଠୁ ନ ଗାଇଲେ ଭୋଟ ମିଳିବ କିପରି ?

ନବଘନବାବୁ ଜିପ୍‌ରୁ ଓହ୍ଲାଇ କେତେକଙ୍କ ସହ ଆଲୋଚନା କରୁଥାନ୍ତି । ନରହରିଙ୍କୁ ମଝିରେ ମଝିରେ ତାଗିଦ୍ କରୁଥାନ୍ତି ଉଚିତ ପାଉଣା ଦେବାକୁ । ଲୋକେ ହାତଯୋଡ଼ି କୃତଜ୍ଞତା ଜ୍ଞାପନ କରୁଥାନ୍ତି ।

କିନ୍ତୁ ଚଇତୁ ଗଲାନି ପାଖକୁ । ତାଙ୍କୁ ଭଲଭାବେ ସେ ଚିହ୍ନି ସାରିଛି । ଏଠି ଠିକାଦାର ବାବୁଙ୍କ ତାଗିଦ କରୁଛନ୍ତି । ଘରେ ପଡ଼ିଥିଲେ ଜିପର ଏ ସମୟରେ ବେଶ୍ ଦି'ପଇସା ରୋଜଗାର କରିହେବ ଶିକ୍ଷା ଦିଅନ୍ତି । ଯେତେବେଳେ ନିଜ ଖାଇ ତ ।

ସେ ଦିନ ନିଜେ ଚଇତୁ ଶୁଣିଛି ଜିପର 'ପଡ଼ି' ଗୃହଳରେ ଗୋଡ଼ ମିଶା-ଯାଏ । ସ୍ଥିର ବସ୍ତାରେ ବସ୍ତାଏ ଗୋଡ଼ିବାଲି ମିଶିଲେ ପାଞ୍ଚବସ୍ତା । ପୁଣି ଜିପର ମାପିଲେ ଆଧିର ପୋଷେ ପୋଷେ ମିଳିବ ଅଧିକ । ସବୁ ଉପାୟ ଶିଖାଉଥାନ୍ତି ଏଇ ଜନ-ନାୟକ ।

ଠିକାଦାର ବାବୁଙ୍କ ଡାକରେ ସେ ଗଲା ପାଖକୁ । ନବଘନବାବୁ ପଚାରିଲେ ସୁବିଧା ଅସୁବିଧା । ବାଃରେ ଦରଦୀ । ଚଇତୁ କହିଲାନି ନିଜ ଦୁଃଖ । ଲାଭ କ'ଣ ? ଆହା କରିପିବେ ମୁହଁରେ, ହେଲେ ମନଟା ତାଙ୍କର ସ୍ୱାହା ସ୍ୱାହା ହେଉଥିବ ।

ପୁଣି ଥରେ ପଚାରିଲେ ନବଘନବାବୁ ।

ଚଇତୁର ବିଦ୍ରୋହୀ ମନ ତେଜି ଉଠିଲା । ଦୋଦୋ ପାଞ୍ଚ ହୋଇ ସାହସ ସଞ୍ଚି କହିଲା, "ସବୁ ତମର ଦୟା ହଜୁର ! ଆପଣଙ୍କର ଭିତରଟା ଯଦି ଏମିତି କଥା ବୁଝନ୍ତା ତେବେ ଆମେ ଏତେ ସରକ ହୁଅନ୍ତୁ କିଆଁ ? ଖାଇ ନ ହୋଇ ଆମେ ଆପଣଙ୍କର ହେବୁ କେମିତି ?"

ଚମକି ଉଠିଲେ ସଭିଏଁ । ଅନ୍ୟମାନେ ନବଘନ ବାବୁଙ୍କୁ ଥରେ, ଚଇତୁକୁ ଥରେ ଚାହିଁଥାନ୍ତି ଭୟାତୁର ନୟନରେ ।

ଆଖି ଲାଲକରି ନରହରିଙ୍କୁ କଟମଟ କରି ଚାହିଁ ଜିପ୍ ଉପରକୁ ଉଠିଲେ ନବଘନ ବାବୁ । ଠିକ୍ ସେତେବେଳେ ନରହରିଙ୍କ ବଳିଷ୍ଠ ହାତ ପାପୁଲି ପିଟିହେଲା ଚଇତୁ ଗାଲ ଉପରେ ।

ଗାଲ ଆଉଁସୁ ଆଉଁସୁ ବସି ପଡ଼ିଲା ଚଇତୁ ।

ପାଖକୁ ଦୌଡ଼ି ଆସିଲା ଉଆଁସୀ ।

ଜିପ୍ ଧୂଳି ଉଡ଼ାଇ ଚାଲିଗଲା ।



# ସୀମା

● ଶ୍ରୀ ରମାକାନ୍ତ ଚନ୍ଦ

ଏଠି ଅନେକ ରାତି । ଗଙ୍ଗଶିଉଳୀର ପାଖୁଡ଼ାରେ ରାତି ଝରିପଡ଼ୁଛି । ରାତି ଏଠି ରେଣୁ ରେଣୁ ହୋଇ ଲୁଚିଯାଇ ପଡ଼ୁଛି ।

ରାତିର ଅନ୍ଧକାର ଭିତରେ ଅଭିଜିତ୍ ଛିଡ଼ା ହୋଇଛି । ମୀଥର ନଷ୍ଟ ପ୍ ହୋଇ ସେ ଠିଆ ହୋଇଛି । ଏଇ ରାତି···ତାର ଅନ୍ଧକାରର ସୀମାନାହିଁ, ଆରମ୍ଭ ନାହିଁ କି ଶେଷନାହିଁ । ଉପରେ ନିଷ୍ପଲ ଚନ୍ଦ୍ର । କୁହୁଡ଼ି ଭରା ରାତିରେ ତାର ଜ୍ୟୋସ୍ନାମାନେ ପାଣ୍ଡୁର । ପ୍ଲାଟ୍‌ଫର୍ମର ଲାଇଟ ସବୁ ମୂକ ତୁଷାରିତ; ଯେହେତୁ ଏଇଟା ଡିସେମ୍ବର ।

ମଫ୍‌ଲର୍ ଟା ବାନ୍ଧେଇ ନେଲା ଅଭିଜିତ୍ । ବେକ ତଳେ କୋଉଠି ଫାଙ୍କ ପାଇ ଶୀତର ସର୍ପିଳ ଧାରଟିଏ ପିଞ୍ଚ୍ କରିବାକୁ ଆରମ୍ଭ କରିଛି । ଏଇ ନିର୍ଜୀବ ଶୀତର ଧାରଟିକୁ ଶେଷ କରାଯାଉ ଏବଂ କିଛି ସିଗାରେଟ୍ ପିଆଯାଉ, ଯେହେତୁ ଶୀତ ଅନେକ । ଅଭିଜିତ୍ ଲାଇଟର୍ ଜଳାଇଲା । ସେଇ ସ୍ତିମିତ ଆଲୋକରେ ଏକମୁହଁ । ଅନେକ ବ୍ୟଥା ଓ ବେଦନାରେ ବିଷାଦଗ୍ରସ୍ତ । ଦୃଷ୍ଟି ଉଦାସ । ଆଶା ନାହିଁ, ଆକାଂକ୍ଷା ନାହିଁ । ସଳିତାର ଶେଷଶିଖା । ଅନେକ ଝଡ଼ ଅନେକ ଝଞ୍ଜାର ଆଲୋକ । ତା'ପରେ ଦୃଷ୍ଟି ସୀମିତ ।

ଆଲୋକ ଦୂରରେ । ଏଠି ଅନ୍ଧକାର···ଧୂମ୍ର ଅନ୍ଧକାର । ଷ୍ଟେସନ ପ୍ଲାଟ୍‌ଫର୍ମରେ ଏଇନେ ଖାଲି ନିଅନ୍ ଓ ମର୍କରି । ମର୍କରି ଓ ନିଅନ୍ । ପ୍ଲାଟ୍‌ଫର୍ମ ସ୍ତବ୍ଧ । ଶେଷ ପାସେଞ୍ଜର ଅନେକବେଳୁ ତାର ଅଶ୍ରୁ ଓ କୋଳାହଳ ନେଇ ଚାଲିଯାଇଛି । ୩ଟା ୪°ର ପାସେଞ୍ଜର୍ ପାଇଁ ଅପେକ୍ଷା କରି ରହିଛନ୍ତି କେତୋଟି ହତଭାଗ୍ୟ ହକର୍ । ଅପେକ୍ଷା···ପ୍ରତୀକ୍ଷା । ଏ ପ୍ରତୀକ୍ଷାର ଶେଷ ନାହିଁ । ଜୀବନ ଓ ମୃତ୍ୟୁ । ଖାଲି ପ୍ରତୀକ୍ଷା । ରବିଠାକୁର ଏବେ କେଉଁଠି କହିହେବ ନାହିଁ ।

ପୁଣି ସିଗାରେଟ ଲଗାଇଲା ଅଭିଜିତ୍ । ସିଗାରେଟ୍ ଓ ରାତି । ମନ୍ଦ ନୁହେଁ । ଭଲର ଯେଉଁଠି ପ୍ରଶ୍ନ ନାହିଁ, ସେଠି ମନ୍ଦର ପ୍ରସଙ୍ଗ ନ ଉଠିବା ଭଲ । ଜୀବନ । ନର୍ଦ୍ଦମା କଡ଼ର ଫୁଟ୍‌ପାଥ୍ ଆଉ ଏୟାର୍ କଣ୍ଡିସନ ଡ୍ରଇଂ ରୁମ୍ । ଲକ୍ଷ୍ୟ ଏକ— ପ୍ରତୀକ୍ଷା । ମୃତ୍ୟୁର ପ୍ରତୀକ୍ଷା । ସବୁଠୁ ଭଲ Fill up the glasses । ଅତଏବ ଖାଲି ସିଗାରେଟ୍ ପିଆଯାଉ । ଗ୍ଲାସ୍ ଭରିବାର ଇଚ୍ଛା ଅଛି—କିନ୍ତୁ ଅନେକ ଗ୍ଲାସ୍ ପୂର୍ଣ୍ଣ ହୋଇଛି । କିନ୍ତୁ ହୃଦୟ କ୍ରମଶଃ ଶୂନ୍ୟ ହୋଇ ଚାଲିଛି, ବରଂ କାହାରିକଥା ଚିନ୍ତା କରାଯାଉ ।

କାହାକଥା ଚିନ୍ତା କରିବ ଅଭିଜିତ୍ ? ନେହେରୁ ? ଶାସ୍ତ୍ରୀ ? ଉତ୍କଳମଣି ? ମାଓ ? ଷ୍ଟାଲିନ୍ ? ଗାମା ? ମୋରାଭିଆ ? ସୋବର୍ସ ? ଟଲ୍‌ଷ୍ଟୟ ? ଓଏଲ୍ ? ଓ ମା ? ବରଂ ପ୍ଲାଟ୍‌ଫର୍ମର ଏକ ନିଶୁନ୍ ବେଞ୍ଚରେ ବସାଯାଉ, ଶୀତ ରାତିରେ ଦେହର ଉତ୍ତାପ ବିକୀରଣ କରାଯାଉ ଏବଂ ସିଗାରେଟ୍ ପିଆଯାଉ ।

ଝରକାରେ ଦେଖାଯାଉଛନ୍ତି ଷ୍ଟେସନ୍ ମାଷ୍ଟର୍ ଅଫିସ୍‌ରେ ଚାରିଜଣ । ତାସ୍ ଖେଳ ବୋଧେ ଚାଲିଛି । ସିଗାରେଟ୍‌ର ଧୂଆଁରେ ଝରକାଟି ବନ୍ଦହୋଇ ଯାଇପାରେ । ପିଉଛନ୍ତି ? ଥିଲେ କିଛି ରମ୍ ବା ଭୋଡ୍‌କା ତାଙ୍କୁ ଦିଆଯାଇ ପାରିଥାନ୍ତା । ନା ସେସବୁ ନାହିଁ, ବରଂ ଆଜିକା କଥା ଚିନ୍ତାକରାଯାଉ ।

ବେଶ୍ ଭୋର୍‌ରୁ ଉଠିଥିଲା ଅଭିଜିତ୍ । ଠିକ୍ ସମୟରେ ଅଫିସ ଯାଇଥିଲା । ଅଫିସରୁ ଛୁଟି ନେଇଛି ନୀଲିମା । ଆଜି ତାର ଏନ୍‌ଗେଜମେଣ୍ଟ । ନୋଟ୍ ନେବାପାଇଁ ଆସିଥିଲା ଅଫିସ୍‌ର ସବୁଠୁ କଦର୍ଯ୍ୟ ସେଇ ଷ୍ଟେନୋଟା···ମିସ୍ ରେଜି । ରେଜି ହସିଥିଲା । ଶେଥା ଧଳା ମୁହଁରେ କଳା ଜାମୁକୋଳି ରଙ୍ଗର ଦାନ୍ତସବୁ ବେଶ୍ ଆତ୍ମପ୍ରକାଶ କଲେ । ବାରଟାବେଳେ ଛୁଟି ନେଲା ଅଭିଜିତ୍ ଆଉ ବ୍ରାଣ୍ଡିରୁ ଗ୍ଲାସେ ଖାଇଦେଇ ଏକ ଦୂରଗାମୀ ଟ୍ରେନ୍‌ରେ ବସିପଡ଼ିଲା । ତା'ପରେ ଏଇ ରାତି...ଏଇ ପ୍ଲାଟଫର୍ମ···ଏଇ ଶୂନ୍ୟତା ଓ ନିଃସଙ୍ଗତା ।

କୁହୁଡ଼ି ଏଠି ବେଶ ଜମିଛି । ଆନ୍ଧାର ଜମୁ । ସିଗ୍‌ନାଲର ରେଡ୍‌ଲାଇଟ୍ ଦେଖା ନ ଯାଉ । ବେଶ୍ ହେବ । ବିଜ୍ଞାନର ପରାଜୟ । ଗତିବୃଦ୍ଧିର ଅହମିକା । ଏଇ ଲାଇନ୍‌ମାନେ ଇଲେକ୍‌ଟ୍ରିଫାଏଡ୍ ।

କଦମ୍ବ ଫୁଲ କେବେ ଫୁଟେ ? ମନେପକାଇବାକୁ ଚେଷ୍ଟାକଲା ଅଭିଜିତ୍ । ନା । ତେବେ ଏଇ ଡିସେମ୍ବରରେ ଫୁଟେନାହିଁ ନିଶ୍ଚୟ ! ତାର ପାଖୁଡ଼ାମାନେ ଆଃ କି ସାଙ୍ଘାତିକଭାବେ ରୋମାଞ୍ଚକର । ସେଇ କଦମ୍ବ ଆଉ ତା' କଥା ମନେ ପକାଇଲେହିଁ ଆଉଗୋଟିଏ କଥା ମନେପଡ଼େ ଏବଂ ଯେଉଁ କଥାଟି ମନେପଡ଼ିବ, ତାକୁ ଏଡ଼ାଇ ଦିଆଯାଉ । ସବୁଠୁ ଭଲ କାହାରି କଥା ନ ଭାବି ଚୁପଚାପ୍ ବସିବା ।

ବରଂ ଏଇ ସିଗାରେଟ କଥା ଚିନ୍ତା କରାଯାଏ । ଏ ସିଗାରେଟ୍ ଏବେ ପୃଥିବୀବ୍ୟାପ୍ତ । ୟୁରୋପୀୟ ମିଳିତ ବଜାରଠାରୁ ଆରମ୍ଭ କରି ଦି ଆଫ୍ରିକାନ କଣ୍ଟିନେଣ୍ଟାଲ୍ ଚେମ୍ବର୍ ଅଫ୍ କମର୍ସ ପର୍ଯ୍ୟନ୍ତ ସର୍ବତ୍ର ଯାର ପ୍ରତିପତ୍ତି । ଷ୍ଟକ୍ ଏକ୍‌ସଚେଞ୍ଜର ଇତିହାସରେ ଏଇ କମ୍ପାନୀର ସେୟାର୍ ଏକ ଯୁଗାନ୍ତକାରୀ ମାଇଲ୍ ଖୁଣ୍ଟ । ଏ କମ୍ପାନୀର ଶହେଟଙ୍କିଆ ସେୟାର ଗୋଟିଏ ଉଇକ୍‌ରେ ସାତଟଙ୍କା ବଢ଼ିଯାଏ । ସେଇଥିପାଇଁ ହିଁ ଏ କମ୍ପାନୀ କୌଣସିପ୍ରକାର ପ୍ରିଫରେନ୍‌ସ ସେୟାର୍ ଅଫାର୍ କରେନା । ଅଥଚ ଏହାର ମାଲିକ କମ୍ପାନୀର ଶତକଡ଼ା ଅଶୀଭାଗ ମୂଳଧନ ଯାହାର ଜୀବନ ଆରମ୍ଭ କରିଥିଲା ଏକ ସାଇକେଲ୍ କାରଖାନାର ଏସେମ୍ବ୍ଲରରୁ । ଆଉ ଆଜି ?

ଏ ପ୍ରସଙ୍ଗ ଥାଉ । ତାର ପ୍ରଶସ୍ତି ଗାଇଲେ ଗୋଟାଏ ପେକେଟ ସିଗାରେଟ୍ ଯେ ପ୍ରେଜେଣ୍ଟ ମିଳିବ ଏ ଆଶା ନାହିଁ । ବରଂ ଆଉଗୋଟିଏ ସିଗାରେଟ୍ ଲଗାଯାଉ ଏବଂ ତାର ଧୂଆଁରେ ସେଇ ପୁଞ୍ଜେପଡର ପୂର୍ବପୁରୁଷମାନଙ୍କୁ ସାନ୍ତ୍ୱନା ଦିଆଯାଉ; ଯେହେତୁ ଏଇଟା ଡିସେମ୍ବର ଏବଂ ଧୂଆଁ ହେଉଛି ଅଗ୍ନିର ଏକ ସଙ୍କେତ୍ ।

ଆଚ୍ଛା, ଅଭିଜିତ୍‌ର ପୂର୍ବପୁରୁଷମାନେ ଏବେ କଣ କରୁଥିବେ ? ତାଙ୍କୁ ସେମାନେ ଚହ୍ନିପାରୁଥିବେ ? କାରଣ ସେମାନେ ଅଜସ୍ର କଦମ୍ବ, କେତକୀ ଓ ଚୁଆଥନାର ସମ୍ପର୍କୀୟ । ଆଉ ସେ କଦମ୍ବ କେତକୀର ଯୌବନକାଳ ସମ୍ବନ୍ଧରେ ଅଜ୍ଞ । କିନ୍ତୁ ଏହା ନିଶ୍ଚିତ ଯେ କଦମ୍ବର ଯୌବନକାଳ ଆସେ ଏବଂ ଅଭିଜିତ୍ ଏକଦା ସେଇ ଯୌବନର ସାକ୍ଷୀ ଥିଲା ।

ସେ କଥା ଭାବି ଲାଭ କଣ ? ସେ କଦମ୍ବ କେତକୀର ବନ ଅନେକ ବନରୁ ଯାଇଛି । ତାର ଯୌବନର ପ୍ରଶ୍ନ ଏବେ ନାହିଁ । ବରଂ କାହାର କଥା ଚନ୍ତା କରିଯାଉ । କାହା କଥା ? କାହା କଥା ଚନ୍ତା କରିବ ଅଭିଜିତ୍ ? ଅଚ୍ଛା ମିସେସ୍ ଶର୍ମା ! ଲିପଟନ୍ ଇଣ୍ଡିଆର ମ୍ୟାନେଜର ମି. ଦ୍ୱାରକାପ୍ରସାଦ ଶର୍ମାଙ୍କ ସହଧର୍ମିଣୀ ଆଜି ମିସେସ୍ ଶର୍ମା କେଉଁଠି ? ଜୀବିତ ତ ?

ଆଃ, ଇଂଜିନ୍‌ଟା ସଣ୍ଟିଂ କରିବାର ବେଳ ଏଇଟା ଥିଲା ? ଗର୍ଜି ଗର୍ଜି ଇଲେକ୍‌ଟ୍ରିକ୍ ଇଂଜିନ୍‌ଟା ଦୂରେଇ ଯାଉଛି । ହାଓଡ଼ା ମାଡ୍ରାସ୍ ଏକ୍‌ସପ୍ରେସ୍ ଏଇଠି ଇଂଜିନ୍ ବଦଳାଇବ । ଥଣ୍ଡା ଏଥର ସୁସ୍ପଷ୍ଟ । ସ୍ୱେଟର୍ ଏବଂ କୋଟ ଯଥେଷ୍ଟ ହେଉନାହିଁ । ଦେହରେ ଉତ୍ତାପ ସଞ୍ଚାରଣ କରିବାର ଆବଶ୍ୟକତା ଦେଖାଦେଇଛି; ତେଣୁ କିଛିସମୟ ବୁଲିଯାଉ କିଛି ସିଗାରେଟ୍‌କୁ ପାଉଁଶରେ ପରିଣତ କରିଯାଉ ଏବଂ ବାରବର୍ଷତଳର ସେଇ ରାତିଟିକୁ ମନେପକାଯାଉ ।

ସବୁବର୍ଷ ଡିସେମ୍ବର ଆସେ । ସେଥର କିନ୍ତୁ ଅନେକ ଥଣ୍ଡା । ହିଲ୍ ଏରିଆ-ମାନଙ୍କରେ ଅଜସ୍ର ବରଫପାତ ହେଉଛି । ଏହିପରି ଏକ ଷ୍ଟେସନ୍ । ଅଭିଜିତ୍ ୨ଟା ୩୦ ମେଲ୍‌କୁ ଅପେକ୍ଷା କରିଛି । ଟେକ୍‌ସି ଭିତରେ ଶୋଇ ଶୋଇ ଅଭିଜିତ୍ ତାରା ଗଣୁଛି । କଦମ୍ବ କେତକୀ ମନେପକାଇବାକୁ ଚାହୁଁଛି । ଥଣ୍ଡା ଅନେକ । ସିଗାରେଟ୍ ପିଉଛି ଏବଂ ମଳ୍ଳ ଇଲସିର ଆଖିରେ ଚାହିଁଛି । ଟ୍ରେନ୍ ଆସିବ । ଆସୁ ଏବଂ ଆସିଲା ।

ଏକ ପ୍ରୌଢ଼ । ସସ୍ତ୍ରୀକ । ବେଶ ଆଧୁନିକା । ଉଲ୍‌ର ଫୁଲ୍‌ପ୍ୟାଣ୍ଟ । ହୃପ୍‌ସର ଅତ୍ୟାଂଗ୍ଧରରେ ପେଣ୍ଟ ଯେମିତି ଫାଟି ପଡ଼ିବ । ଛାତିର ସ୍ତରରେ କୋଟ୍‌ର ଦୁଇ ବୋତାମର ବ୍ୟବଧାନ ବେଶ୍ ବିସ୍ତାରିତ । ମୁଣ୍ଡରେ ମଫ୍‌ଲର ଏବଂ ଘଣମ କ୍ୟାପ୍ ।

ବେଶ୍ । ପ୍ଲାଟ୍‌ଫର୍ମ ଡେଇଁ ଆସିଲେ । ଅଭିଜିତ୍ ଆଗେଇ ଆସିଲା···ସାବ୍—ଟେକ୍‌ସି !

ଗାର୍ଡ଼ିକ ଗୃହିଣୀଟିଏ । Of course young man !

ଟେକ ସି ଆଗେଇ ଚାଲିଛି । ଗ୍ରାଣ୍ଡ୍ ହୋଟେଲ ।

ଭଦ୍ର ମହିଳା ଓହ୍ଲାଇ ପଡ଼ିଲେ । ପଛେ ପଛେ ଭଦ୍ରବ୍ୟକ୍ତି । ଭଦ୍ର ମହିଳା ଉଦାର । ଶହେ ଟଙ୍କିଆ ନୋଟ୍‌ଟିଏ ବଢ଼ାଇ ଦେଲେ । କମ୍ ଟୁମରୋ ମର୍ଣ୍ଣିଂ । ଗୁଡ଼୍ ନାଇଟ ।

ସେହି ହେଲେ ମିସେସ୍ ଶର୍ମା ।

ପୁଣି ସକାଳ । ଏଥର ଏକା ଏକା ବାହାରି ପଡ଼ିଲେ ଭଦ୍ର ମହିଳା । ଦୃଷ୍ଟି ଉଦାସ ! ଲକ୍ଷ୍ୟ ନିରୁଦ୍ଦିଷ୍ଟ । ଲେକ୍ ପାର୍କ ଚଲୋ ୟଙ୍ଗ ମାନ୍ ।

ଲେକ୍ ପାର୍କ । ସକାଳୁ ପାର୍କରେ ବୁଲିବା ସହଜ କାହାରି ନାହିଁ ।

ମିସେସ୍ ଶର୍ମା । ଯୌବନର କଦମ୍ବ କେତକୀ ଅନେକ ଦିନରୁ ମଉଳା । କନ୍ତୁ ମେକ ଅପ୍ ଟପ୍ ମୋଷ୍ଟ । ଟାଣି ଓଟାରି କଦମ୍ବ କେତକୀର ବାସ୍ନା ଅଣାଯାଇ-ପାରେ । ଫିନ୍ ଫିନ୍ ଗୋଲାପି ରଙ୍ଗର ଶାଢ଼ୀ । ସେମ୍ କଲରର ବ୍ଲାଉସ୍ । ଅନେକ ମାଂସ ଦେହରେ । ପ୍ରାଗୈତିହାସିକ ଯୁପର ସ୍ତନ ଦ୍ୱୟର ଯଥେଷ୍ଟ ବଳ ପ୍ରୟୋଗର ଚିହ୍ନ ସୁସ୍ପଷ୍ଟ । ବାହୁ ଦୁଇଟି ନିରାଭରଣ । ମିସେସ ଶର୍ମା ଅକାରଣରେ ହାତ ଦୁଇଟି ଉପରକୁ ଟେକୁଛନ୍ତି ଏବଂ ତା'ପରେ ·····ଗ୍ରୁଡ଼······ ।

ଅଭିଜିତ୍ ଇତସ୍ତତଃ । ପାଖରେ ବସାଇଲେ ଜୋର୍ କରି । ମିସେସ୍ ଶର୍ମା ଗୋଟିଏ ମିଟର ସ୍ଥାନ ମାଡ଼ି ବସନ୍ତି ।

ଅଭିଜିତ୍‌ର କଥା ଶୁଣି ସେ ଆଶ୍ଚର୍ଯ୍ୟ ହୋଇଗଲେ । ତୁମେ କମର୍ସରେ ପୋଷ୍ଟ ଗ୍ରେଜୁଏସନ୍ ସମାପ୍ତ କରିଛ, ଅଥଚ ଏଇ ପୋଜିସନ୍‌ରେ ଅଛ ! ରିଏଲି ଷ୍ଟୋପ କାହିଁ । ଅଫ୍ କୋର୍ସ; ଆପଏଣ୍ଟମେଣ୍ଟ ଇଜ୍ ଏ ପ୍ରବ୍ଲେମ୍ ଇନ୍ ବଗ୍ ସିଟିଜ୍ ଲାଇକ୍ କେଲ୍‌କ୍ୟାଟ୍ ।

ମିସେସ ଶର୍ମା ବେଶ୍ କଥା କହି ଜାଣନ୍ତି । ଫୁଲଭରା ଶିମୁଳୀ ଗଛପରି ଦେହ ତାଙ୍କର ବେଶ୍ ଥରି ଉଠେ । ମିସେସ୍ ଶର୍ମା । କଟିଦେଶ ଅନେକ ସ୍ଥୁଳ··· ବେଶ୍ ନରମ ଆଉ ଉଷ୍ମ ବି ।

ଅଭିଜିତ୍‌କୁ ଆସିବାକୁ ପଡ଼ିଲା ଦିଲ୍ଲୀ । ମିସେସ୍ ଶର୍ମାଙ୍କ ଭଲ ହୋଷ୍ଟେସ୍ ଯେଉଁଠି, ଅସୁବିଧା ବା କଣ ?

ସେଦିନ ଅନେକ ଅଣ୍ଡା···ଅନେକ । ଅଭିଜିତ୍‌ର ଇତିହାସ ଆଉ ଭୂଗୋଳ ବିଲ୍‌କୁଲ୍ ବଦଳି ଯାଇଛି । ଅଭିଜିତ୍ ପ୍ରାଇଭେଟ୍ ସେକ୍ରେଟେରୀ ଅଫ

ବୋଧ ମି. ଏଣ୍ଡ୍ ମିସେସ୍ ଶର୍ମା । ମିସେସ ଶର୍ମା ବେଶ୍ ଖୁସିଆସିଲେ ତା ସାଙ୍ଗରେ ଆସ୍ଥା ।

ତାଜମହଲ । ଘନ କୁହୁଡ଼ି । ସେଇ ବିଶ୍ୱବିଖ୍ୟାତ ମନୁମେଣ୍ଟ୍ଟା ଏକ ରମଣୀୟ ସିଲ୍‌ହଟ୍ । ବେଶ୍ ଧଳାଧଳା ମିସେସ୍ ଶର୍ମା । ମିସେସ୍ ଶର୍ମା ପ୍ରଗଲ୍ଭ । କଦମ୍ବ କେତକୀର ଯୌବନ ଫେରୁଛି···ଫେରୁ । ଏଥର ପ୍ରେମର ଋତୁ ଆରମ୍ଭ ହେବ । ଅଭିଜିତ୍ତର ମୁଖମଣ୍ଡଳ ଚୁମ୍ବନରେ ଆର୍ଦ୍ର ହୋଇଉଠୁଛି । ଅଭିଜିତ୍ ଆତ୍ମ-ବିସ୍ମୃତ । ସେ ମୋହଗ୍ରସ୍ତ ।

ଅଭିଜିତ୍, ମୋତେ କୁଆଡ଼େ ନେଇଯାଇ ପାରିବ ? ମୁଁ ଓଢ଼ଣୀଟାଣି ବୋହୂ ସାଜିବି । ତୁମ ପାଇଁ ଡିନାର ପ୍ରସ୍ତୁତ କରିବି । ତୁମର ସନ୍ତାନମାନଙ୍କୁ ସ୍ନେହ ଦେବି । ତୁମେ···

ପ୍ରତିଶ୍ରୁତି । ଅଜସ୍ର ପ୍ରତିଶ୍ରୁତି । ସାଇକଲୋଜି ଅଫ୍ ଉଇମେନ୍ । ବେଶ୍ ବୁଝି ବୁଝି ଆସେ ଅଭିଜିତ୍ । ବିଦ୍ରୂପ । ସେଣ୍ଟିମେଣ୍ଟ୍ସ ଓ ସାଇକଲୋଜିର ପ୍ରତୁତ୍ତର । ଯେଉଁମାନେ ଓଢ଼ଣୀ ଟାଣନ୍ତି ସେମାନେ ଡିନାର୍ ପ୍ରିପେୟାର କରିପାରନ୍ତି ନି ।

ଆଃ । ଅଭିଜିତ୍ ଭୁଲିବାକୁ ଚାହେଁ···ସେ ଭୁଲିବ । ସେସବୁ ପାରିଶ୍ରମିକ··· ଏକ ବ୍ୟକ୍ତିଗତ କାମ କରାଇନେବାର ଲକ୍ଷ୍ୟ ଚପରାସୀଠାରୁ ଆରମ୍ଭ କରି ମନ୍ତ୍ରୀ ମହୋଦୟ ପର୍ଯ୍ୟନ୍ତ ଯାହା କରନ୍ତି । ପାରିଶ୍ରମିକ ପାଇ ମିସେସ୍ ଶର୍ମା ଅଭିଜିତ୍‌କୁ ଏଷ୍ଟାବ୍ଲିସ୍ କରିଦେଲେ । ସେ ମାର୍ଟିନ୍ ଇଣ୍ଡିଆର ପାର୍ସନାଲ୍ ଅଫିସର୍ ।

ଆଉ ଯେଉଁଦିନ, ଡେପୁଟି ମେନେଜରଙ୍କୁ ପ୍ରମୋସନ ପାଇ ସେ କଲିକତା ବଦଳି ହେଲୁ, ସେଦିନ ମିସେସ୍ ଶର୍ମାଙ୍କର ଏକ ପୁତ୍ର ସନ୍ତାନ ହୋଇଥିଲା । ତେୟାଳିଶ ବର୍ଷ ବୟସରେ ସନ୍ତାନ !

ତା'ପରେ ମିସେସ୍ ଶର୍ମା ଥରେ କଲିକତା ଆସିଥିଲେ । ଅଭିଜିତ୍ ନିଃସଙ୍ଗ । ମିସେସ୍ ଶର୍ମା ନିର୍ଲଜ୍ଜ । ଗୋଟିକ ପରେ ଗୋଟିଏ ଆଭରଣ ଖୋଲି ସେ ଉଲଗ୍ନ ହୋଇଗଲେ । ପ୍ରାଗୈତିହାସିକ ଯୁଗର ନିର୍ଲଜ୍ଜ ଏକ ନାରୀ । ଏଇ ରୂପରେ ସେ ବେଶ୍ ଭଲ ଦେଖାଯାଆନ୍ତି । ଯୌବନମୟୀ । ନିର୍ବିକାର । ସୋଫାରେ ବେଶ ସ୍ୱଚ୍ଛନ୍ଦ ମିସେସ ଶର୍ମା । 'ଅଭିଜିତ୍, ତୁମଠୁ ମୋର ପାରିଶ୍ରମିକ ମୁଁ ପାଇସାରିଛି । ନାଓ ଇଟ୍ ଇଜ୍ ଇୟୋର୍ ଟର୍ଣ୍ଣ । ତୁମେ ମୋତେ ସନ୍ତାନ ଦେଇଛ, ବିନିମୟରେ ଏଇ ଲକ୍ଷ୍ୟ ଗ୍ରହଣ କରିପାର ।'

ଆଃ, ଶୀତ ଶ୍ରାବଣ । ଏଇଟା ଡିସେମ୍ବର; ଅତଏବ ସିଗାରେଟ୍ ପିଆଯାଉ । ଆଉ ତାର ଧୂଆଁରେ ମିସେସ୍ ଶର୍ମାର ସେଇ ଲୋଭନୀୟ ନାରୀ ଅଙ୍ଗଭଙ୍ଗୀକୁ ଅସ୍ପଷ୍ଟ କରିଦିଆଯାଉ ।

କିନ୍ତୁ ଭଲଗ୍ ହୋଇ ମିସେସ୍ ଶର୍ମା ବେଶ୍ ନାଚପାରନ୍ତି ।

ଆଃ ! ଚକ ବଦଳୁଛି । ଇନ୍ଦ୍ରଧନୁର ଅନେକ ରଙ୍ଗ । ଅତଏବ ଆଖିରେ ସୁର୍ମା ଲଗାଯାଇ ଏବଂ ଏକ ମଧୁର ଦହନରେ ଅଭିଜିତ୍ ଆତ୍ମବିସ୍ମୃତ ହେଉ ।

ଷ୍ଟେସନ ମାଷ୍ଟର ରୁମ୍‌ରେ ସେଇ ଗୁଣଜଣ ତେବେ ବି ନିଶାଗ୍ରସ୍ତ । ତାଙ୍କ ପାଖରେ ଥିବ କିଛି ହ୍ୱିସ୍କି ବା ସେଇ ରକମର କିଛି ?

ପାସେଞ୍ଜରଟା ଏବେ ବି ଆସି ନ ; ହୁଏତ ଆସି ନ ପାରେ ବା ଆସିପାରେ ।

ଦୟାକରି ଶୁଣନ୍ତୁ । ହାଉଡ଼ା ମାଡ୍ରାସ ପାସେଞ୍ଜର୍ ଭୀଷଣ କୁହୁଡ଼ି ଓ ବରଫପାତ ଯୋଗୁଁ ପହଞ୍ଚିବାର କିଛି ବିଳମ୍ବ ହେବ । ଏଟେନସନ ପ୍ଲିଜ୍...

ଅଭିଜିତ୍‌କୁ ବିଦ୍ରୂପ କରାଯାଉଛି । ସେ ଏକମାତ୍ର ପାସେଞ୍ଜର୍ ।

ଆଉ...ଟାର୍ଗେଟ ନାହିଁ । ଟାର୍ଗେଟ୍ ଆଉ କାହାର ନାହିଁ । ଜୀବନର ତ ନାହିଁ । କଦମ୍ବର ନାହିଁ କି କେତକୀର ନାହିଁ ।

ଆଃ, ବୋଉ ଆସୁଛି । ବୋଉ । ତାର ଟାରଗେଟ୍ ଥିଲା । ଏକୋଇଶ ବର୍ଷ ବୟସରେ ପୁଅମାନେ ବିବାହ କରନ୍ତି ।

କିନ୍ତୁ ସେଇ ଟାରଗେଟ ଭିତରେ ହିଁ ସେ ହଜିଗଲା । ଏକୋଇଶର ଟାରଗେଟ ଆସିପାରିଲାନି । କେଉଁ ଚକ ବଦଳିଧ ଅପସ୍ୱପ୍ନର ଦୂରନ୍ତ ଗ୍ରସ୍ତାଭିଲା ତାର ସ୍ମୃତି । ଆଖି ଆଗରେ ଦିଶିଯାଏ ତାର ବ୍ୟସ୍ତବଧୂର ମୂର୍ତ୍ତି ।

ସେଇ ହତଭାଗୀ ବୋଉଟା ଚମତ୍କାର ସୁନ୍ଦରୀ ଥିଲା । ସିଏ ବି କୁମାରୀ ଜୀବନରେ କାହାକୁ ଭଲ ପାଉଥିଲା । ପ୍ରକୃତରେ ବୋଉପରି ସୁନ୍ଦରୀ ଝିଅମାନଙ୍କରହିଁ ପ୍ରେମଟା ମନୋପଲି । ସେ ଜିଦ୍ ଧରିଥିଲା ତାର ପ୍ରେମିକ ସାଙ୍ଗରେ ବାହା ହେବାପାଇଁ । ତେବେ ନିଶ୍ଚିତ କଥା ଯେ, ବାହାହେବା ଆଗରୁ ସେ ଅନ୍ତଃସତ୍ତ୍ୱା ନ ଥିଲା । ବୋଉଟା ପ୍ରକୃତରେ ହତଭାଗୀ ଥିଲା; ମାତ୍ର ପାଞ୍ଚବର୍ଷର ବିବାହିତ ଜୀବନ ମଧ୍ୟରେ ବାପା ଚାଲିଗଲେ । ଆହାଃ ବିଚାରୀ ବୋଉ । ତା'ର ପ୍ରେମିକ ସାଙ୍ଗରେ ବାହା ହୋଇଥିଲେ କେତେ ସୁଖୀ ସେ ହୋଇ ନଥାନ୍ତା ! ଚିନ୍ତାରେ ସେ ବି ମରିଗଲା, ଆଉ ମଲାବେଳକୁ ସେ ମୋତେ ଦଉଣ ଟପ୍ ଟପ୍ ।

ଅଭିଜିତ୍‌ର ବୟସ ବର୍ତ୍ତମାନ କେତେ ?

ଅଭିଜିତ୍ ଲାଇଟର ଜଳେଇଲା । ଡିସେମ୍ବରର ଏଇ ବରଫାସ୍ତୃତ କଳାଭଳି ଶୀତରେ ବି ତା ମୁହଁରେ ବିନ୍ଦୁ ବିନ୍ଦୁ ଝାଳ । ଆଃ...ଯନ୍ତ୍ରଣା...ବେଦନା । ପ୍ଲାଟଫର୍ମର ନିଅନ୍ ଓ ମର୍କରୀମାନେ ନିର୍ଲିପ୍ତ ..ନିର୍ବିକାର । କୁହୁଡ଼ି ଘନୀଭୂତ ହେଉଛି । ଏଇ ଯୁ କୁହୁଡ଼ି, ମାଡ୍ରାସ ହାଉଡ଼ା ପାସେଞ୍ଜର ଆଉ ବିଳମ୍ବ ତ କରିବ ନାହିଁ; ବୋଧେ ଠିକ୍ ସମୟରେ ପହଞ୍ଚିବ—ମାନେ ଠିକ ଚବିଶଘଣ୍ଟା ପରେ । କୁହୁଡ଼ିର ଘନ ଅରଣ୍ୟ ଭିତରେ ବାଟବଣା ହୋଇ ଜାନୁଆରଟା ଅମିସିବା ମୁହୂର୍ତ୍ତରେହିଁ ଶୀତର ବଡ଼ ବଡ଼ ବୀରମାନେ ପାଣିଟେପ୍ ଭିତରେ ଆକ୍ରମଣ ଆରମ୍ଭ କରିଦେବେ ।

ଫ୍ରିଜିଂପଏଣ୍ଟ୍ ଆଉ ବଏଲିଂ ପଏଣ୍ଟ୍‌ର ଟାର୍‌ଗେଟ୍‌ଟା ଅନେକ ଲମ୍ବା…ଅନେକ ବିସ୍ତୃତ ।

ଆଃ, ଶୀତ । ଅନେକ ଦିନର ସଞ୍ଚିତ ଶୀତ । ଏମିତି ଶୀତରାତିରେହିଁ ରମ୍‌କୁ ଉପଭୋଗ କରିହେବ । ଏଇ ପାର୍ଟିରେ ମାଳମାର ଏନ୍‌ଗେଜ୍‌ମେଣ୍ଟ ଉତ୍ସବଟା ବେଶ୍ ଜମିଉଠିଥିବ । ମାଳମା ଚମତ୍କାର ନାଚପାରେ…ସାମ୍ବାଲୀ, ବଲ, ବାଲେ ସବୁ । ଜନ୍ ବି ଚମତ୍କାର ନାଚେ । ଗ୍ରାଣ୍ଡ୍‌ର ସେ ପ୍ରଫେସନାଲ୍ ଡେନସାର ।

ମାଳମା ଏଇନେ କଣ କରୁଥିବ ? ଆଉ ତାର ଗେଷ୍ଟମାନେ ? ଅଭିଜିତ୍ ଶୁଣିଥିଲି, ପଚିଶବର୍ଷ ତଳର ରମ୍ ଆଉ ଅଶୀବର୍ଷ ତଳର ଭୋଡ୍‌କା ଜନ୍ ଯୋଗାଡ଼ କରିଛି ।

ଅନେକ ନିକଟରେ । ଆଃ, ଟନ ଟନ ପୁରୁଣା ଶୀତର ଅଳିଆ ସବୁ ସେମାନେ ନିଷ୍କାସିତ କରି ସାରିଥିବେ ଆଉ ମାଳମାର ସ୍ଲିମ ଦେହଟା ଜନ୍‌ର ଦେହରେ ନେସି ହୋଇଯାଇଥିବ ।

ମାଳମାଟା ଶସ୍ତା, ନିହାତି ଶସ୍ତା । କେଇଟା ଶହେଟଙ୍କିଆ କରେନସି ନୋଟ ବା କିଛି ଓଜନଦାର ପୌରୁଷରେ ତାକୁ ବେଶ କିଣାଯାଇପାରେ । ଜନ୍ ଦୁଇଟାଯାକର ଅଧିକାରୀ । ତାର ବ୍ୟାଙ୍କ ବ୍ୟାଲାନସ ଅନେକ । ଅଭିଜିତ୍ ଶୁଣିଥିଲି, ହୋଟେଲ ବିଜନେସଟା ଜନ୍‌ର ସାଇଡ଼ ବିଜନେସ । ପ୍ରଧାନ ହେଲା ପ୍ରାଇଭେଟ ବିଜନେସ । ହୋଟେଲକୁ ଯେଉଁ ବୟସ୍କା ମହିଳାସବୁ ଆସନ୍ତି, ସ୍ୱାମୀମାନେ ଯେଉଁମାନଙ୍କର ଅଧିକ ବୟସ୍କ, ଯେଉଁମାନେ ନାଚିବାକୁ ସ୍ପୃହାନ୍ତି ଅଥଚ ବିପୁଳ ମାଂସର ଭାର ବହନ କରିପାରନ୍ତିନି, ଜନ୍‌ର ଆକର୍ଷଣୀୟ ମାସଲ୍‌ସ ଦେଖି ଯେଉଁମାନେ ଅଣ୍ଟିରେ ଫ୍ଟ ମି ଉଠନ୍ତି, ଅଥଚ କିଛି କରିପାରନ୍ତିନି, ସେଇମାନେ କେତୋଟି ବ୍ଲାକ କରେନ୍‌ସି ନୋଟ ଦେଇ ଜନ୍‌କୁ ଘଣ୍ଟାଏ ଦୁଇଘଣ୍ଟା ପାଇଁ କିଣିନିଅନ୍ତି ଏବଂ ହସି ଉଡ଼େଇ ଦେଇଥିବା ଅନେକଦିନର ଶୁଣା କଥାଟିକୁ ଅଭିଜିତ୍ ପୁଣି ମନେପକାଇବାକୁ ବାଧ୍ୟ ହେଲା । ଯେଉଁ ମାଂସଦାର ଶହେ ନବେ ପାଉଣ୍ଡ ଓଜନର ଭଦ୍ରମହିଳାଙ୍କ ଘରେ ତାଙ୍କ ନାତି ନାତୁଣୀମାନଙ୍କର ଗଭର୍ଣ୍ଣେସ ହିସାବରେ ମାଳମା ପାର୍ଟ ଟାଇମ ଚାକିରି କରୁଥିଲା, ତାଙ୍କୁ ଦିନେ ଜନ୍ ଆସିବା ପରେ ଦୁଇଘଣ୍ଟା ପାଇଁ ସେ ସାହାଯ୍ୟ କରିଥିଲା । କାରଣ ଭଦ୍ରମହିଳାଙ୍କ ଦେହରେ ଏତେ ମାଂସ ଯେ, ଶୋଇ ଶୋଇ ଗୋଡ଼ ସେ ଟେକି ପାରନ୍ତିନି ଏବଂ ଏଥିରେ ମାଳମାର ପାରିଶ୍ରମିକ ଥିଲା ପାଞ୍ଚଶହ ଟଙ୍କା ଏବଂ ଆଲୁଳାୟିତ ଭଦ୍ରମହିଳାଙ୍କୁ ଏକାକିନୀ କରି ଜନ୍ ବାହାରିଯାଉଥିବା ମୁହୂର୍ତ୍ତିରେହିଁ ପାଞ୍ଚଟିଯାକ ନୋଟ ତା' ହାତରେ ଧରାଇଦେଇ ସେ ମିନତି କରିଥିଲା, ଦେଖନ୍ତୁ ଆପାତତଃ ମୋ ପାଖରେ ଆଉ ଅଧିକ ନାହିଁ । ତେଣୁ ଏଇଥିରେ…

ଆଃ, ଏହି ବିରକ୍ତିକର ସିଚୁଏସନ୍‌ଟିକୁ ହତ୍ୟାକରାଯାଉ । ଏଇ ଡିସେମ୍ବରର ଏଇ ଶୀତ ରାତିରେ ନୀଳିମାକୁ ଖୋଜି କିଏ ମିଳିବ ଅଭିଜିତ୍‌କୁ ? ତାର ବନ୍ଧୁମାନେ ତ ଅନେକଥର ତାକୁ କହିଛନ୍ତି—ନୀଳିମା ଭଳି ଝିଅକୁ ବଧୂ କରାଯାଇପାରେ ନା । ଏବଂ ତାଙ୍କର ବାକ୍ୟ ଫଳିଛି । ଅତଏବ ସିଗାରେଟ୍‌ର ଧୂଆଁରେ ନୀଳିମାକୁ ଅସ୍ପଷ୍ଟ କରି ଦିଆଯାଉ ।

କିନ୍ତୁ ତାକୁ ନୀଳିମା ଗ୍ରହିଲାନି କାହିଁକି ? ପୌରୁଷ ଏବଂ ମୋଟା ବ୍ୟାଙ୍କ୍ ବ୍ୟାଲାନ୍‌ସ ସତ୍ତ୍ୱେ ଜନ୍ ଭଳି ଏକ ତୃତୀୟ ଶ୍ରେଣୀର ବ୍ୟବସାୟୀଠାରୁ ପରାଜୟ ସ୍ୱୀକାର କଲା କାହିଁକି ?

ସବୁ ପ୍ରଶ୍ନର ଉତ୍ତର ଖୋଜାଯାଏ ନା···ଖୋଜିଲେ ମଧ୍ୟ ମିଳେନା । ଏ ଶତାବ୍ଦୀର ଏଇଟା ହିଁ ସବୁଠୁ ବଡ଼କଥା । ଯେମିତି ହିଥ୍ ଓ ସ୍ମିଥ୍‌ର ସଂପର୍କ । ସେମିତି ଆମେରିକାର ଚନ୍ଦ୍ର ଯାତ୍ରା । ନିଜକଥା କହିବାକୁ କେହି ପ୍ରସ୍ତୁତ ନୁହେଁ । ହୁଏ ତ କହିଲେ ମଧ୍ୟ ଏଟମ୍ ବମର ଇଲେକ୍ଟ୍ରୋ-ଉଏଭ୍ ଦେଇ ତାହା ଅନ୍ୟକୁ ଶୁଣାଯାଉନି ବା ଭୁଲ ଶୁଣାଯାଉଛି । ହୁଏତ ଏମିତି ବି ହୋଇପାରେ, ନ କହି ମଧ୍ୟ ଜଣେ ଅନ୍ୟକୁ ନିଜ କଥା ବେଶ୍ ବୁଝାଇ ଦେଇ ପାରୁଛି । ଅସମ୍ଭବର ଯୁଗ ଅନେକ ଦିନରୁ ଅତିକ୍ରାନ୍ତ ହୋଇ ଯାଇଛି । ହାର୍ଟ ଟ୍ରାନ୍‌ସପ୍ଲାଣ୍ଟେସନ ବିନା ଇଥରରେ ଟ୍ରାନସମିସନ ଭଳି ଏ ବି ଅତ୍ୟାଶ୍ଚର୍ଯ୍ୟ ବସ୍ତୁ ନୁହେଁ ।

ଅନେକଦିନ ପରେ ଏ ଶତାବ୍ଦୀ କଥା ଚିନ୍ତା କରୁଛି ଅଭିଜିତ୍ । ଶତାବ୍ଦୀର ଷଷ୍ଠ ଦଶକରେ ବେଶ ମୋହଗ୍ରସ୍ତ ଥିଲା ସେ । ବେଶ୍ ଦ୍ୟୁତିସ୍ୱର ସେ ବଢ଼ାଇ ଚାଲିଥିଲା । ସମାଜର ବେଶ୍ ଶବବାହକ ସାଜି ଥିଲା ।

ବୋଉ ଆସୁଛି । ଅନେକ ଦିନ ପରେ କଦମ୍ବ କେତକୀ ଫେରୁଛି । କେବେ ଫୁଟେ କଦମ୍ବ ! ଏଇଟା ଡିସେମ୍ବର । ଏଇ ଋତୁରେ କଦମ୍ବ ଫୁଟେନାହିଁ ନିଶ୍ଚୟ । ତେବେ...ତେବେ । ବୋଧହୁଏ ଆଷାଢ଼ କି ଶ୍ରାବଣରେ । ଜାନୁଆରୀ ଫେବୃଆରୀର ଫର୍ମୁଲାରେ ଆଷାଢ଼ ଶ୍ରାବଣ ଆସୁନାହିଁ । ନ ଆସୁ । ଜାନୁଆରୀର ଫର୍ମୁଲାରେ ତାକୁ ଆଣିଲେ ହୁଏତ ଖାଲି କଦମ୍ବ ଆସିବ, ତାର ରୋମାଞ୍ଚ ନୁହେଁ ; କେତକୀ ଆସିବ, ତାର ସୁରଭି ନୁହେଁ । ଅଭିଜିତ୍‌ର କଦମ୍ବର ରୋମାଞ୍ଚ ଆଉ କେତକୀର ସୁରଭି ଆବଶ୍ୟକ । ତାର ଆବଶ୍ୟକ ତାର ବୋଉ । ନ ହେଲେ ଅନ୍ତତଃ ତା ଭୁନି ବୋଉର ଗ୍ରୁପ୍‌ଫଟିଏ । ସେ ସୁରଭି ହେଉ, କେତକୀ ହେଉ ବା ମାଳା ହେଉ ।

ଆଃ, ନିଶାଖୋର୍ ପୃଥିବୀ, ମଦୁଆଲି ଶତାବ୍ଦୀ । ରଘୁପତେ ! କ୍ୱଗତୋତ୍ତର କୋଶଳ, ଯଦୁପତେ !···ହାୟ ! ହତଭାଗା ଯାଦବ ଗଣ ! ବେଶ୍ ଉର୍ମି ଗର୍ଭବତୀ ସାଜିଥିଲା ।

ମର୍କରୀରେ ଚକ୍ ଚକ୍ କରୁଛି, ପ୍ଲାଟଫର୍ମ କାନ୍ଥରେ ଆଲ୍‌କାତରାର ସ୍ଲୋଗାନ୍, ଜ୍ୟୋତି ବିରଲା ଜାଇ ଜାଇ··· । ଆଃ, ମୋଷ୍ଟ୍ ଟ୍ରେଚରସ୍ ସେଞ୍ଚୁରୀ ।

କାହାକୁ ବିଶ୍ୱାସ ଦେଇନି ଏ ଶତାବ୍ଦୀ । ଏ ଶତାବ୍ଦୀ, ସେଇ ହତଭାଗା ଯାଦବଗଣଙ୍କ ପରି ଏକ ଭମି ସ୍ୱାଧୀନତା ହୁଏତ ଦେଇଛି । ଆଉ କିଛି ଦେଇଛି ।

ମାଟିର ମଣିଷ କାଳନ୍ଦୀ । ସେଥିପାଇଁ ହୁଏତ ସେ ମାଟିର କଥା ବେଶି କହିପାରନ୍ତି । ଏଇ ମାଟି ସୁରାଜ୍ୟ କହିଲେ କଣ ବୁଝିଥିଲି, ସେଇ ପ୍ରାକ୍ ସ୍ୱାଧୀନତା ଯୁଗରେ ? ପୋଲିସ୍ ରାଜ ରହିବ ନାହିଁ, କୋର୍ଟ୍ କଚେରି ଉଠିଯିବ । କିନ୍ତୁ··· । ଏ ଶତାବ୍ଦୀ ଭସ୍ମଙ୍କର ବିଶ୍ୱାସଘାତକ ।

ଅଭିଜିତ୍ ଘୂରୁଛି । ଆରମ୍ଭରୁ ଶେଷ । ଶେଷରୁ ଆରମ୍ଭ ।ଥିଏଟର, କ୍ଲବ୍, ଟ୍ରେଡ୍ ଇଉନିୟନ୍ ଅଫିସ । ଘୋଡ଼ା ବଳଦ, ଦାଆ ହାତୁଡ଼ି । ଗଙ୍ଗାଜଳ, vat-69 । ପିଙ୍କାରୁ ଷ୍ଟେଟ୍ ଏକସପ୍ରେସ । ଡାଲିଆରୁ କଦମ୍ବ । ବୁଗେନ୍ ଭେଲିଆରୁ ବାରଗଡ । ମିସେସ୍ ଶର୍ମାଠାରୁ ତାର ସ୍ୱାମୀ ବୋଉ । ପାର୍ଲାମେଣ୍ଟରୁ ପଞ୍ଚାୟତ ଅଫିସ ।

ଆଃ ! ସବୁ ଆସୁଛି ଆଉ ଯାଉଛି । କିନ୍ତୁ ସ୍ଥିର ଗୋଟିଏ ମଣିଷ । ସେ କଙ୍କାଳ ସର୍ବସ୍ୱ, ମାଂସହୀନ । ବଡ଼ ଟାଣୁଛି । ହାତମୁଠା । କାନ୍ଦୁଛି, ଚିତ୍କାର କରୁଛି ବିଶ୍ୱାସଘାତକ କୁକୁର ଦଳ; ହାତୀ ଦେବ ଘୋଡ଼ା ଦେବ କହି ପେଁକାଳି ବଜାଇଲ । କିଛି ଦେବା ତ ଦୂରର କଥା, ଖାଲି ପେଁକାଳି ବଜାଇ ବଜାଇ ଏଇ ହାଡ଼ ରଖିଛ । ଏଇ ହାଡ଼ ଦିନେ କଥା କହିବ । ଅପେକ୍ଷା କରିବ ? ସେ ସାହସ ଅଛି ?

କେଁ କେଁ···ଢକଟ ଚିତ୍କାର । ଟ୍ରେନ୍ ଆସିବା ଓ ଯିବାର ହୁଇସିଲ୍ ।

ଦ୍ରୁତଗତିରେ ଫେରି ବୁଲୁଛି ପ୍ଲାଟଫର୍ମ, ଷ୍ଟେସନ୍, ତାର ମର୍କରି ଲାଇଟ୍-ମାନେ । ପଳାୟନ ପନ୍ଥୀ ଷ୍ଟେସନ ମାଷ୍ଟରର ବନ୍ଧୁଗଣ । ସିଗାରେଟ୍ ଧୂଆଁ । ମାଲମା, ମିସେସ୍ ଶର୍ମା । ରମ୍, ଭୋଦ୍‌କା । ବିଶ୍ୱାସଘାତକ ସବୁ ଜମକ୍ ହାସ୍ୟରସ୍ ।

ଅନ୍ତରଙ୍ଗ ସେଇ ମଣିଷ, ସେଇ ମାଂସହୀନ, କଙ୍କାଳ ସର୍ବସ୍ୱ ମଣିଷ । ଅଭିଜିତ, ଅଭିଜିତ୍ ! ଏଇ କଦମ୍ବ ଆସୁଛି, କେତକୀ ଆସୁଛି ।

ରକ୍ତିମ ସୂର୍ଯ୍ୟ, ଶ୍ରକେଟର ପ୍ରତିବେଧକ ଅଲ୍‌ଟ୍ରା ଭାଓଲେଟ୍ । Welcome the rising sun ! Happy Birthday to you !!



# ସମୁଦ୍ର ଅଜଗର ଓ ମୁଁ

● ଶ୍ରୀ ଅକ୍ଷୟ କୁମାର ମିଶ୍ର

ମୁଁ ଏକ ସୁପ୍ତ ଆଗ୍ନେୟଗିରି (!)

ମୋ ଦେହର ଝରଣା ଆଜି ସବତ୍ ବିହୀନ । ମୋ ଭିତରେ ଦାରିଦ୍ର୍ୟର ସଲାପ : ଖୁବ୍ ଆତ୍ମିକ; ଖୁବ ନିଜସ୍ୱ । ମୋଠି ଆଜି ସାଗରର ମନ୍ଥନ; ଅନ୍ତଃସ୍ରୋତର ଦହନ । ମୋ ମନର ଫୁଟପାଥରେ ସ୍ୱପ୍ନର ପ୍ରଜ୍ଞା : ମୂର୍ଚ୍ଛିତ !

ସମ୍ପ୍ରତି ମୁଁ ଗୋଟାଏ ବେକାର ଗୋଷ୍ଠୀ ସହ ସାମିଲ ହେବାପାଇଁ ଯାନ୍ତ୍ରିକ ମହାବିଦ୍ୟାଳୟର ମୁଦ୍ରାକାରଖାନାରେ ସନ୍ତୁଷ୍ଟ ।

ସମାଜରେ ବଞ୍ଚିବା ଭଳି ସ୍ୱଚ୍ଛଳତା ଦିନେ ମୋ ପିତାଙ୍କର ଥିଲା । ହେଲେ ସେ ଖୁବ ଶାନ୍ତ, ସରଳ ଅମାୟିକ ଥିଲେ, ତେଣୁ ତାଙ୍କର ସରଳତାର ସୁଯୋଗ ଯେ ସମାଜ ନେଲା । ତାଙ୍କର ଉପରେ ଶଠତାର ସମସ୍ତ ପରୀକ୍ଷା ନିରୀକ୍ଷା ସମାଜ ପ୍ରୟୋଗ କରି ଚାଲିଲା—ସେଥିରେ ସେ ଶୀକାର ହେଲେ । ସେ କ୍ରମଶଃ ପରିବାର ପ୍ରତିପୋଷଣ କରିବାକୁ ଅସମର୍ଥ ହେଲେ । ସେଇ ଅସାମର୍ଥ୍ୟର ଦୁଶ୍ଚିନ୍ତା ତାଙ୍କୁ ପାଗଳ କଲା—ଆଉ ତାଙ୍କର ସମସ୍ତ ସମ୍ପତ୍ତି ଏହି କ୍ରମ ସନ୍ଧିକ୍ଷଣରେ ହୃତ ହେଲା—ଯେ' ହେଲା ମୋ ପିଲାଦିନ କଥା ।

ଆମେ ସବୁ ବଡ଼ ହେଲୁ । ଉପଯୁକ୍ତ ଖାଦ୍ୟାଭାବର ଉତ୍କଣ୍ଠା ଆମ ପରିବାର ଭିତରକୁ ରୋଗର ସାଦର ଅଭ୍ୟର୍ଥନାର ନିମନ୍ତ୍ରଣ କଲା । ପିଲାମାନେ ସମସ୍ତ ପ୍ରକାର ଶିକ୍ଷାରୁ ବଞ୍ଚିତ ହେଲେ । ସମାଜ ଲାଞ୍ଛନାର ଯାବତୀୟ ସଂଭବ ଅସ୍ୱଚ୍ଛଳତା ରେ ସେମାନେ ପଙ୍ଗୁ ହେଲେ । ଆମ ଘରେ ରୋଗ ବଇଠକଖାନା ଆରମ୍ଭ କଲା ।

ମୋ ଆତ୍ମୀୟ ସ୍ୱଜନ ଡାକ୍ତରବାବୁ : ଘରକୁ ଘର ଲାଗିଛୁ; ମା'ଙ୍କ ଦେହ ଖରାପ । ପାଞ୍ଚ ଟଙ୍କା ପ୍ରବେଶିକା ଫିସ । ଡାକ୍ତରଙ୍କ ଭ୍ରାକ୍ ବରଣୀ ଯୋଗାଇବା କ୍ଷମତାରୁ ଆମେ ଆଜି ବଞ୍ଚିତ; ତେଣୁ ଡାକ୍ତରଙ୍କ ସୁଜନତା ଲଭ କରିବାକୁ ଆମେ ଆଜି ଅଲଗା ।

ଘରେ ଚାରିଚାରିଟି ଭଉଣୀ ; ସମସ୍ତେ ବିବାହଯୋଗ୍ୟା । ସେମାନଙ୍କୁ ଯୌତୁକ ସଂଗ୍ରହ ଦେଇ ବିବାହ ଦେବା ସଂଭବ ହେଉନି—ସେମାନେ ମୋ ମୁହଁକୁ ଚାହିଁ ବସିଛନ୍ତି । ସାନଟିଇ ଦରସିଆଁ ପର୍ଯ୍ୟନ୍ତ ପିଲ ପ୍ରାଥମିକ ବିଦ୍ୟାଳୟ ଭିତରେ

ପ୍ରବେଶ କରିବାକୁ ଲଜ୍ଜା ବୋଧ କରୁଛି । ସେ ଅନ୍ୟ ପିଲାମାନଙ୍କର ହାସ୍ୟରେ ଶରବ୍ୟ ହେବନି—ତା'ର ଆତ୍ମାଭିମାନ ଅଛି । ଦେଶ ଦୀର୍ଘ ପଚିଶ ବର୍ଷ ହେଲା ସ୍ୱାଧୀନତା ପାଇଲାଣି । ସମାଜବାଦର ସ୍ୱର ଭିତରେ ଦାରିଦ୍ର୍ୟର ସଂଗୀତ ଆଉ କେଇଦିନ ଗାଇ ହେବ ?

ବାପା ନ' ବର୍ଷ ତଳେ ପଞ୍ଚଷଠି ଟଙ୍କାର ସରକାରୀ ଚାକିରୀ କରିଥିଲେ ପାଗଳାମିରୁ ଭଲ ହେବା ପରେ । ଆଶାଥିଲା ଘରର ପରିସ୍ଥିତି କିଛିଟା ଆୟତ୍ତ ହେବ...ସୁଧୁରିବ; ହେଲେ ସେ ଛଟେଇ ହେଲେ ଗାଁ ଲୋକଙ୍କ କୁପ୍ରଚାରଣା ଫଳରେ ଓ ଉପରିସ୍ଥ ହାକିମ କର୍ମଚାରୀଙ୍କୁ ପଇସା ଲାଞ୍ଚ ଦେଇ । ଏ ଦରିଦ୍ର ପରିବାର ଝିଅର ଅନ୍ତଃସତ୍ତ୍ୱା ହେଲା । ଶଯ୍ୟା ଗ୍ରହଣ କରି କେତେ ଚାଲିଗଲେ । ଉପରିସ୍ଥ ହାକିମଙ୍କୁ ପୁନର୍ନିଯୁକ୍ତି କରିବା ଲାଗି ଅନୁନୟ ବିନୟ ଭିତରେ ବରଂ ଆଉ କିଛି ଶ୍ରାଦ୍ଧ ହେଲା ; ହେଲେ କିଛି ଫଳ ମିଳିଲାନି ।

ସରକାରୀ ବେସରକାରୀ ସମସ୍ତ ସାହାଯ୍ୟ ନେଇ ତଥା ଘରୋଇ ଟ୍ୟୁସନ୍ ଧରି ଦୈନିକ ପେଟର ୧।୩ ଅଂଶ ପୂରଣ ଅପୂରଣ ରଖି ଉଚ୍ଚକୁ ଉଠିବା ଆଶାରେ ମୁଁ ଯେଉଁ ଯାନ୍ତ୍ରିକ ବିଦ୍ୟା ପଠନରେ ପାଦ ଦେଲି, ତା'ର ଚାହିଦା ହଠାତ୍ କମିଲା । ସମାଜ ମୋ ପାଠ୍ୟ ପ୍ରତି ନାକ ଟେକିଲା—ମୁହଁ ବୁଲାଇଲା ।

ମୋର କେନ୍ଦ୍ରୀୟ ସରକାରୀ ପାଠ୍ୟକ୍ରମ ଋଣର ପୁନର୍ଦାଖଲ ନିମନ୍ତେ ଏକ ଏକ ଦାବୀପତ୍ର କେବେଠୁଁ ମୋ ଉପରେ ତାଗିଦର ଘୋଷଣା ଜାରି କରିବା ଆରମ୍ଭ କଲାଣି । ଔଷଧର ଚିଠା ପ୍ରସ୍ତୁତ ।

ମାଂକୁ ଆଉ ଅବହେଳା କରି ହେବନି । ରୋଗ ଆମ ଦାରିଦ୍ର୍ୟ ମେଣ୍ଟିବାର ସମୟକୁ ପ୍ରତୀକ୍ଷା କରିଇ ପାରିବନି । ବାପାଙ୍କୁ କଟକ ଯିବାକୁ ପଡ଼ିବ—ଚାକିରୀ ଯୋଗାଇବାଲାଗି ପ୍ରତିଶ୍ରୁତି ଦେଇଥିବା ବାବୁଙ୍କୁ ସାକ୍ଷାତକାର ଦେବାକୁ ପଡ଼ିବ । ଭଉଣୀଟି ସି. ଟି. ସ୍କୁଲରେ ପଢ଼େ । ସେ ଯିବ—ତା'ର ଟଙ୍କା ଦରକାର । ସାନ-ଭାଇର ଇଂରେଜୀ ବହି ନାହିଁ । ଶିକ୍ଷକ ତା' ଉପରେ ଚୌକିର ଅବତାର ଦଣ୍ଡ ପ୍ରୟୋଗ କରୁଛନ୍ତି । ପ୍ରତିବର୍ଷ ପାଠ୍ୟ ତାଲିକା ବଦଳିବାରେ ଲାଗିଛି । ଲଜ୍ଜା ନିବାରଣ ଲାଗି ସମସ୍ତଙ୍କର ଖଣ୍ଡିଏ ଖଣ୍ଡିଏ ଦରକାର ; ଅନେକ ଦିନର ପୁରୁଣାଗୁଡ଼ିକ ଆବଶ୍ୟକତାଠାରୁ ଅଧିକ ଚିପୁଡ଼ି ହେଲେଣି । ଖାଇବାକୁ ଧାନ ନାହିଁ—ତାହା ଆବଶ୍ୟକତାର ଲିଷ୍ଟରେ ସର୍ବପ୍ରଥମ । ଟ ୧୫୦-୦୦ ଜମି ୨ ଗୁଣ ବନ୍ଧା । ଦାରିଦ୍ର୍ୟର ସ୍ୱର ସାମୟିକ ଲଭିବ !

ଅପରିଣତ ବୟସରେ ମୋ ମୁଣ୍ଡର ସମସ୍ତ କେଶ ଆଜି ବିଧବା—ବୃଦ୍ଧା । ମୋ ଭିତରେ ଆତ୍ମଦହନର ବହ୍ନି—ଅନ୍ତଃସ୍ରୋତ । ଆଗ୍ନେୟଗିରିର ସୁପ୍ତତା, ଦାରିଦ୍ର୍ୟର କରୁଣତା ଏବଂ ନିଜସ୍ୱ ସଂଳାପ ।

ମୋ ଆଖି ଆଗରେ ତଥାପି ଧୈର୍ଯ୍ୟର ସେତୁ । ପୃଥିବୀରୁ ଶେଷ ବିଦାୟ ନେବା ପର୍ଯ୍ୟନ୍ତ ବଞ୍ଚିବା ଲାଗି ଯୁଦ୍ଧ କରିବାର ପ୍ରୟାସ···ଆକାଂକ୍ଷା···ସଂଗ୍ରାମର ସାହସ ।

× × ×

ମୁଁ ନକସାଲ ନୁହେଁ , ବିଟଲ ନୁହେଁ, ହିପ୍‌ପୀ ସଂପ୍ରଦାୟର ନୁହେଁ , ମନ୍ତ୍ରୀ ନୁହେଁ , ଜବଣୀ ନୁହେଁ, ବଡ଼ ପଦସ୍ଥ କର୍ମଚାରୀ ନୁହେଁ , ସେକ୍ରେଟେରୀ ନୁହେଁ ବା କେନ୍ଦୁପତ୍ର ଠିକାଦାର ନୁହେଁ —ତେବେ ତମେ ମତେ ବାନ୍ଧିନେଉଛ କାହିଁକି ? ମୋର ଅପରାଧ ? ମୁଁ ମଣିଷ—ବଞ୍ଚିରହିବାର ସାମାନ୍ୟତମ ଅଧିକାରର ସ୍ୱତ୍ୱ ମୁଁ ଏଯାଏ ପାଇପାରିନି । ମୁଁ କ'ଣ ଚୋର ନା ତସ୍କର ? ତେବେ ମୋ ହାତରେ ଶୃଙ୍ଖଳ ପିନ୍ଧାଇ ମୋତେ କୁଆଡ଼େ ଟାଣୁଛ ? ଜେଲଖାନା ? ··ଓଃ ବୋମା ଫୁଟିବା ଅପରାଧରେ ମୁଁ ଦୋଷୀ ?

ମୁଁ ସତ କହୁଚି ଦାରୋଗାବାବୁ । ମୁଁ ଦେଶଦ୍ରୋହର କୌଣସି ଅନ୍ତଃକରଣରେ ଲିପ୍ତ ନୁହେଁ । ମା'ଙ୍କର ଦେହ ଭୀଷଣ ଅସୁସ୍ଥ । ଗାଁ ଡାକ୍ତରଖାନାରେ ଏ ଔଷଧ ମିଳିଲାନି । ସହର ଆସିଥିଲି । ହଠାତ୍······ !

'ଚୁପକର' ଦାରୋଗାଙ୍କ କର୍କଶ ସ୍ୱର ! ମୋ ଆଖିରେ ଅନ୍ଧପୁଟୁଳି । ମୋ ଆଗରେ ମୁଁ ଚୋର ? ଚୋର ପୁଲିସର ଖେଳ । ଅନ୍ଧପୁଟୁଳିର ଖେଳ ।

ମୋ ପକେଟରୁ କିଏ କ'ଣ କାଢ଼ି ନେଉଚି । ମୁଁ କେବଳ ଅନୁଭବ କରିପାରେ । ସେ' ସବୁ ଦେଖିବା ପାପ !

ଜେଲ ହାଜତ୍‌ରେ ଖଟ ଉପରେ ମୁଁ ଶାୟିତ : ଅଜଗର—ସତେ ଅବା ଏଯୁଗରେ ସହିବାର ଏକମାତ୍ର ଅବତାର !

ଆରପଟେ (ହାଜତ୍ ବାହାରେ) ମନ୍ତ୍ରୀଙ୍କ ଘର : ବିଭା ବାହାଘର । ସାନାଇ ବାଜୁଚି । ମୋ ଜୀବନ ସଙ୍ଗୀତର ସ୍ୱରଲିପି ତା' ସହ ପାଦମିଳାଇ କରୁଣତର ହୋଇ ଉଲୁସି ଉଠୁଚି । ମୋ ଭଉଣୀ ବିବାହଯୋଗ୍ୟା ! ଓଃ···!!

ବାହାରେ ନିରନ୍ନ ପଟୁଆରର ଶୋଭାଯାତ୍ରା । ଶବ୍ଦଶୁଭୁଛି—ସ୍ୱର ଶୁଭୁଚି । ସମାଜବାଦର ସ୍ୱର ।

ମୁଁ ସମୁଦ୍ର···ମୋ ଭିତରେ ଭାବନାର ଅନ୍ତଃସ୍ୱରର ଜୁଆର । ହତାଶାର ବେଲାଭୂଇଁରୁ ଲେଉଟି ପୁଣି ସିଏ ନିଜ ସହିତ ସାମିଲ ହୁଏ । ମୋ ଚାରିପଟେ ଜେଲ୍‌ର ପାଚେରୀ··ଅନ୍ଧକାରର ସୁଡ଼ଙ୍ଗ···ଅନ୍ଧକାରର ବଳୟ !



# ଆତ୍ମପ୍ରକାଶ

● ଶ୍ରୀ କହ୍ନେଇଲାଲ ଦାସ

ରାତିରେ ବା ଦିନରେ ଆଖି ବୁଜିଲେ ମୁଁ ଅଦ୍ଭୁତ ସ୍ୱପ୍ନସବୁ ଦେଖେଁ । ଦେଖେଁ କେଉଁଠି ମୁଁ ନଦୀରେ ବୁଡ଼ିଯାଉଛି, ନହେଲେ କୂଅରେ ଖସିପଡ଼ୁଛି ଅଥବା ନିଆଁରେ ଜଳିଯାଉଛି – କିନ୍ତୁ ମରୁନି । ସବୁ ସ୍ୱପ୍ନ ଭିତରେ ଦେଖେଁ ଜଣେ ଯେପରି କିଏ ମୋ ପାଖେ ପାଖେ ସବୁବେଳେ ଅଛି । ମୋତେ ଅନେକ କିଛି ପଚାରୁଛି, ବିବ୍ରତ କରୁଛି । କେତେବେଳେ ମୋତେ ବିପଦରୁ ଉଦ୍ଧାର କରୁଛି ପୁଣି କେତେବେଳେ ବିପଦ ମଧ୍ୟକୁ ଠେଲି ଦେଉଛି । ମୁଁ ଜାଣେ ସେ ପୃଥିବୀର କୌଣସି ମଣିଷ ନୁହେଁ ଯଦିବା ମଣିଷର ଚେହେରା ସହ ତାର ଅନେକ ସାମଞ୍ଜସ୍ୟ ଅଛି; ଅଥବା ସେ କୌଣସି ଅଶରୀରୀ ଭୂତପ୍ରେତ, ଦେବତା ଗନ୍ଧର୍ବ କିନ୍ନର ବି ନୁହେଁ । ମୁଁ ତାକୁ ଅନେକଥର ଦେଖିଛି । ଜୀବନରେ ବହୁତଥର ତା ସଂସ୍ପର୍ଶରେ ଆସିଛି । ଜୀବନର ଅନେକ ମୂହୂର୍ତ୍ତ ତାକୁ ଚିହ୍ନିବାପାଇଁ ଖର୍ଚ୍ଚ କରିଛି । କିନ୍ତୁ କାଲି ରାତିରେ ସେ ଅତର୍କିତ ଭାବରେ ମୋ ସାମ୍ନାରେ ଧରାପଡ଼ିଯାଇଛି । କାଲି ମୋ କୋଠରୀ ଅନ୍ଧକାର ଥିଲା । ଘରେ ମୁଁ ଏକା । ବାହାରେ ହଠାତ୍ ପାଦ ଶବ୍ଦ । ମୁଁ ଉତ୍କଣ୍ଠିତ ହୋଇ ଅପେକ୍ଷା କଲି । ମୋର ଠିକ୍ ମନେଅଛି କବାଟ ଭିତରପଟୁ ବନ୍ଦଥିଲା । କିନ୍ତୁ ସେ ଭିତରକୁ ପଶିଆସିଲା । ମୁଁ ଉଦ୍ବେଗରେ ସୁଇଚ୍‌କୁ ହାତ ବଢ଼ାଇଲି ।

କହ୍ନେଇ !

କିଏ ?

ଆଃ ଥାଉ, ଆଲୁଅ ଜଳାଅ ନାହିଁ ।

କାହିଁକି ?

ମୁଁ ଆଲୁଅକୁ ଭୟକରେ ।

କିନ୍ତୁ ତମେ କିଏ ?

ମୁଁ ! ତୁମେ ମୋତେ ଜାଣ ।

କାହିଁ ମନେପଡ଼ୁନି, ତୁମ ସ୍ୱର ତ କେବେ ଶୁଣିନି ।

ହୁଏତ ଭୁଲି ଯାଇଥିବ ।

ନା, ମୁଁ କିଛି ଭୁଲେନା । ସବୁ ମନେ ରଖେଁ ।

କିନ୍ତୁ ତୁମର ସେ କଥା ମନେ ଅଛି ତ ?

କେଉଁ କଥା ?

ସେଦିନ ସାଙ୍ଗମାନଙ୍କ ସହ ଦେଶୀ ଜନନ୍ତ, ଡିବିରି ଜଳୁଥିବା ଘୁଲିଆ ଘରେ ?

କନ୍ତୁ··· !

କିନ୍ତୁ ତୁମେ ପରା ତୁମ ମା'ଙ୍କ ପାଖରେ ଶପଥ କରିଥିଲ ?

ହଁ ।

ତଥାପି··· ?

ଖାଲି ବନ୍ଧୁମାନେ ଜିଦ୍ କଲେ ବୋଲି ।

ବାଃ, ସାବାସ୍ !

ଆଉ ଗୋଟିଏ କଥା ତୁମର ମନେ ଅଛି ?

କେଉଁ କଥା ?

ସେ ଦିନ ରାତିରେ··· ?

ମନେପଡ଼ୁନ ତ !

ସେ ହାଇଓ୍ୱେ ପୋଲ ପାଖରେ···

ନା, ମୁ କିଛି ଜାଣେ ନ ।

କନ୍ତୁ ମୁଁ ଯେ ଜାଣେ ।

କଣ ?

ହିମନକୁ କାହିଁକି ଦଶଟଙ୍କା ଦେଇଥିଲ ?

ତାର ଅଭାବ ଥିଲା ବୋଲି ।

ତାର ଅଭାବ ନା ତୁମର ଅଭାବ ?

ତାର ।

ନା, ତୁମର ବେଶୀ ଅଭାବ ଥିଲା, ଏକ ନାଗ୍ନ ଦେହର ।

ଚୁପ··· !

ଆଃ, ରାଗି ଲାଭ ନାହିଁ । ଆଚ୍ଛା, ଆଉ ଗୋଟିଏ କଥା ପଚାରିବ ?

କଣ ?

ତୁମେ ତ ଅନେକ ତତ୍ତ୍ୱ ଜାଣ ?

କାହିଁକି ?

ସ୍ନେହ କରିବା ପାପ ନୁହେଁ ?

ହଁ ।

ତୁମେ ତ କେବେ ସ୍ନେହ କରନ ?

ନା ।

ଓହୋ, ସେ ଦିନ ତୁମର ଅସ୍ତ୍ରବ ଥିଲ ବୋଲି ସାଙ୍ଗର ସୁନା ମୁଦିଟା ନେଇ ଚମ୍ପଟ ଦେଲ ?

ମୁଁ ତୁମଂର କିଛି କଥା ଶୁଣିବାକୁ ଚାହେଁନା ।

କିନ୍ତୁ ମୁଁ ଯେ ସବୁକଥା ନ ଶୁଣାଇଲେ ଯିବନି ।

ମୁଁ ଯଦି ନ ଶୁଣେ···

ତୁମେ ପ୍ରୀତିକୁ ଚହ୍ନିଛ ?

ଚହ୍ନିଲି ତ କଣ ହେଲା ?

ରେଜକୁ ?

ହଁ ।

ତୁମେ ପ୍ରେମ କରୁଛ ?

ହଁ, କାହିଁକି ?

କାହାକୁ ?

ରେଜକୁ ।

କିନ୍ତୁ ପ୍ରୀତି ?

ତାକୁ କେବଳ ଚହ୍ନେ ।

ସେ କିନ୍ତୁ ତୁମକୁ ଭଲପାଏ ।

ମୁଁ ପାଏ ନାହିଁ ।

ମିଛ !

ସତ !

ତେବେ ସେଦିନ କାହିଁକି ଭଲପାଅ ବୋଲି ତାକୁ ବାରମ୍ବାର କହୁଥିଲ ?

ମୁଁ କିଛି ଜାଣେ ନା ।

କିନ୍ତୁ ତୁମେ ତାର ସ୍ନାୟୁଗ୍ରନ୍ଥୀର ଦୁର୍ବଳପକୁ ଭଲକରି ଜାଣ ।

କିନ୍ତୁ ଏତେକଥା କହିବାକୁ ତୁମେ କିଏ ?

କହିଲିପରା ମୁଁ । ତୁମେ ଯାଉଛ ?

ହଁ ।

ଆଉ ଗୋଟିଏ କଥା ପଚାରିବ ?

ନା, ମୁଁ ଆଉ କିଛି ଶୁଣିବାକୁ ଚାହେଁନା ।

ଏଇଟା ମୋର ଶେଷ କଥା ।

କଣ ?

ଦେବୀ କିଏ ?

ମୋ ଭଉଣୀ ।

ମାଉସୀ ଝିଅ ?

ହ ।

ବିବାହିତା ?

ହଁ ।

ତୁମେ ତାର ସ୍ୱାମୀର ମୃତ୍ୟୁ କାମନା କର ?

ଝପଟ ବାଜେ କଥା ।

କିନ୍ତୁ ଏହା ଯେ ଅନ୍ଧକାର ଭଳି ସତ୍ୟ ।

ଚୁପ୍ ଇଡ଼ିୟଟ ! ମୁଁ ତୋତେ ଏଇନେ ଖୁନ୍ କରିବି ।

ହାଃ ହାଃ ହାଃ ହୁଃ ହୁଃ ହୁଃ ହୁଃ ହୁଃ···

ଛାୟାମୂର୍ତ୍ତି ପଛକୁ ବାଙ୍କିଯାଇ ଖୁବ୍ ଜୋରରେ ହସିଲା । ମୁଁ କ୍ରମେ ଅସହ୍ୟ ହୋଇଉଠିଲି । ବିଛଣା ଉପରୁ ଗୋଟିଏ ବହି ଉଠାଇଆଣି ତା' ଆଡ଼େ ଫିଙ୍ଗିଲି । ତଥାପି ଘରସାରା ତାର ସଂକ୍ରାମକ ହସର ସ୍ରୋତ । ମୁଁ ଏଥର ବିଛଣା ଛାଡ଼ି ଉଠି ତା' ଉପରକୁ ଡ଼ିଆଁଟିଏ ମାରିଲି । କିନ୍ତୁ ନିଷ୍ଫଳ । ସେ ସେତେବେଳେ ଆରାମରେ ଚେୟାର ଉପରେ ବସି ହସୁଥିଲା । ମୁଁ ଚେୟାର ପଛଆଡ଼େ ଯାଇ ମୋର ହାତମୁଠାକୁ ଶକ୍ତକରି ତା' ମୁଣ୍ଡ ଉଦ୍ଦେଶ୍ୟରେ ବକସିଂଟିଏ ଗୁଣ୍ଡ଼ିଲି । କିନ୍ତୁ ତାର କିଛି ହେଲାନାହିଁ । କେବଳ ମୋ ହାତଟା ଚେୟାରରେ ବାଜି ଫାଟିଗଲା, ରକ୍ତ ବହିଲା । ତା' ପରେ ତାକୁ ଦେଖିଲି ଝରକା ପାଖରେ । ଧରିବି ବୋଲି ଗୋଡ଼ାଇଲି, କିନ୍ତୁ ପାରିଲି ନାହିଁ । ଶେଷରେ ତକିଆତଳୁ ରିଭଲ୍ଭର ବାହାର କରି ତାର ଖପୁରିକୁ ଲକ୍ଷ୍ୟକରି ଛ'ରାଉଣ୍ଡ ଗୁଳି ଫୁଟାଇଲି । ତଥାପି ସେ ନିର୍ବିକାରଭାବେ ହସୁଥିଲା । ଶୀଘ୍ର ଯାଇ ସୁଇଚଟା ଅନ୍ କରିଦେଲି । ସେ ଚଟ୍ କରି ମୁହଁ ଫେରାଇନେଲା । ଗୋଟାଏ ମୁହୂର୍ତ୍ତ ପାଇଁ ତାର ମୁହଁ ଦେଖି ମୁଁ ଅବାକ୍ ହୋଇଗଲି । ଏହାକୁ ଯେପରି କେଉଁଠି ଦେଖିଛି ! ଥରେ ନୁହେଁ ଅନେକଥର । ମୁଁ ତାକୁ ଧରିବା ପୂର୍ବରୁ କବାଟ ଖୋଲି ବାହାରକୁ ପଳାଇଲା । ତାକୁ ଅନୁସରଣ କରି ଦେଖିଲି କ୍ରମେ ଫାଟକ ପାରିହୋଇ ଖୁବ୍ ଅଳ୍ପସମୟ ମଧ୍ୟରେ ଅନ୍ଧକାରର ଉପତ୍ୟକା ମଧ୍ୟରେ ହଜିଗଲା ସେ । ମୁଁ ମୋ ଶୋଇବା ଘରକୁ ଫେରିଆସି ଦେଖିଲି ମୋ' ଘର ସାରା କେବଳ କାଚ ଟୁକୁରା, ଆଉ ଧ୍ୱଂସାବଶେଷର ଚିହ୍ନ । ଛରାଉଣ୍ଡ-ଯାକ ଗୁଳି କାନ୍ଥରେ ଟଙ୍ଗାହୋଇଥିବା ମୋର ଫଟୋର କପାଳରେହିଁ ବାଜିଥିଲା ।

କାନ୍ଥରୁ ଭଙ୍ଗା ଫଟୋଟିକୁ ତଳକୁ ଓହ୍ଲାଇଆଣି ମୁଁ ଅସମ୍ଭବଭାବେ ଚମକି ପଡ଼ିଲି । କାରଣ ରାତିର ଆଗନ୍ତୁକସହ ଏ ଫଟୋର ଯଥେଷ୍ଟ ସାମଞ୍ଜସ୍ୟ ଅଛି ।



: ପ୍ରବଣା କ'ଣ ରାଜି ହେଲା ?

ମୁଁ କହିଲି ।

ସେ ଏକ ଦୀର୍ଘଶ୍ୱାସ ନେଇ କହିଲା, ହଁ, ସେ ରାଜି ହେଲା ଏବଂ ସେ ପାହାଡ଼ ତଳରେ ପହଞ୍ଚି ସାରିଲା ପରେ ସୁକାନ୍ତ ଅଦମ୍ୟ ତାରୁଣ୍ୟ ତାଡ଼ନାରେ ଯେତେବେଳେ ପ୍ରବଣାକୁ କୋଳରେ ଭିଡ଼ି ଆଣିବାକୁ ଅଗ୍ରସର ହୁଏ ସେ କ'ଣ କହିଲା ଜାଣିଛ ?



# ଗଳ୍ପ ଅନ୍ୟ ନାୟକର

॥ ଅଧ୍ୟାପକ ଧ୍ରୁବ ଖୁଣ୍ଟିଆ ॥

ଏଇ କଲେଜକୁ ଅଳ୍ପ କେତେଦିନ ହେଲା ନୂଆ ବଦଳି ହୋଇ ଆସିଥିବା ଅଧ୍ୟାପକ ସମୀର ମହାନ୍ତି ମୋତେ ଏକ ଅଳସ ସନ୍ଧ୍ୟାରେ ହଠାତ୍ ଅନୁରୋଧ କଲେ ଏଠାରୁ ଦୁଇ-ତିନି ମାଇଲ ଦୂର ଏକ ପାହାଡ଼ିଆ ନିର୍ଜନ ରାସ୍ତାରେ ସାନ୍ଧ୍ୟ-ଭ୍ରମଣ ପାଇଁ ।

ମୁଁ ଏ ନିମନ୍ତ୍ରଣରେ ପ୍ରଥମେ ବିସ୍ମିତ ହୋଇ ଉଠିଲି । କାରଣ ସମୀର-ବାବୁଙ୍କ ସହିତ ମୋର ସେତେ ଘନିଷ୍ଠ ପରିଚୟ ହୋଇନାହିଁ କି ସାମାନ୍ୟ ମାତ୍ର ବି ଆନ୍ତରିକତା ଜମି ନାହିଁ ; ଅଥଚ ଏତେ ବନ୍ଧୁ ଥାଉ ଥାଉ ସେ ମୋତେ ତାହାଙ୍କ ଅନୁରୋଧ କରୁଛନ୍ତି ? ଯାହାହେଉ ଜଣେ ସହକର୍ମୀଙ୍କ ଅନୁରୋଧ ଏଡ଼େଇବା ଏତେ ସହଜ ନୁହେଁ । ପୁଣି ସମୀରବାବୁଙ୍କ ସହ ଏକାନ୍ତରେ ମିଳିବା ପରେ ସେ ମୋ'ର ଜଣେ ବି ଅନ୍ତରଙ୍ଗ ବନ୍ଧୁ ହୋଇପାରନ୍ତି !

ମୁଁ ଗଲି ।

ପୂର୍ବଦିଗରେ ସେତେବେଳକୁ ପୂର୍ଣ୍ଣିମା ଜହ୍ନ ହସି ହସି ଉଇଁ ଆସୁଥାଏ । ଜ୍ୟୋତ୍ସ୍ନାର ଶୁଭ୍ରରେଣୁ ସହ ଗୋଧୂଳିର ସ୍ୱର୍ଣ୍ଣରେଣୁ ମିଶି କପରି ଏକ ଅପୂର୍ବ ସ୍ୱପ୍ନିଳ ପରିବେଶ ସେ ନିର୍ଜନ ପ୍ରଦେଶରେ ସୃଷ୍ଟି କରୁଥାଏ ।

ଉମିର ବାବୁଙ୍କସହ ଏମିତି ଏଣୁତେଣୁ କଥାବାର୍ତ୍ତା । କିନ୍ତୁ ସେ କଥାବାର୍ତ୍ତା ମଝିରେ ତାଙ୍କର ମନଖୋଲା ହସ, ପ୍ରୀତିପୂର୍ଣ୍ଣ ବାକ୍ୟାଳାପ—ସବୁ ଯେପରି ମୋତେ ତାଙ୍କର ଅନ୍ତରର ନିକଟରୁ ନିକଟତର କରିନେଉଥାଏ । ମୁଁ ମନ୍ତ୍ରମୁଗ୍ଧ ଭଳି କେତେବେଳେ ତାଙ୍କ ମୁହଁକୁ, କେତେବେଳେ ଜ୍ୟୋତ୍ସ୍ନା ପ୍ଳାବିତ ପାହାଡ଼ ଶିଖରକୁ ବା କେତେବେଳେ ପଶ୍ଚିମ ଦିଗରେ ଗୋଧୂଳିର ଆତ୍ମହତ୍ୟା ଦୃଶ୍ୟକୁ ନିରୀକ୍ଷଣ କରୁଥାଏ ।

ଏମିତି କିଛିବାଟ ଗଲାପରେ ସେ ହଠାତ୍ କଥା ବନ୍ଦକରି ଟିକଏ ଗମ୍ଭୀର ହୋଇ ପ୍ରଲୁବ୍ଧ ଦୃଷ୍ଟିରେ ପାଖ ପାହାଡ଼ ଶିଖରକୁ ଅନାଇଲେ ଏବଂ ଏକ ଗଭୀର ଦୀର୍ଘଶ୍ୱାସ ତ୍ୟାଗକରି ମୋତେ କହିଲେ, ଦାସବାବୁ, ଆଚ୍ଛା କୁହନ୍ତୁ ତ ଏ ପାହାଡ଼ଟା ଆପଣଙ୍କୁ କପରି ଦେଖାଯାଉଛି ?

ମୁଁ ପ୍ରଥମେ ଉମିରବାବୁଙ୍କ ଏ ଆକସ୍ମିକ ପ୍ରଶ୍ନରେ ଇତସ୍ତତଃ ହୋଇ ଉଠିଲି, କିନ୍ତୁ ପରେ କିଛି ମୁହୂର୍ତ୍ତ ଚିନ୍ତାକରି କହିଲି, ଏ ପାହାଡ଼ଟା ଏ ପାହାଡ଼ଟା ମୋ ଆଖିକୁ ଏକ ବୁଢ଼ା ଭିକାରୀର ଭଙ୍ଗା ପିଠିର କୁଜପରି ଦେଖାଯାଉଛି ।

ସତରେ ମୋ' ଉତ୍ତରରେ ସେ ସାଙ୍ଗେ ସାଙ୍ଗେ ଏକ ରହସ୍ୟ ଅଭିନେତା ପରି ହୋ' ହୋ' ହୋଇ ହସିଉଠିଲେ ଏବଂ ସେ ହସର ପ୍ରତିଧ୍ୱନି ସେ ପାହାଡ଼ ଘେରା ନିର୍ଜନ ନିକାଞ୍ଚନ ପ୍ରଦେଶରୁ ଝପଟି ଆସି ସେ ପରିବେଶକୁ କପରି ଭୟଙ୍କର କରିଦେଲା !

ମୁଁ ଏକ ଆଘାତପ୍ରାପ୍ତ ସୈନିକପରି ଅତି ସନ୍ତର୍ପଣରେ ପୁଣି ତାଙ୍କ ମୁହଁକୁ ଚାହିଁଲି । ତାଙ୍କ ମୁହଁରେ ସେହି ରହସ୍ୟ ହସ ଏବେ ବି ସେମିତି ଫାଟିପଡ଼ିଲାପରି ଜଣାପଡ଼ୁଛି, ଅଥଚ ସେ ହସ ବନ୍ଦ କରିସାରିଲେଣି । ମୋତେ କିନ୍ତୁ ଖୁବ ଭୟ ଲାଗିଲା । ମନକୁ ଯଥାସମ୍ଭବ ଦୃଢ଼ କରି ଅତିମତ ହୋଇ ପଚାରିଲି, ଆରେ ଆପଣ ଏମିତି ହସିଲେ କାହିଁକି ? କ'ଣ ମୋ' କଥା ଆପଣଙ୍କ ମନକୁ ଗଲାନାହିଁ ? ......ମାନେ ମୋ' ଉପମାଟା କ'ଣ ଆପଣଙ୍କୁ ଖରାପ ଲାଗିଲା ?"

ସେ ତାଙ୍କ ହସରେ ଯଥାସମ୍ଭବ ସ୍ୱାଭାବିକତା ଫୁଟାଇ···ମୁଁ ବୁଝୁଛି ଆପଣଙ୍କ କଥା । ଆପଣଙ୍କର ଦୃଷ୍ଟି କେବଳ ମଣିଷର ଉଦର କ୍ଷୁଧାପାଇଁ ନୁହେଁ ? ନ ହେଲେ ଏ ଖାଦ୍ୟ ସଙ୍କଟ ପରିସ୍ଥିତିରେ ଏ ପାହାଡ଼ଟା ଆପଣଙ୍କ ଆଖିକୁ ଏକ ବୁଢ଼ା ଭିକାରୀ-ପରି ଦେଖାଯାଆନ୍ତା କାହିଁକି ?

ମୁଁ ଆଉ କିଛୁ କହିବାକୁ ଯାଉଥିଲେ ବି ତାଙ୍କର ସେ ରହସ୍ୟାବୃତ ମୁହଁକୁ ଦେଖି ଶଙ୍କି ଗଲି । ସେ କହିଲେ, ମୋତେ ଯଦି ଆପଣ ଏ ପ୍ରଶ୍ନ ପଚାରିଥାନ୍ତେ ମୁଁ କ'ଣ କହିଥାନ୍ତି ଜାଣିଛନ୍ତି ?

: କଣ ?

: ଏ ପାହାଡ଼ଟା ଏକ ଆସନ୍ନପ୍ରସବା ରୁଗ୍ଣା ନାରୀର ସ୍ଫୀତ ଉଦର ପରି ଦେଖାଯାଉଛି ।

ମୁଁ ତମିରବାବୁଙ୍କ କଥାରେ କିପରି ଚମକି ପଡ଼ିଲି ପରି ହୋଇଗଲି ।

ତମିରବାବୁ ଏ ପାହାଡ଼କୁ ଏପରି ଦୃଷ୍ଟିରେ ଦେଖିବାମାନେ କ'ଣ ଥାଇପାରେ ?

କାହିଁକି ଏପରି ଏକ ଯନ୍ତ୍ରଣାଦାୟକ ବିଭତ୍ସ ଚିତ୍ର ଏ ପାହାଡ଼କୁ ଦେଖି ତାଙ୍କ ଆଖି ଆଗରେ ଭାସି ଉଠୁଛି ?

ସେ କିନ୍ତୁ ମୋ ଦ୍ୱନ୍ଦାତ୍ମକ ଭାବନାରେ ପୂର୍ଣ୍ଣଚ୍ଛେଦ ପକାଇ କହିଲେ, ଆପଣ କେବେ ପୁରୀ ଯାଇଛନ୍ତି ?

ଏ ଲୋକଟା ସତେ ପାଗଳ ନା କ'ଣ ? ମୁଁ ମନେ ମନେ ଭାବିଲି । କାହିଁ ଆସିଲବେଳର ସ୍ୱାଭାବିକ ହସଖୁସି, କାହିଁ ପାହାଡ଼, ଅନ୍ତଃସତ୍ତ୍ୱା ନାରୀ ପୁଣି ସାଙ୍ଗେ ସାଙ୍ଗେ ପୁରୀ ଦର୍ଶନ···ପ୍ରକୃତରେ ତାଙ୍କର ଏପରି ଖାପଛଡ଼ା ପ୍ରଳାପରେ ତାଙ୍କ ପ୍ରତି ମୋର ଯେଉଁ ସ୍ପଷ୍ଟ ଧାରଣା ସାଙ୍ଗେ ସାଙ୍ଗେ ରୁଗଣ ହେବାକୁ ବସିଲା ।

: ଆରେ ଆପଣ ଭାବୁଛନ୍ତି କ'ଣ ? ମୁଁ ପରା ପଚାରୁଛି, ଆପଣ କେବେ ପୁରୀ ଯାଇଛନ୍ତି ?

: ହଁ, ମୋ'ର ବିରକ୍ତିପୂର୍ଣ୍ଣ ଗମ୍ଭୀର ସ୍ୱର ।

: କେଉଁଥିରେ ? ମାନେ ଟ୍ରେନ୍‌ରେ ନା ବସ୍‌ରେ ?

: ସବୁଥିରେ ।

: ଆରେ ଆପଣ ଏପରି ବିରକ୍ତ ହେଉଛନ୍ତି କାହିଁକି ଦାସବାବୁ ? ମୋତେ କ୍ଷମା ଦେବେ ଆଜ୍ଞା । ଆଚ୍ଛା, ଆପଣ ଟ୍ରେନ୍‌ରେ ଗଲାବେଳେ ଖୋର୍ଦ୍ଧା ରୋଡ଼ ଷ୍ଟେସନ୍ ପରେ ବାଆଁ ହାତ ଏକ ପାହାଡ଼ ଦେଖିଛନ୍ତି ? ଯେଉଁ ପାହାଡ଼ ଉପରେ ଏକ ମନ୍ଦିର ଅଛି ।

: ହଁ, କାହିଁକି ?

: ସତ କହନ୍ତୁ ଦାସବାବୁ, ପ୍ଲିଜ୍, ସତ କହନ୍ତୁ । ସେ ନିକାଞ୍ଚନ ସ୍ଥାନଟି ଦେଖିଲେ ଆପଙ୍କେର ମନ କ'ଣ ହୁଏ ?

ମୁଁ ସେହି ପରିଷ୍କାର ଜ୍ୟୋତ୍ସ୍ନାଲୋକରେ ସହଜେ ବାରିପାରିଲି ତମିରବାବୁଙ୍କ ଦୁଇ ଆଖିରେ ଯେପରି ଲକ୍ଷ ଲକ୍ଷ ଯୁଗର ଅନୁନୟତା ଛଳ ଛଳେଇ ହୋଇ ଉଠୁଛି; ତାଙ୍କର ଏ ଅବସ୍ଥା ଦେଖି ମୁଁ ବ୍ୟସ୍ତ ହେଉଥିଲେ ବି କିଛୁ ଉତ୍ତର

ଦେବାକୁ ମନ ହେଉଥିଲେ ମଧ୍ୟ ତାଙ୍କ ପ୍ରଥମ ପ୍ରଶ୍ନର ଉତ୍ତର ଶୁଣିଲା ପରେ ସେ ହୋ' ହୋ' ହୋଇ ହସି ଉଠିବେ, ଏ ଆଶଙ୍କା ମୋ'ର ହେଲା । ହଠାତ୍ ଗୋଟାଏ କଥା ମୋ ମୁଣ୍ଡକୁ ଢୁକିଗଲା । ମୁଁ ହସ ହସ କଣ୍ଠରେ କହିଲି—ଆଚ୍ଛା ମୋତେ ପଚାରିବା ଆଗରୁ ଆପଣ ନିଜେ ଏ ପ୍ରଶ୍ନର ଉତ୍ତର ଦିଅନ୍ତୁ ନା ?

ମୋ'ର ଏ ଓଲଟା ପ୍ରଶ୍ନରେ ବି ସେ ପାଗଳ ପରି ହସି ଉଠିଲେ ଏବଂ କେତୋଟି ମୁହୂର୍ତ୍ତ ନୀରବ ରହି ସେ କହିଲେ—ସେହି ନିର୍ଜନ ପାହାଡ଼ ଓ ମନ୍ଦିରକୁ ଦେଖିଲେ ମୋ'ର ମନେହୁଏ କୌଣସି ଏକ ସୁନ୍ଦରୀ ତରୁଣୀକୁ ନିର୍ଜନ ରାତିରେ ସେଠାକୁ ଉଠେଇ ନେଇ ତାକୁ ରେପ୍ କରିବାକୁ ।

ମୁଁ ତାଙ୍କର ଏପରି କଥାରେ ଚର୍ମା ଲଗିଲା ପରି ଚମକି ପଡ଼ିଲି ଓ ତାଙ୍କ ପ୍ରତିହିଂସା ପୂର୍ଣ୍ଣ ଦୃଷ୍ଟିରେ ଅସ୍ଥିର ହୋଇ ଉଠି କହିଲି—ଆପଣ ସତେ ଏ କ'ଣ କହୁଛନ୍ତି ? ଏ ପ୍ରକାର ଚିନ୍ତା ଆପଣଙ୍କ ମନକୁ ଆସୁଛି ବା କିପରି ? ପୁଣି ଜଣେ ଶିକ୍ଷିତ ବ୍ୟକ୍ତି ପକ୍ଷରେ......

ସେ ମୋ ଆଡ଼କୁ କଟମଟ କରି ଅନାଇଲେ—ମୋ' କଥା ଅଧା ରହିଗଲା । ସେ ମୋତେ ରୁକ୍ଷ କଣ୍ଠରେ କହିଲେ...ମୁଁ ଶିକ୍ଷିତ ହେଲେ ବି ମଣିଷ । ଆଉ ଆମେ ଯେତେ ଶିକ୍ଷିତ ସେତେ ପଶୁ । ବୁଝିଲେ ? ମୁଁ ପଶୁ ହୁଏ କି ମଣିଷ ହୁଏ, ମୋ'ର ବହୁତ କ୍ଷୁଧା ଅଛି । ଆପଣଙ୍କ ପରି ଉଦର କ୍ଷୁଧା ଥିଲେ ମଧ୍ୟ ଅନ୍ୟ ଜୈବିକ କ୍ଷୁଧା...ମାନେ ମୋ'ର କ'ଣ ଯୌନ କ୍ଷୁଧା ନାହିଁ ?

ମୁ ତାଙ୍କ କଥାରେ ବାଧା ଦେଇ ଦୃଢ଼ କଣ୍ଠରେ କହିଲି—ଏଗୁଡ଼ାକ ଯୌନ କ୍ଷୁଧା ନୁହେଁ, ଜାଣିଲେ ଉର୍ମିଳବାବୁ ଏଗୁଡ଼ାକ ଯୌନ ବିକାର । ନ ହେଲେ ଏକ ପବିତ୍ର ମନ୍ଦିର ପ୍ରାଙ୍ଗଣରେ ଏପରି ଅସଙ୍ଗତ କଦର୍ଯ୍ୟ କାର୍ଯ୍ୟ କରିବାପାଇଁ ଆପଣଙ୍କର ମନ ବଳନ୍ତା କାହିଁକି ?

ମୁଁ ଭାବିଥିଲି ସେ ମୋ କଥାରେ ଆଘାତପ୍ରାପ୍ତ ହେବେ ; କିନ୍ତୁ ସେ ହେଲେ ନାହିଁ ବରଂ ସ୍ୱାଭାବିକ ଭାବରେ ହସିହସି କହିଲେ—କେବଳ ସେ ପବିତ୍ର ମନ୍ଦିର ପ୍ରାଙ୍ଗଣରେ ନାରୀ ଧର୍ଷଣ କରିବା ତ ସାମାନ୍ୟ କଥା, ପୁଣି ସେ ତରୁଣୀକୁ ଧର୍ଷଣ ପରେ ସେ ପାହାଡ଼ ଉପରୁ ତଳକୁ ଠେଲି ହତ୍ୟା କରିବାରେ ଏକ ଅପୂର୍ବ ରୋମାଞ୍ଚ ଅଛି ଦାସବାବୁ !

: ଉର୍ମିଳବାବୁ...!

: କ'ଣ ଚମକି ପଡ଼ୁଛନ୍ତି ? ମୋ' କଥା ଆପଣଙ୍କୁ ଏକ ବିସ୍ଫୋରିତ ଆଗ୍ନେୟାସ୍ତ୍ର ପରି ଭୟଙ୍କର ଶୁଭୁଥିବ ନୁହେଁ ?

ପ୍ରକୃତରେ ତାଙ୍କ କଥା ମୋ' କାନକୁ ଏକ ବିସ୍ଫୋରିତ ଆଗ୍ନେୟାସ୍ତ୍ର ପରି ଶୁଭୁ ନଥିଲା କି ଭୟଙ୍କର ମେଘ ଘଡ଼ଘଡ଼ି ଗର୍ଜନ ପରି ଶୁଭୁନଥିଲା ; ଅଥଚ ତାଙ୍କ ମୁହଁଟା ମୋ ଆଖିକୁ ଯେପରି ଏକ ଖୁନୀ ଆସାମୀର ମୁହଁ ପରି ଦେଖାଯାଉଥିଲା... !!

ମୁଁ ଅସହ୍ୟ ଘୃଣିତ ଅସ୍ଥିରତାରେ ବ୍ୟତିବ୍ୟସ୍ତ ହୋଇ ଉଠି କହିଲି—ଗୁଲନ୍ତୁ ଫେରିଯିବା । ଏ ବାଜେ କଥାଗୁଡ଼ାକ ଗପି ସମୟ ନଷ୍ଟ କରିବା ସପକ୍ଷରେ ମୁଁ ମୋଟେ ନୁହେଁ ।

ସେ କହିଲେ—ଦୁନିଆରେ ପ୍ରତ୍ୟେକ କଥାର କିଛିନା କିଛି ମୂଲ୍ୟ ବୋଧ ଥାଏ । ଆପଣ ମୋ' କଥାକୁ ବାଜେ ବୋଲି କହିବା ମୋଟେ ଉଚିତ ନୁହେଁ ।

ମୁଁ ସେତେବେଳେ ତାଙ୍କ କଥା ନଶୁଣି ଏକ ପାହାଡ଼ ଶିଖରକୁ ଅନେଇ ଥାଏ, ଯେଉଁଠି ଅସଂଖ୍ୟ ଜ୍ୟୋତ୍ସ୍ନାଲୋକ ମାୟା ଜାଲ ସୃଷ୍ଟି କରିଥାଏ । ସେ ମୋତେ ଦେଖି କହିଲେ—ଏ ପାହାଡ଼ ଶୃଙ୍ଗ ଦେଖି ଆପଣ ବିମୋହିତ ହୋଇ ପଡ଼ିଛନ୍ତି ବୋଧହୁଏ ? ଆଉ ଯିବାକୁ ଇଚ୍ଛୁକ ହେଉଛନ୍ତି କାହିଁକି ? ଆଚ୍ଛା ଦାସବାବୁ, କବିମାନେ ଏ ପାହାଡ଼କୁ ଯୁବତୀର ସ୍ତନ ସହିତ ତୁଳନା କରିଛନ୍ତି; କିନ୍ତୁ କୌଣସି ତରୁଣୀର ସ୍ତନକୁ ଚାହିଁଲେ ମୋ'ର ପାହାଡ଼ ମନେ ନପଡ଼ି ମନେ ପଡ଼େ ହ୍ୟାଣ୍ଡ ବମ ।

ମୁଁ କିନ୍ତୁ ଆକଣ୍ଠ ଘୃଣାରେ ଜର୍ଜରିତ ହୋଇ କହିଲି—ଆପଣ ଆସୁ ଥାଆନ୍ତୁ ପଛରେ ମୁଁ ଯାଉଛି ।

ସେ କିନ୍ତୁ ମୋ ହାତକୁ ଜାବୁଡ଼ି ଧରି ଟାଣି ରାସ୍ତା ପାଖରେ ଏକ ପୋଲ ଉପରେ ବସାଇ ପାଖ ପାହାଡ଼କୁ କରୁଣ ଦୃଷ୍ଟିରେ ଚାହିଁ କହିଲେ—ମୁଁ ଗୋଟିଏ ଗପ କହିବି ଶୁଣିବେ ?

: ନା ଚାଲନ୍ତୁ ଯିବା । ମୁଁ କହିଲି—କାରଣ ମୁଁ ତାଙ୍କର କୌଣସି କଥା ଶୁଣିବାରେ ମୋଟେ ଆଗ୍ରହୀ ନଥିଲି । ସେ କହିଲେ ନା, ଆପଣଙ୍କୁ ଏ ଗପ ଶୁଣିବାକୁ ହେବ । କାରଣ କେବଳ ଏ ଗପ କହିବା ପାଇଁ ଆପଣଙ୍କୁ ମୁଁ ଏଠାକୁ ଡାକି ଆଣିଛି ।

ଅଚ୍ଛା ଲୋକଟିଏ ତ ଭଏ ! ଇଏ କ'ଣ କ୍ଲାସରୁମ୍ ହୋଇଛି ଯେ ପିଲା ନ ଶୁଣୁଥିଲେ ବି ଲେକଚର ଦେବ । ଶୁଣିବା ଲୋକର ପୁଣି ସ୍ପୃହା ଥିବା ତ ଦରକାର ।

ସେ କହିଲେ—ମୁଁ ଜାଣିପାରୁଛି ଆପଣ ଗଭୀର ଅଶାନ୍ତିବୋଧ କରୁଛନ୍ତି, କିନ୍ତୁ ମୁଁ ଆପଣଙ୍କୁ ଏ ଗପ କହିବାପାଇଁ ଯେତେବେଳେ ମନ କରିଛି ତାକୁ ନକହିବା ଯାଏ ମୁଁ ଶାନ୍ତି ପାଇପାରିବି ନାହିଁ ।

ସତକୁ ସତ ଢମିରବାବୁଙ୍କ ଅବସ୍ଥା ଦେଖି ମୋ'ର ମନେହେଲା ଯେ ଯେପରି ଏକ ଗର୍ଭବତୀ ସ୍ତ୍ରୀ ପ୍ରସବ ଯନ୍ତ୍ରଣାରେ ଅସ୍ଥିର ହୋଇଉଠୁଛନ୍ତି । ଏ ଗଳ୍ପ ସନ୍ତାନ ପ୍ରସବ ନକରିବା ଯାଏ ତାଙ୍କର ନିସ୍ତାର ନାହିଁ । ଲୋକଟାକୁ ଦେଖି ଦୁଃଖ ଆସିଲା । ମୁଁ ବାଧ୍ୟରେ ବସିଲି ।

ସେ କହିଲେ—ମୁଁ ଜାଣେ ଆପଣ ବିବାହିତ । ଆଚ୍ଛା ଆପଣ ବିବାହିତ ଜୀବନରେ କେବେ ପ୍ରେମ କରିଛନ୍ତି ?

ଏ ଲୋକଟା କେଡ଼େ ନିର୍ଲଜ, ପାଗଳ ସତେ ? ଗପ କହିବାକୁ ଯାଇ ଏ ପ୍ରଶ୍ନ କ'ଣ ପଚାରୁଛି ? ମୋ'ର ତୁଣ୍ଡ ଖୋଲିଲା । ମୁଁ କହିଲି—ଏ ବାଜେ ପ୍ରଶ୍ନ ମୋତେ ନ ପଚାରି ଆପଣ ଏଥରକ ଗଳ୍ପ ଆରମ୍ଭ କରନ୍ତୁ ।

: ଆରେ ହଁ, ଆପଣ ରାଗିଲେ ବୋଧହୁଏ । ଆଚ୍ଛା ଶୁଣନ୍ତୁ । ଗପ ଆରମ୍ଭ କରିବା ପୂର୍ବରୁ ଗଳ୍ପର ନାୟକ ନାଁ ମନେ କରନ୍ତୁ···ସୁକାନ୍ତ ଏବଂ ନାୟିକା ଦୁଇଟି ହେଲେ ପ୍ରବଣା ଓ ଅରୁନ୍ଧତୀ ।

: ହଁ, ସେ ଯାହାହେଉ, ଆପଣ କହିଲେ ।

ସେ କହିଲେ – ସୁକାନ୍ତ ତା ଅବିବାହିତ ଜୀବନରେ ଝିଅମାନଙ୍କୁ କେବେ ଆଖିଟେକ ଚାହିଁ ନଥିଲା । ଅର୍ଥାତ ଅରୁନ୍ଧତୀକୁ ବିବାହ କରିସାରିବା ପରେହିଁ ସେ ପ୍ରବଣା ପ୍ରେମରେ ପଡ଼ିଲା ।

ମୁଁ ତାଙ୍କ କଥାରେ ବାଧାଦେଇ ହସିଉଠିଲି, କହିଲି—ଦେଖନ୍ତୁ ତିମିରବାବୁ, ଆପଣଙ୍କ ଗପଟା ମୂଳରୁ ହିଁ ଫାଣ୍ଟାଷ୍ଟିକ—ମାନେ ସେଥିରେ ବାସ୍ତବତାର ନାଁ ଗନ୍ଧବି ଟିକଏ ରହୁନାହିଁ । ଜଣେ ବ୍ୟକ୍ତି ଯେ କେବେ ପ୍ରେମକରି ଜାଣିନଥିଲା, ସେ ପୁଣି ବିବାହ କରିସାରିବା ପରେ ଜଣଙ୍କ ପ୍ରେମରେ ପଡ଼ିବ ? ପୁଣି ଏ ଅନ୍ନ ସଙ୍କଟ ଯୁଗରେ । ଉଦର ଜ୍ୱାଳାରେ ହନ୍ତସନ୍ତ ହୋଇ ମଣିଷ ହୃଦୟରେ ବର୍ତ୍ତମାନ ଖାଲି ପ୍ରବଣତା ଉତ୍ରୁକ ଉଠୁଛି ?

ସେ ସମ୍ଭବ ମୋ'ର ଏ ବ୍ୟଙ୍ଗ କଥାରେ ବହୁତ ଆଘାତ ପାଇଲେ । ସେ ହଠାତ୍ ବିରକ୍ତ ହୋଇ ଉଠି କହିଲେ—ଜଣେ ଲୋକଠାରୁ କୌଣସି କଥା ସମ୍ପୂର୍ଣ୍ଣ ନ ଶୁଣି ଅଧାରୁ ମନ୍ତବ୍ୟ ଦେବା ମୋଟେ ଉଚିତ ନୁହେଁ । ଆଉ ଆପଣଙ୍କର ସେଇ ଗୋଟାଏ କଥା—ଉଦର ଜ୍ୱାଳା, ଅନ୍ନସଙ୍କଟ, କ୍ଷୁଧାର ତାଡ଼ନା ଏମିତିଗୁଡ଼ାଏ ବିକଳ ଶବ୍ଦ ! ଉଦର କ୍ଷୁଧା ବ୍ୟତୀତ ଆଉ ଗୋଟିଏ କ୍ଷୁଧା ଅଛି ବୋଲି ମୁଁ ଆପଣଙ୍କୁ ଆଗରୁ କହିଛି । ସେହି କ୍ଷୁଧାରେ ହନ୍ତସନ୍ତ ହୋଇ ସୁକାନ୍ତ ପ୍ରବଣାକୁ ହିଁ ପ୍ରେମ କଲା ।

: ମାନେ ? ଆପଣ କ'ଣ କହୁଛନ୍ତି ? ସୁକାନ୍ତ ପରା ଅରୁନ୍ଧତୀକୁ ବିବାହ କରିଥିଲା ?

: ଆରେ ଆପଣ ଶୁଣନ୍ତୁ ନା ? ଅରୁନ୍ଧତୀକୁ ବାହାହେବାର ମାସ କେତୋଟା ଦିନ ପରେ ସେ ଅତି ରୁଗ୍ଣ ହୋଇପଡ଼ିଲା ; ପୁଣି ତା ସାଙ୍ଗକୁ ସେ ହେଲା ଅନ୍ତଃସତ୍ତ୍ୱା । ପ୍ରକୃତରେ ଏ ଅବସ୍ଥାରେ ଜଣେ ଏକ ବିବାହିତ ପ୍ରମତ୍ତ ତରୁଣ ମନରେ ଯାହା ଉଦୟ ହେବା କଥା ସେଇଆ ହେଲା । ସେ ଅତିଶୟ ଭାବରେ ବିରକ୍ତ

ହୋଇଉଠିଲି ଅତୁଳନୀ ପ୍ରତି । ଆଜି ଏହି ଅବସରରେ ତା'ର ସାକ୍ଷାତ ହୁଏ ସୁହାସ୍ତ ପ୍ରବଣା ସହି ।

ସମ୍ପର୍କ ଆସ୍ତେ ଆସ୍ତେ ଘନଷ୍ଟ ହେବା ସଙ୍ଗେ ସଙ୍ଗେ ସୁକାନ୍ତ ତା ସ୍ତ୍ରୀଠାରୁ ଯାହା ପାଇବା କଥା ତାହା ସେ ସର୍ବତୋଭାବରେ ଆଦାୟ କଲି ପ୍ରବଣାଠାରୁ···

ହଠାତ୍ ସେ ମଝିରେ ବନ୍ଦ ହୋଇଯିବା ଦେଖି ମୁଁ ଉତ୍କଣ୍ଠିତ ଭାବରେ କହିଲି—ଆରେ ଆପଣ ବନ୍ଦକଲେ କାହିଁକି ? ତାପରେ କ'ଣ ହେଲା ?

: ଆଚ୍ଛା ଦାସବାବୁ ଏ ଷ୍ଟୋରିଟା ଭାରି ଇଣ୍ଟରେଷ୍ଟିଙ୍ଗ୍ ନୁହେଁ ?

ହଁ, ତା ପରେ ପ୍ରବଣାସହି ବାରମ୍ବାର ମିଶିବା ପରେ ସୁକାନ୍ତ ଏକ ଜ୍ୟୋତ୍ସ୍ନାସ୍ନାତ ରଜନୀରେ ପ୍ରବଣାକୁ ଅନୁରୋଧ କଲା, ଏକ ପାହାଡ଼ ଶିଖର ନିର୍ଜନ ମନ୍ଦିର ପ୍ରାଙ୍ଗଣରେ ଗୋଟିଏ ରାତିକୁ ମଧୁରକରି ତୋଳିବାକୁ ।

: ପ୍ରବଣା କ'ଣ ରାଜିହେଲା ? ମୁଁ କହିଲି ।

ସେ ଏକ ଦୀର୍ଘଶ୍ୱାସ ନେଇ କହିଲେ—ହଁ, ସେ ରାଜିହେଲା ଏବଂ ସେ ପାହାଡ଼ ଚୂଳରେ ପହଞ୍ଚିସାରିଲା ପରେ ସୁକାନ୍ତ ଅଦମ୍ୟ ତାରୁଣ୍ୟ ତାଡ଼ନାରେ ଯେତେବେଳେ ପ୍ରବଣାକୁ କୋଳରେ ଭିଡ଼ିଆଣିବାକୁ ଅଗ୍ରସର ହୁଏ ସେ କ'ଣ କହିଲା ଜାଣିଛ ?

: କ'ଣ ?

: କହିଲା—ତୁମର ସ୍ତ୍ରୀ ଅଛନ୍ତି । ମୋ ସହିତ ତୁମର ଏପରି ଗୋପନରେ ସମ୍ପର୍କ ରଖିବା ମୋଟେ ଉଚିତ ନୁହେଁ ।

ସୁକାନ୍ତ କହିଲା, ଆଜି କ'ଣ ମୁଁ କରିବ ? ମୁଁ ତୁମକୁ ଛାଡ଼ି ଗୋଟେ କ୍ଷଣେ ରହିପାରିବ ନାହିଁ !

ପ୍ରବଣା କିନ୍ତୁ ଏଥରକ ସୁକାନ୍ତକୁ ସ୍ପଷ୍ଟ କଣ୍ଠରେ କହିଲା—ତୁମ ସ୍ତ୍ରୀ ବର୍ତ୍ତମାନ ରୁଗ୍ଣା···ସେ ତୁମକୁ ଟିକିଏ ହେଲେ ଶାନ୍ତି ଦେଇପାରୁନାହିଁ । ସେ ବଞ୍ଚିରହିବ କିଭ କ'ଣ ? ବରଂ ତୁମେ ତାକୁ ଏ ଅବସରରେ ଔଷଧ ଦେବା ନାଁରେ ବିଷ ଦେଇପାରିବ କି ?

ମୁଁ ଚମକିପଡ଼ି କହିଲି—ଉମିରବାବୁ ?

ସେ ହସିଲେ ମ୍ଳାନ ସଂକ୍ଷିପ୍ତ ହସ—କହିଲେ ଗଳ୍ପର ନାୟକ ମୁଁ ନୁହେ ଦାସବାବୁ, ସୁକାନ୍ତ ରାୟ । ହଁ, ତାପରେ କ'ଣ ହେଲା ଜାଣିଛ ? ପ୍ରବଣାର ଏ ପ୍ରସ୍ତାବରେ ସୁକାନ୍ତ ଏକପ୍ରକାର ବୋକା ପାଲଟି ଯାଇଥିଲା; କିନ୍ତୁ ଏ ସମୟରେ ହଠାତ୍ ଏକ ଭୟା ଚିତ୍କାରରେ ସେ ଚମକି ପଡ଼ିଲା ଏବଂ ତାକୁ ଜଣାଗଲା ପାହାଡ଼ ଉପରକୁ ଉଠିବା ପାହାଚରେ ଯେପରି କିଏ ଗଡ଼ିଗଡ଼ି ତଳକୁ ଖସି ପଡ଼ୁଛି ! ସୁକାନ୍ତ ବ୍ୟସ୍ତ ଓ ବିବ୍ରତ ହୋଇ ଏକୋନିଃଶ୍ୱାସକେ ଦୌଡ଼ି ଯାଇଁ ଯାହା ଦେଖିଲା ସେଥିରେ ତା'ର ଅନୁମାନ ସତ୍ୟ ହେଲା । କୌଣସି ବ୍ୟକ୍ତି ସମ୍ଭବ ପାହାଡ଼ ଉପରକୁ

ଉଠିଲାବେଳେ ଅସାବଧାନତା ବଶତଃ ତଳକୁ ଗଡ଼ିଯାଇଁ କେତେଟା ପାହାଚ ତଳେ ଅଟକି ଯାଇଛୁ ।

ଓଃ ! ହେ ଭଗବାନ । ତାଙ୍କ ପ୍ରକୃତରେ ଭଗବାନ ସହାୟ ହୋଇଛନ୍ତି । ଯଦି ସେ ଲୋକ ଉପରକୁ ଉଠି ତାଙ୍କୁ କୌଣସି ଏକ ଅଶ୍ଳୀଳ ଅବସ୍ଥାରେ ଦେଖି-ପାରିଥାନ୍ତା !

ସୁକାନ୍ତ ତେବେ ବି ଏ ପ୍ରକାର ମାନସିକ ଅବସ୍ଥାର ସମ୍ମୁଖୀନ ହୋଇ ଏକ ଅଜଣାମୋହରେ ତଳକୁ ସେ ଲୋକପାଖକୁ ଦୌଡ଼ିଗଲା । କିନ୍ତୁ ତା' ପାଖରେ ପହଞ୍ଚି ସେ ଯାହା ଦେଖିଲା ତା' ଆଖିକୁ ସେ ବିଶ୍ବାସ ଗଲାନାହିଁ । ଏ ଯେ ଆଉ କେହି ନୁହେଁ ??……ତା' ସ୍ତ୍ରୀ ଅରୁନ୍ଧତୀ !

ଅରୁନ୍ଧତୀ ଏତେ ରାତିରେ ଏଠାକୁ ଆସିଲା କିପରି ?

ତେବେ କ'ଣ ପ୍ରବଣା ତଥା ଶୁଣି ନିଜ ମାନସିକ ସ୍ଥିତିର ସ୍ବରସାମ୍ୟ ହରାଇ ସେ ଏ ଦୁର୍ଘଟଣାର ସମ୍ମୁଖୀନ ହେଲା ?

: ଢମିରବାବୁ କୁହନ୍ତୁ ନା, ଅରୁନ୍ଧତୀର କ'ଣ ହେଲା ? ସେ କ'ଣ…

: ହଁ ଦାସବାବୁ ସେ ସିନା ଶେଷ ନିଃଶ୍ବାସ ତ୍ୟାଗ କରି ନ ଥିଲା, ହେଲେ ତା'ର କ୍ଷତବିକ୍ଷତ ରକ୍ତାକ୍ତ ଦେହରେ ସେ ବେଶ ମୃତ୍ୟୁକାଳୀନ ଯନ୍ତ୍ରଣା ଗଭୀର ଭାବରେ ଅନୁଭବ କରୁଥିଲା । ଏପରିକି ସେ ସୁକାନ୍ତକୁ ଚିହ୍ନି ବି ପାରୁନଥିଲା, ଅଥଚ ଅତି ବିକଳ ଭାବରେ ତାକୁ ଅନାଇ ରହିଥିଲା ।

ସୁକାନ୍ତ ଅରୁନ୍ଧତୀର ଏ କରୁଣ ଦୃଶ୍ୟରେ ପ୍ରବଣାକୁ ଗଳା ଫଟାଇ ଡାକି ଛାଡ଼ିଲା । ପ୍ରବଣା ଟିକିଏ ସାହାଯ୍ୟ କଲେ ସେ ତାକୁ କୌଣସି ଡାକ୍ତରଖାନାକୁ ନେଇ ବଞ୍ଚିବାପାଇଁ ଅନ୍ତତଃ ଚେଷ୍ଟା କରିବ ।

କିନ୍ତୁ ପ୍ରବଣା କାହିଁ ?

ସୁକାନ୍ତ ପାଗଳ ପରି ଧାଇଁଲା ଉପରକୁ । କିନ୍ତୁ ପ୍ରବଣା ସମ୍ଭବ ଅନ୍ୟ ବାଟରେ ତଳକୁ ଓହ୍ଲାଇ ସେଠାରୁ ଖସି ଯାଇଥିଲା ।

ମୋ'ର ବିବ୍ରତ ସ୍ବର – ଆରେ ଢମିରବାବୁ ଆପଣ କାନ୍ଦୁଛନ୍ତି କାହିଁକି ?

ଢମିରବାବୁ ଆଖିରୁ ଲୁହ ପୋଛୁ, ନିଷ୍ପ୍ରଭ ହସ ହସି କହିଲେ—ସତେ, ଆରେ ମୁଁ କାନ୍ଦୁଛି କାହିଁକି ? ଏ ଯେ ଗଳ୍ପ ଅନ୍ୟ ନାୟକର । ହଁ, ତାପରେ ସୁକାନ୍ତ ନିସ୍ବଶ ହୋଇ ତଳକୁ ଫେରି ମୁମୂର୍ଷୁ ଅରୁନ୍ଧତୀକୁ ଅତି ଆଦରରେ, ଅତି ଆକୁଳ ଭାବରେ କାନ୍ଧରେ ପକାଇ ସାଙ୍ଗେ ସାଙ୍ଗେ ସେ ନିର୍ଜନ ପାହାଡ଼ିଆ ଅରଣ୍ୟକୁ ଟପି ଦୀର୍ଘ ପାଞ୍ଚ ମାଇଲ ପରେ ଯେତେବେଳେ ଏକ ଗାଁ ଡାକ୍ତରଖାନାରେ ପହଞ୍ଚିଲା…

: ଆରେ ଆପଣ ଏପରି ଅଧୈର୍ଯ୍ୟ ହେଉଛନ୍ତି କାହିଁକି ? ଆପଣ ଯେ ଗପ କହୁଛନ୍ତି ?

: ହୁଁ । ତାପରେ ସେହି ନିର୍ଜନ ଡାକ୍ତରଖାନା ବାରଣ୍ଡାରେ ଅରୁନ୍ଧତୀକୁ କାନ୍ଧରୁ ଓହ୍ଲାଇ ଯେତେବେଳେ ଶୁଆଇ ଦେବାକୁ ବାହାରିଛି, ସେ ଦେଖିଲେ ସବୁ ଶେଷ ହୋଇଯାଇଛି । ବାସ୍ତବରେ ତା'ର କାନ୍ଧରେ ଅରୁନ୍ଧତୀ ଶେଷ ନିଃଶ୍ୱାସ ତ୍ୟାଗ କରିସାରିଛି ।

ହଠାତ୍ ତମିରବାବୁଙ୍କର ଯେପରି ଅତ୍ୟଧିକ ଯନ୍ତ୍ରଣାରେ କଣ୍ଠ ରୁଦ୍ଧ ହୋଇ ଆସିଲା । ସେ ଆଉ କିଛି କହିପାରିଲେ ନାହିଁ ; ଅଥଚ ପିଲାଙ୍କ ପରି ଭେଁ' ଭେଁ' ହୋଇ କାନ୍ଦି ଉଠିଲେ ।

ମୋ'ର କିନ୍ତୁ କାହିଁକି ସନ୍ଦେହ ହେଲା । ତମିରବାବୁ ଏ ଗପ କହୁ ନାହାନ୍ତି, କହୁଛନ୍ତି ତାଙ୍କର ନିଜ କଥା । ନିଜର ଅଙ୍ଗେ ଲିଭାଇବା କଥା । ମୁଁ ସାହସ ବାନ୍ଧି କହିଲି, ଦେଖନ୍ତୁ ଆଜ୍ଞା, ଆପଣ ମୋତେ ମିଛ କହୁଛନ୍ତି । ଏ ଗପ ନୁହେଁ, ଏ ଆପଣଙ୍କ କଥା । ଏ ନିଶ୍ଚୟ ଆପଣଙ୍କ ନିଜ କଥା ।

ସତକୁ ସତ ସେ ମୋ' କଥାରେ ପୁଣି ଧୈର୍ଯ୍ୟହରା ହୋଇ କାନ୍ଦି ଉଠିଲେ ।

କିଛି ସମୟ ଏକ କରୁଣ ନୀରବତା ପରେ ସେ ନିଜେ ଆଖିରୁ ଲୁହ ପୋଛି କହିଲେ—ହଁ, ଦାସବାବୁ, ଏ ମୋ' ନିଜ କଥା । କେଜାଣି କାହିଁକି ଏ ଗପ ମୋତେ ନୂଆ ବନ୍ଧୁମାନଙ୍କୁ ବାରମ୍ବାର ଶୁଣାଇ ନିଜେ ଦୁଃଖରେ ଅଧୀର ହୋଇ ଗ୍ରୁଡ ଫଟାଇ କାନ୍ଦିବାକୁ ଭଲ ଲାଗେ ।

ତମିରବାବୁଙ୍କ ଏ ଅବସ୍ଥାରେ ତାଙ୍କୁ କଥାଟା ଶେଷ କରିବାପାଇଁ କହିବାକୁ ମନ ହେଉ ନଥିଲେ ମଧ ଗଭୀର ଉତ୍‌କଣ୍ଠାକୁ ଏଡ଼େଇ ନପାରି ମୁଁ ଧୀର କଣ୍ଠରେ କହିଲି—ଆପଣଙ୍କ ସେ ପ୍ରେମିକାର ଶେଷରେ କ'ଣ ହେଲା ?

ସେ ବିରକ୍ତ ହୋଇ କହିଲେ—ମୋତେ ତା' କଥା କିଛି ପୁଚ୍ଛନ୍ତୁ ନାହିଁ । ସେ ବିଶ୍ୱାସଘାତିନୀ କୁଆଡ଼େ ବାହା ହୋଇ ଘର ସଂସାର କଲାଣି । ଆଉ ସେହି ଦିନଠାରୁ ସେ ମୋ' ପାଖକୁ ଆସି ନାହିଁ କି ମୁଁ ତା ବିଷୟରେ କୌଣସି ଖବର ରଖିବାକୁ ଆଗ୍ରହ ପ୍ରକାଶ କରିନି ।

ମୁଁ ଅତ୍ୟଧିକ ଉତ୍ତେଜିତ ହୋଇ କହିଲି, ଆପଣ ଭୁଲ କଲେ ତମିରବାବୁ । ସେପରି ଝିଅକୁ ଆପଣ ଛଳନା କରି ପୁଣି ଥରେ ସେଇ ପାହାଡ଼ ଉପରକୁ ନେଇ ତାକୁ ଯଥେଚ୍ଛା ଧର୍ଷଣ କରି ଶେଷରେ ସେ ପାହାଡ଼ ଉପରୁ ତଳକୁ ଖସାଇ ହତ୍ୟା କରିବା କଥା ।

ମୋ' କଥା ଶୁଣି ଏତେ ଦୁଃଖ ମଧ୍ୟରେ ବି ସେ ପାଗଳ ପରି ହସି ଉଠିଲେ । କହିଲେ—ଏତେବେଳେ ମୋ' କଥା ଆପଣ ବୁଝି ପାରିଛନ୍ତି । ଏଃ ମୋ'ର କଣ୍ଠସ୍ୱର ଆପଣଙ୍କ କଣ୍ଠରୁ ହିଁ ନିର୍ଗତ ହୋଇଛି । କାରଣ ଆମେ ମଣିଷ ।

ମୁଁ ଏଥରକ ପଗ୍ଗ୍ନରଲ—ଆପଣଙ୍କର ସେ ପ୍ରେମିକାର ପ୍ରକୃତ ନାମ କ’ଣ ?

: ତା ନା’ ଧରିବାକୁ ମୋତେ ଘୃଣା ଲାଗୁଛ ଦାସବାବୁ ।

: ଆରେ ଆପଣ କୁହନ୍ତୁ ନା ?

: ‘ସୁପ୍ରଭା’ ।

: ସୁପ୍ରଭା ?? ତା ବାପା ନାମ ହରେକୃଷ୍ଣ ମହାନ୍ତ ତ ?

ଉମିରବାବୁ ଏଥରକ ବିସ୍ମୟ ବିମୂଢ଼ ଦୃଷ୍ଟିରେ ମୋ’ ଆଡ଼କୁ ଚାହିଁ କହିଲେ – ଆପଣ ତେବେ କ’ଣ ସୁପ୍ରଭାକୁ ଚିହ୍ନିଛନ୍ତି ଦାସବାବୁ ?

ମୁଁ ଏକ ଶ୍ୱାସରୋଧୀ ଅସ୍ଥିରତାରେ ପୁଣି ପ୍ରଶ୍ନ କଲି ତାଙ୍କ ଘର ନନ୍ଦପୁର ତ ?

: ହ ଦାସବାବୁ, ଆପଣ ତାଙ୍କୁ ଚିହ୍ନିଲେ କପରି ?

ମୁଁ ପ୍ରକୃତରେ ଏ ପ୍ରଶ୍ନର ଉତ୍ତର ଦେବା ଅବସ୍ଥାରେ ସେତେବେଳକୁ ନଥିଲି । ମୋ’ର ଚତୁର୍ଦ୍ଦିଗରେ ସମସ୍ତ ବିଶ୍ୱ ବୁଲୁଥିଲା – ବୁଲୁଥିଲା ସୁପ୍ରଭାର କୁଟିଳ କାଳଜନକ ମୁହଁ ଚକ୍ରାକାରରେ ମୋ’ର ଚତୁର୍ଦ୍ଦିଗରେ ମୋତେ ଘେରିଗଲା ହୋଇ । ମୁଁ ହୋସ୍‌ରେ ଅଛି ତ ?

ଆପଣ ବିଶ୍ୱାସ କରିବେ ନାହିଁ ।

ସେ ସୁପ୍ରଭା ଯେ ଆଜି ମୋ’ର ସ୍ତ୍ରୀ…ମାନେ ସହଧର୍ମିଣୀ ।



# ହୋରି

।। ଶ୍ରୀ ଧୀରେନ୍ଦ୍ର କୁମାର ।।

ସେ ଦିନ ସେ ସ୍ୱପ୍ନର ସହରରେ ଉନ୍ମତ୍ତ ହରିଣୀ ପରି ବୁଲୁଥିଲେ । ଠିକ୍ ହୋଲିଖେଳର ପରେ ପରେ ତାଙ୍କ ନୀଳ ଆଖିରେ ଭସାଣିଆ ବାଦଲ ଦେଖିବାକୁ ମିଳୁଥିଲା ; ତେଣୁ ବନ୍ଧୁ ଗାଣିତକ ପ୍ରମାଣ ପରେ ସେ ସ୍ଥିରକଲେ—"ଏମିତି ଖେଳ ଦୁନିଆରେ ନାହିଁ, ଖେଳିବାକୁ ପ୍ରବଳଇଚ୍ଛା ଅଥଚ ଖେଳିଲେ ଦେହରେ ରଙ୍ଗଲାଗେ, ନ ଖେଳିଲେ ଜୀବନ ବୃଥା । ଏ ଖେଳରେ କ୍ଷତାକ୍ତ ହେଲେ ବହୁତ ଆନନ୍ଦ ଲାଗେ, କାରଣ ଏ ଖେଳର ଗୋଟିଏ ମୁହୂର୍ତ୍ତହିଁ ଜୀବନ ।"

ହୋଲିଖେଳର କଟକଣା ଯୋଗୁଁ ସେ ସ୍ଥିରକଲେ ଏ ବର୍ଷିକ ହୋଲି ଖେଳିବେ ନାହିଁ; ମାତ୍ର ତାଙ୍କର ଇଚ୍ଛାମାନେ ଯେହେତୁ ସମ୍ପୂର୍ଣ୍ଣ ସ୍ୱାଧୀନ ତେଣୁ ସେମାନେ ତାଙ୍କୁ ଅବଜ୍ଞାକରି ଲୁଚି ଲୁଚି ହୋଲିରେ ମାତନ୍ତି । ଇଚ୍ଛାମାନଙ୍କ ବିରୁଦ୍ଧରେ ଯିବାର ଶକ୍ତି କାହାର ? ସେଇଥିପାଇଁ ସେ ଇଚ୍ଛାମାନଙ୍କୁ ସମର୍ଥନ କରନ୍ତି—ହୋଲି ଖେଳନ୍ତି ।

ହୋଲି ଖେଳରେ ସେମାନେ ରାଧାକୃଷ୍ଣ ନୁହଁନ୍ତି ସତ, କିନ୍ତୁ ପରସ୍ପର ରାଧାକୃଷ୍ଣଙ୍କ ପୋଷାକ ପିନ୍ଧି ପ୍ରକ୍ସି ପକାନ୍ତି ।

ସେମାନେ ବର୍ତ୍ତମାନ ଆକାଶରେ ଉଡ଼ୁଥିବେ । ବୋଧହୁଏ ଦୁର୍ବଳ ହେଲପରେ ତଳକୁ ଆସିଛନ୍ତି । ସେମାନଙ୍କ ସମ୍ପର୍କ ସବୁ ଦୈନିକ ଖବରକାଗଜ ବା ଗୋଟିଏ ରାତିର ସ୍ୱପ୍ନର ସହିତ ସମାନ ।

ସେମାନଙ୍କ ଭିତରେ ଆମ୍ଭଙ୍କୁ ଆବିଷ୍କାର କରିବାକୁ ହେବ । ଅତୀତର ସ୍ମୃତିକୁ ଫୁଟବଲ କିକ୍ ମାରି ଦୂରକୁ ଫୋପାଡ଼ିଲାବେଳେ ସେ ବୋମେରାଙ୍ଗ ଅସ୍ତ୍ରପରି ଫେରିଆସି ବାରମ୍ବାର ଆଘାତ ଦେଉଛି । ସ୍ମୃତି କେବେହେଲେ ନିର୍ବାସିତ ନୁହେଁ । ବରଂ ଅବିନାଶୀ ।

ସେମାନଙ୍କ ଭିତରେ ଆପଣମାନେ ଅଛନ୍ତି । ମୁଁ ବି ଅଛି; ଲିଡ, ରିଡ ଇତ୍ୟାଦି ଅଛନ୍ତି । ଆମେ ସମସ୍ତେ ସେମାନଙ୍କ ମାନଚିତ୍ର ଭିତରେ । ଏଣୁ ସେମାନେ ହେଉଛନ୍ତି ଆମ୍ଭେମାନେ । ସେମାନଙ୍କ କଥାହିଁ ଆମ୍ଭ କଥା ।

ସେମାନେ ସମସ୍ତେ ଆଖିରେ ନୀଳଚଷମା ପିନ୍ଧି ଦୁନିଆକୁ ମାପିବାକୁ ଚେଷ୍ଟା କରୁଥିଲେ । ସ୍ୱେଜୀସ୍ ମହଲାମାନଙ୍କ ପରି ପରସ୍ପର ପରସ୍ପରକୁ ଭଲ-ପାଉଥିଲେ ବି କେହି କାହା ମନର ଇଲାକାରେ ବନ୍ଦୀ ହେଉନଥିଲେ ।

ସେ, ଯେଉଁ ମୋ ଗଳ୍ପର ନାୟିକା ମୋତେ ତାଙ୍କ ନୀଳ ଆଖିରୁ ପିଚକାରୀ ମାରିଲେ । ମୁଁ ପ୍ରେମର ପିଛିଲସ୍କୁ । ବର୍ଣ୍ଣପରିଚୟ ରସକ୍ରୀଡ଼ା ଇତ୍ୟାଦି ସୀମିତ ଜ୍ଞାନର ସାର୍ଟିଫିକେଟ ପାଇଛି । ତେଣୁ ମୁଁ ପିଚା ରଙ୍ଗପାଣିରେ ଭିଜିଲି ନାହିଁ, ହେଲେ ମୋର ଯୌବନର ମନମାନେ ସେମାନଙ୍କ ସହିତ ନାଚିବାପାଇଁ ମୋଠାରୁ ଦୂରେଇ ଯାଉଥିଲେ ।

ନାୟିକାଙ୍କ ଯୌବନର ଉଚ୍ଛା ପଡ଼ିଆସୁଥିଲେ ବି ଗୋଟାଏ ପୁରୁଣା ହୋଟେଲ ପରି ସେ ନିଜକୁ ସଜାଇଥିଲେ । ହୋଟେଲରେ ମେନୁ ଦେଖିଲେ ଜଣାଯାଏ ଏଠି ଅନେକ ଲୋକଙ୍କର ଭିଡ଼ ହୁଏ । ଖୁବ୍ ଶସ୍ତାରେ ଖାଦ୍ୟ ବି ମିଳେ । ସେ ହୋଟେଲକୁ କାମାଖ୍ୟାଦେଶ ବି କୁହାଯାଇପାରେ । କିନ୍ତୁ ବ୍ୟାଧିର ମାୟାଜାଲର ଖୁଦ୍‌କଣିକା ଦେଖି ନିର୍ବୋଧ ପକ୍ଷିଟି ପରି ମୋର ମନ ଯେତେବେଳେ ସେଥିରେ ଯୋଗଦେବାକୁ ବାହାରିଲା ବିବେକ ବାଧା ଦେଇଛି; କିନ୍ତୁ ମନକୁ ବାଧା ଦେବ କିଏ ? (ମୋ ମନଟା ସବୁବେଳେ ଲୋଭୀହୋଇ ହୋଟେଲକୁ ଚାହିଁ ଥିଲା) ।

ମୁଁ ଜାଣେ ସେମାନେ ସବୁ ନାଗକନ୍ୟା । କିନ୍ତୁ ସେମାନଙ୍କ ଉଲୁପୀର ଉଲଗ୍ନ ଶରୀରରେ ପ୍ରାଗୈତିହାସିକ ଯୁଗର କ୍ଷୁଧା ଦୂର ହୋଇପାରେ । ବିଷଜ୍ୱାଳାକୁ ଆମ୍ଭେମାନେ ଭୟକରୁ ନା, କାରଣ କାଳୀୟଦଳନରେ ଆମ୍ଭେମାନେ ସକ୍ରିୟ ଅଂଶ ଗ୍ରହଣ କରିଥିଲୁ ।

ନାୟିକାଙ୍କ ମନର ସୋମନାଥ ମନ୍ଦିର ଲୁଣ୍ଠନ କରିବାପାଇଁ (ଯଦିଓ ମନ୍ଦିରରେ ଦେବତା ନଥିଲେ) ମୋର କ୍ରୀତଦାସପରି ମନଟା ଗ୍ରେମୀଓ ଗ୍ଲାଡ଼ିଏଟର ପରି ଯୁଦ୍ଧ କରୁଥିଲା ।

ତାଙ୍କ ସର୍କସର ହାତସଫେଇ ଦର୍ଶକଙ୍କୁ ମୁଗ୍ଧ କରିପାରେ; ମାତ୍ର ସର୍କସର ରିଙ୍ଗମାଷ୍ଟର ହୋଇ ଏତେ ଶୀଘ୍ର ସେଥିରେ ବିଶ୍ୱାସ ନ କଲେବି ଆଉରଙ୍ଗଜେବଙ୍କ ପରି ଅବିଶ୍ୱାସୀ ମନଟାକୁ ତାଙ୍କ ବିଶ୍ୱାସରେ ଢାଳିଦେବାର ଉପକ୍ରମ ଦେଲି ।

ବିଶ୍ୱାସରେ ବିଷ କ'ଣ ଅମୃତ ହୁଏ ?

ବିଷ ଅମୃତ, ଅମୃତ ବିଷ ଏ କିଛିନୁହେଁ । ସତ୍ୟ କେବଳ ମିଥ୍ୟାର ପ୍ରହେଳିକା । ମିଥ୍ୟା ବି ସତ୍ୟର ରୂପାନ୍ତର ମାତ୍ର ।

ସମସ୍ତେ ହୋଲି ନିଶାରେ ଆଜି ପାଗଳ । କାରଣ ଯୌବନର ଇଲାକାରେ ବସନ୍ତର ସଙ୍ଗୀତ ଶୁଣିବା ଆମ୍ଭମାନଙ୍କର ବର୍ତ୍ତମାନ ସର୍ବସ୍ୱ ।

ସେଦିନ ହୋଲି ସମ୍ପର୍କରେ ଏକ ବିରାଟ ବୈଠକରେ କାନସବୁ ଶରୀରଙ୍କ-ପରି ଓ ଆଖିସବୁ ତାରିପରି ଯୋଗ ଦେଇଥିଲେ । ପାଟିମାନଙ୍କୁ ନ ଡାକି ନୀରବରେ ବୈଠକ ସାରିଦେଲେ ।

ଇତିମଧ୍ୟରେ ସେମାନେ ଭଲ ପାଇଛନ୍ତି ପରସ୍ପରକୁ ।

: କାରଣ ଭଲପାଇବାଟା କୁଆଡ଼େ ଦେଖି ହୁଏନାହିଁ ଅଥଚ ଦେଖିବାକୁ ଖୁବ୍ ସୁନ୍ଦର ।

ପ୍ରେମର ଜୀବନବୀମା ଉଆଣ ନ କର (ଏହା ପ୍ରେମ ନ ହୋଇ ବରଂ ଗୋଟାଏ ମୁହୂର୍ତ୍ତର ଆବେଗ ହୋଇପାରେ) ମୁଁ ଯେ ପ୍ରେମ କରୁଛି ଏକଥା ଭାବିଲାବେଳେ କ୍ଲାସ୍‌ର ଗଧପିଲାଠାରୁ ଆହୁରି ଗଧ ହୋଇଯାଏ ।

ସେ ରାଧା ଓ ମୁଁ କୃଷ୍ଣ ।

ଷ୍ଟେପୋଲିନ୍‌ପରି ହାତଟାକୁ ନାୟିକା ସେତେବେଳେ ମୋ ବେକପାଖରେ ରଖି ସଙ୍ଗୀତ ଶୁଣାଇବାଭଙ୍ଗୀରେ କେଉଁ ଅଜଣା ସ୍ୱରକୁ ଝାମ୍ପିନେବାର ମୁଦ୍ରା ଦର୍ଶାଉଥିଲେ । ମୁଁ ସେତେବେଳେ ନିଜଦେହର ଉତ୍ତେଜନା ସହିତ ତାଙ୍କ ଦେହର ଶକ୍ତି ମାପୁଥିଲି । ଦେହବିନା ପ୍ରେମ ବଞ୍ଚିପାରିବକି ନାହିଁ ସେ କଥା ଚିନ୍ତା କଲାବେଳେ ମୁଁ ଅନୁଭବ କରେ – ଶାଶ୍ୱତ ପ୍ରେମ ଏକ ବିଡ଼ମ୍ବନା ମାତ୍ର । ପ୍ରେମହିଁ ପ୍ରେମ—ତାର ସଂଜ୍ଞା ଗୋଟାଏ କ'ଣ ?

ବାସ୍ତବିକ ଏକଥା କେହି କାହାରିକୁ ଶିଖାଇ ଦିଏ ନାହିଁ । କାରଣ ଆମର ଅନୁଭବ ହେଲା ବୟସର ଋତୁପରେ ଆମେ ଯେତେବେଳେ ଅନେକ ଫୁଲଙ୍କର ନିଷିଦ୍ଧ ଇଲାକାରେ ନୃତ୍ୟକରୁଥିଲୁ ସେତେବେଳେ ଧାରଣା ହେଲା ଯୌବନର ଅବାରିତ ଧାରାକୁ ରୋକି ହେବ ନାହିଁ ।

ହୋଷ୍ଟେଲର ମହା ସମୁଦ୍ରରେ ସମସ୍ତେ ଜଳକ୍ରୀଡ଼ା କଲୁ । କ୍ରୀଡ଼ା ପ୍ରଶମିତ ହେଲା; କିନ୍ତୁ ସମୁଦ୍ରର ଜଳର ସ୍ପର୍ଶରେ ସମସ୍ତ ଅସୁସ୍ଥ ହେଲୁ । ବେଦନା ବି ଅନୁଭବ କଲୁ, କିନ୍ତୁ ଆନନ୍ଦ ବି ପାଉଥିଲୁ ( ସେ ଆନନ୍ଦ କେବଳ ଗାର୍ଲସ ହଷ୍ଟେଲ ପାଖଦେଇ ଯିବାବେଳେ କୌଣସି ଏକ ହସପରି)

ହୋଷ୍ଟେ ଓ ମହା ସମୁଦ୍ର ସ୍ନାନରୁ ଫେରିଲା ପରେ ଆମର ସନ୍ତାନମାନେ ଆମର ଦୁର୍ଗ ଅବରୋଧକରି ଆମ ଉପରକୁ ଗୋଳାବୃଷ୍ଟିକଲେ । ଏ ଯୁଦ୍ଧରେ ଆହତ ହୋଇ ବି କେହି ଦ୍ରୋହ ହିଁ ଆଗତ କଲୁ । ମାତ୍ର ଦଗ୍‌ଧଜନ୍ୟ ପିପାସା ଏତେ ପ୍ରବଳ ଯେ ସେଥିପାଇଁ ଅମ୍ଭେମାନେ ସନ୍ଧାନ ବି ହେଲୁ, (କାରଣ କେତେକ କହନ୍ତି ଏ ଯୁଗରେ ସନ୍ତାନର ଆବଶ୍ୟକତା ନାହିଁ )

ଅନାଗତମାନେ ସୂର୍ଯ୍ୟାଲୋକ ଦେଖିବା ପୂର୍ବରୁ ଗର୍ଭର ଭିତରେ ହଜି ଯାଇଥିଲେ ।

ବର୍ତ୍ତମାନ କେତେକ ବସନ୍ତର ଶେଷଲଗ୍ନରେ ଓ ଆଉ କେତେକ ଯୌବନର ଅପରାହ୍ନରେ ।

ମୋର ଆଲବମ୍ ବା ପକେଟରେ ଏବେ ବି କେତେ ନାୟିକାଙ୍କ ସ୍ମୃତି ରହିଛି ସେ ସବୁ ପ୍ରେମର ସ୍ମୃତି ନୁହେଁ । କେବଳ ଗୋଟାଏ ମୁହୂର୍ତ୍ତର ଆବେଗ, କାରଣ

ସେମାନେ ଯେମିତ ଅଜଣାରେ ମୋତେ ଭଲପାଇଥିଲେ ସେମିତ ଅଜଣାରେ ବି ଦୂରେଇ ଗଲେ ।

ନାୟିକା ମୋ ଠାରେ ହଜିବା ପରେ କ'ଣ ପାଇଲେ ସେ କଥା ଆପଣମାନେ ଜାଣନ୍ତି ।

: ଏଇ ହଜିବା ହଜେଇବା, ଖୋଜିବା ଖୋଜେଇବା ଏଇ ତ ପ୍ରେମ, ଏଇତ ଜୀବନ ।

ଅନାଗତମାନେ ଖୁଲିଯିବା ପରେ ନାୟିକା ମୋତେ ଧରିବା ପାଇଁ ଆଖିର ବନ୍ସୀ ପକାଇଲେ । କିନ୍ତୁ ଭୂମିପର ପ୍ରାଣୀ ପାଖରେ ବନସୀ ଡୋର ଅର୍ଥହୀନ । ତେଣୁ ମୋ ଆଖିର ଆକର୍ଷଣ ତାଙ୍କୁ ଟାଣି ଆଣିଲା ;

ମୁଁ ଜୋର୍ କରି ଛଡ଼ାଇ ଆଣେ ନା । ମାତ୍ର ଅଯାଚିତକୁ ମନାକରିପାରେ ନା । କାରଣ ସେଦିନ ଆପଣମାନେ କହୁଥିଲେ ଅଯାଚିତ ଶୁଭଙ୍କର ନୁହେଁ । ବରଂ ଜୋରକରି ଟାଣିଆଣ—ମାତ୍ର ସେମାନେ କହୁଥିଲେ ଜୋର୍ କରି ଟାଣିଲେ ରୂପରସ ସବୁ ହଜିଯାଏ । ଏଣୁ ମୁଁ ଦୁଇ ଯୁକ୍ତିର ଯୋଜକ ।

ସେ ପୁଣି ଆଜି ଆଖିରେ ନୀଳରଙ୍ଗର ପିଚକାରୀ ଭରି ମୋ ଉପରକୁ ପକାଉଛନ୍ତି, ମୁଁ ମନାକରିବି କାହିଁକି ? କିନ୍ତୁ ସେ କ'ଣ ମୋ ପିଚକାରୀ ସହ୍ୟକରିପାରିବେ, କାରଣ ସେ କେବଳ ଗଛିର ଫୁଲ । କିନ୍ତୁ ମୁଁ ଯେ ବାଲିଗରଡ଼ା ।

ମୁଁ ହୋରି ଖେଳିବି କୃଷ୍ଣ ହୋଇ ରାଧାଙ୍କ ସଙ୍ଗରେ ।

ସେ ଜଣେ ପ୍ରେମାସ୍ପଦ ଲେଉ ।

ମୁଁ ଜଣେ ଆହତ ଶବ । ମୋର ମୃତ୍ୟୁ ଅନେକ ଆଗରୁ ହୋଇସାଇଛି ; ମାତ୍ର ମୋତେ ପୁଣି ବଞ୍ଚିବାକୁ ହେବ ।

ସତକଥା କହିବାକୁ ଗଲେ ମୃତ୍ୟୁର ଯନ୍ତ୍ରଣାକୁ ଭୁଲିବାପାଇଁ ମୁଁ ଆଜି ହୋରି ଖେଳୁଛି । ମୁଁ ଜାଣେ ସେଥିରେ ବେଦନା ଅଛି, ତଥାପି ସାମୟିକ ଆନନ୍ଦ ତ ଅଛି !

ଗୋଟିଏ ମୁହୂର୍ତ୍ତି ଯଦି ଜୀବନ ହୁଏ ତେବେ ପ୍ରତ୍ୟେକ ମୁହୂର୍ତ୍ତି ହିଁ ମୋର ହୋରିରେ କଟିଯାଉ ।



# କ୍ଷୁଧା

## ।। ଶ୍ରୀ ଶିଶିର ମହାପାତ୍ର ।।

ଡାକ୍ତରଖାନା କେନାଲ ବନ୍ଧ ଉପରକୁ ରମଣୀରଞ୍ଜନ ଛୁଟି ଆସିଲେ । ବନ୍ଧତଳ ଶ୍ମଶାନରେ ଅଗ୍ନିକୁଣ୍ଡ ସେତେବେଳ ଯାଏ ଜଳୁଥିଲା । ସେହି ଅଗ୍ନିର ଶିଖାଠାରୁ ତାଙ୍କ ମନ ଆହୁରି ଉତ୍ତପ୍ତ ହୋଇଉଠୁଥିଲା । ଶେଷଥର ପାଇଁ ବାଷ୍ପାକୁଳ ଚକ୍ଷୁରେ ଦୃଷ୍ଟିଦେଇ ରମଣୀରଞ୍ଜନ ହସପିଟାଲ ରୋଡ଼କୁ ମୁହାଁଇଲେ ।

ଅପର ପାର୍ଶ୍ୱରେ ଥିବା ବିରାଟ ଜନାନା ହସପିଟାଲ । ଏହିଠାରେ ନିଜ ଜନ୍ମକଲା ମା'ର ଆତ୍ମାଟା କୁଆଡ଼େ ଶୂନ୍ୟରେ ଉଭେଇ ଗଲା । ସେହି ହସପିଟାଲରୁ ଯେପରି ଗମ୍ଭୀର ସ୍ୱରଟି ତାଙ୍କ କର୍ଣ୍ଣ ଗହ୍ୱରରେ ପ୍ରବେଶ କରି ପ୍ରତିଧ୍ୱନିତ କରୁଥିଲା—"ରମଣୀବାବୁ, କିଛି ଟଙ୍କା ଖର୍ଚ୍ଚ କଲେ ସେ ବଞ୍ଚିପିବେ ।"

ଏହିପରି ପନ୍ଦର ବର୍ଷ ପୂର୍ବରୁ ନିଜ ବାପାଙ୍କର ଚିତାଗ୍ନି ଠିକ୍ ସେହିଠାରେ ଜଳିଉଠିଥିଲା । ସେତେବେଳର ବାଳକ ରମଣୀରଞ୍ଜନ କିଛି ବୁଝିପାରି ନ ଥିଲେ । ଖାଲି ନିଜ ମା'ର କରୁଣ ଚିତ୍କାରକୁ ସେ ହତ୍‌ବାକ୍ ହୋଇ ଦେଖୁଥିଲେ । ଆଜି କିନ୍ତୁ ସେ ବୁଝିପାରିଛନ୍ତି—ମୃତ୍ୟୁଟା କଣ !

ରମଣୀ ରଞ୍ଜନଙ୍କ ପୁରୁଷ ଆତ୍ମାଟା ଚିତ୍କାର କରିଉଠୁଥିଲା ନିଜ ଜନ୍ମକଲା ମା ପାଇଁ । ମା'କୁ ବଞ୍ଚାଇବା ପାଇଁ ଅର୍ଥ ପାଇଲେ ନାହିଁ । ଶେଷରେ ମଲା ଶରୀରଟାରୁ ଚୁଡ଼ି ଭନାଟିକୁ ମଧ କାଢ଼ି ନିଆଗଲା—କୁଆଡ଼େ ଦେହରେ କିଛି ରହିଲେ ଶବଟା ପୋଡ଼ିବ ନାହିଁ ? ଶୂନ୍ୟ ହସ୍ତରେ ଯେ ଜନ୍ମନିଏ—ସେ ଶୂନ୍ୟ ହସ୍ତରେ ଯାଏ ! ସେ ବା କଣ ଦେଇ ପାରିଥାନ୍ତେ ?

ରମଣୀରଞ୍ଜନ ନିଜର ଜୀବନକୁ ଧିକ୍‌କାର କରୁଥିଲେ । ବିରାଟ ପୃଥିବୀରେ ନିଜର ସତ୍ତାକୁ ସେ ମାପୁଥିଲେ । ଏତେବଡ଼ ସହରଟା ଯେପରି କି ତାଙ୍କୁ ବିଦ୍ରୁପ କରୁଚି । ସେ ଅଧାପାଠୁଆ । ଗ୍ରାଜୁଏଟ୍ ହୋଇପାରିଲେ ନାହିଁ । ଏ ସମାଜ ତାଙ୍କ ପାଇଁ ବଞ୍ଚିବାର ଖୋରାକ ରଖି ନାହିଁ ।

ରମଣୀରଞ୍ଜନଙ୍କ ବିଦ୍ରୋହୀ ମନ କ୍ଷୁଧାର ଜ୍ୱଳନରେ ଧୈର୍ଯ୍ୟ ହରାଇଥିଲା । ଏ ବିରାଟ ସମାଜରେ ସେ ଏକା । ଏ ଭୌତିକ ଦୁନିଆରେ ତାଙ୍କର ଆପଣାର ବୋଲି କିଛି ନାହିଁ । ସବୁକିଛି ତାଙ୍କ ପାଇଁ ବିଷାକ୍ତ । ଏ ଅନ୍ଧ ପୃଥିବୀରେ ସେ ଜଣେ ଅନ୍ଧ । ପାଗଳଙ୍କ ଦୁନିଆରେ ସେ ବି ପାଗଳ । ସେ ନିଜକୁ ଖୋଜୁଥିଲେ ଜନ୍ମ ଓ ମୃତ୍ୟୁର ବ୍ୟବଧାନ ମଧ୍ୟରେ । ସମସ୍ତଙ୍କର ଜୀବନ ଦର୍ଶନ ବଞ୍ଚିବାପାଇଁ ।

ସେ କାହିଁକି ନ ବଞ୍ଚିବେ ? ବଞ୍ଚିବା ପାଇଁ ଉପାୟ ଖୋଜିବାଠାରୁ ଆତ୍ମହତ୍ୟା କରିବା କ'ଣ ଶ୍ରେୟସ୍କର ?

ରମଣୀରଞ୍ଜନ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରୁ ନ ଥିଲେ । ଆତ୍ମହତ୍ୟା ମହାପାପ । ପୁଣି ଏହାହିଁ ପଳାୟନ ପନ୍ଥୀର ମନୋଭାବ । ତଥାପି ସେଦିନ ସମ୍ବାଦପତ୍ରରେ ପ୍ରକାଶ ପାଇଛି—ନିଜର ତିନୋଟି ସନ୍ତାନଙ୍କୁ ବିଷ ଖୁଆଇ ଜଣେ ଶିକ୍ଷିତ ବ୍ୟକ୍ତି ଆତ୍ମହତ୍ୟା କଲେ । ଅଥଚ ଏହି ସହରରେ ସେହିଦିନ ଦିନେ ଯୁବକ ଜବରଦସ୍ତ ଜଣେ ପୁଞ୍ଜିପତିଙ୍କୁ ହତ୍ୟାକରି ଅର୍ଥ ଛଡ଼ାଇ ନେଲେ । ସବୁ ସମୟରେ ଏହି ଜୀବନ ଦର୍ଶନ ଲାଗିରହିଛି—'ମାଇଟ୍ ଇଜ୍ ରାଇଟ୍'; ଅର୍ଥାତ୍ ଜୋର୍ ଯାହାର ମୁଲକ ତାହାର । ସେଇଥିପାଇଁ ଡାରଉଇନ୍ ବିବର୍ତ୍ତନର ଥିଓରି ଆମ ଆଗରେ ରଖି ଦେଲେ ।

ରମଣୀରଞ୍ଜନଙ୍କ ଘରପାଖରେ ସହର···ଖାଲି ସହର, ଏହି ସହରରେ ସମସ୍ତ ଗଳିକନ୍ଦି ତାଙ୍କର ପରିଚିତ । ରାତାରାତି ମହାଜନୀ ହୋଇ ବୁର୍ଜ୍ଜୁୟାର ପନ୍ଥା ଧରିବାଟା ଯଥେଷ୍ଟ ଭଲ ହୁଅନ୍ତା । ନା ଏଥିରେ ପାପ ଅଛି । ପାପ ? ଏହାର ତ କିଛି ସଂଜ୍ଞା ନାହିଁ । ତେବେ···ତେବେ ସେ ପାଓନିଅର ହେବେ ? କେଉଁଥିରେ ? ଅର୍ଥବିପ୍ଳବ ଆଣିବେ···ଧନୀଙ୍କଠାରୁ ଜବରଦସ୍ତ ଧନ ଛଡ଼ାଇଆଣି ଗରିବଙ୍କୁ ବାଣ୍ଟିଦେବେ, କହିବେ—ଖାଅ, ଶାନ୍ତିରେ ରୁହ । ନା, ଏଗୁଡ଼ାକ ତାଙ୍କର ଉଦ୍ଭଟ ଚିନ୍ତା । ସମସ୍ତେ କେବେ ସମାନ ହୋଇପାରିବେ ନାହିଁ । ଏ ପର୍ଯ୍ୟନ୍ତ ପୃଥିବୀର କୌଣସି ଦେଶରେ ଅର୍ଥର ମାନଦଣ୍ଡ ସମାନ ହୋଇନାହିଁ । ତାହେଲେ ?—

ନିଜ ପ୍ରଶ୍ନ ବାଣରେ ରମଣୀରଞ୍ଜନ ରକ୍ତାହତ ହେଉଥିଲେ । ନିଜକୁ ନିଜେ ରକ୍ତରେ ରଂଜିତ କରି ବନ୍ଧୁକ ଧରିବେ···ବୁଲେଟ୍ ଭୁଷିବେ ?? ସମାଜକୁ ଶିକ୍ଷା ଦେବେ । କହିବେ—ହେ ସମାଜ ଆଖି ଖୋଲ । କଳାବଜାର ବନ୍ଦକର । ନାରୀମାନଙ୍କର ଗୁପ୍ତ ପ୍ରଣୟ···କକ୍‌ଟେଲ ପାର୍ଟି...ନଗ୍ନ ଡ୍ୟାନ୍‌ସ ସବୁକିଛି ବନ୍ଦକର । ଆମେ ଚାହୁଁନାହିଁ ଭୋଗ ବିଳାସ, ମଦ୍ୟ ବା ନାରୀ । ଆମକୁ ଘଣ୍ଟେ ଖାଇବାକୁ, ପିନ୍ଧିବାକୁ ଦେଇ ବଞ୍ଚିବାର ଅଧିକାର ଦିଅ । ନଚେତ୍···ନଚେତ୍ ତୁମକୁ ପଙ୍ଗୁ କରିଦିଆଯିବ । ତୁମ ଉପରେ ବୋମା···ବୋମା ··· ଖାଲି ବୋମା । ସେ ବିସ୍ଫୋରଣରୁ ତୁମେହିଁ ଶିଖିବ । ତୁମେ କିଏ...କେଉଁଠାରୁ ଆସିଛ ।

ରମଣୀରଂଜନ ନିଜ ଭାବନାଟାକୁ ଜୋର୍ ଦେଇପାରୁ ନଥିଲେ । ତାଙ୍କ କଥା କିଏବା ଶୁଣିବ—ଯେଉଁମାନେ ଟପ୍ ଇଣ୍ଟେଲେକ୍‌ଚୁଆଲ୍‌ସ...ପରଫେକ୍ଟ ଜେଣ୍ଟଲ୍‌ମ୍ୟାନ୍ ?? ନା ଏମାନଙ୍କୁ ନେଇ କିଛିଯାଇ ପାରେନା । କେବଳ ସେଇମାନେ...ଯେଉଁମାନେ ବସ୍ତିରେ ଅନ୍ଧାରରେ ଘୃଣିତ ସେଇମାନେହିଁ ବୁଝିବେ । ସେମାନେ କହିପାରିବେ କାହିଁକି ତାଙ୍କର ମା'ଟା ଏତେ ଜଓ୍ବାନ ବୟସରୁ ମରିଗଲା । ଆଉ ବାପା ? ତାଙ୍କୁ ଅସଭ୍ୟ ସମାଜ ଠକି ଦେଇଛି ।

ରମଣୀରଞ୍ଜନ କୌଣସି ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ ନିଜ ବୁଢ଼ୀଆଙ୍କୁ ଫେରିଯିବାକୁ ମନସ୍ଥ କଲେ । ସେହି ଗୃହରେ ଯାହାକିଛି ଗୋଟାଏ ସିଦ୍ଧାନ୍ତ କରିବାକୁ ହେବ ।

ଏ ସମାଜର ନୈତିକ ମାନଦଣ୍ଡକୁ ବଞ୍ଚାଇବା ପାଇଁ ଓ ସାମାଜିକ ନିଷ୍ପେଷଣର ରୂପକୁ ବଦଳାଇ ବିପ୍ଳବର ସ୍ୱର ତୋଳିବାଟା ଯଦି ସତ୍ୟ ହୁଏ—ତାହେଲେ ସେ ଏଥିପାଇଁ ପଛାଇବେ ନାହିଁ ।

ଯୁବକ ରମଣୀରଞ୍ଜନ ଶାନ୍ତ, ନମ୍ର । ମାତ୍ର ଆଜିର ବିଦ୍ରୋହୀ ମନ କିଛି ମୀମାଂସା ଚାହିଁଛି ।

ସେ ଏବେ ମେଡ଼ିକାଲ ରୋଡ଼ରୁ ରିଙ୍ଗ ରୋଡ୍ ଆଡ଼କୁ ମୁହାଁଇଲେ । ରାସ୍ତାର ଅପରପାର୍ଶ୍ୱରୁ କେତୋଟି ମେଡିକାଲ କଲେଜର ଛାତ୍ରୀ ଆସୁଛନ୍ତି । ସେମାନେ ରମଣୀରଞ୍ଜନଙ୍କ ଆଡ଼େ ଚାହିଁ କ'ଣ କଥାବାର୍ତ୍ତା ହେଲେ । ପୁଣି ହସିଲେ ।

ରମଣୀରଞ୍ଜନ ଅପ୍ରତିଭ ହୋଇପଡ଼ିଲେ । ତାଙ୍କୁ କ'ଣ ଏମାନେ ବିଦ୍ରୂପ କରୁଛନ୍ତି ? ସେ ମୁଣ୍ଡ ଟେକି ଚାହିଁଲେ । ସେଥିମଧ୍ୟରୁ କେତେଜଣ ତାଙ୍କର ପରିଚିତା କଲେଜ ଫ୍ରେଣ୍ଡ୍ । ଅସଜଡ଼ା କେଶ ଓ ମଇଳା ଧୋତି ପଞ୍ଜାବୀକୁ ନିଜେ ଚାହିଁ ସେ ଚମକି ଉଠିଲେ । ଆଜିର ଅଧାପାଠୁଆ ରମଣୀରଞ୍ଜନ ଦରିଦ୍ର ବେଶ ସେମାନଙ୍କର ଶୀକାର ହୋଇଛି । ସେ ପ୍ରଫେସରଙ୍କ କ୍ଲାସ ରୁମ୍‌ର ବେଷ୍ଟ୍ ଷ୍ଟୁଡ଼େଣ୍ଟ ନୁହେଁ, କଲେଜର ସ୍କଲାର ନୁହେଁ କିମ୍ବା ଡ୍ରାମାର ହିରୋ ନୁହେଁ । ସେ ଆଜିର ଜନସମୁଦ୍ରର ଜଣେ କ୍ଷୁଦ୍ର ମନୁଷ୍ୟ ।

ରମଣୀରଞ୍ଜନଙ୍କର ହାଇ ଏମ୍ବିସନ୍ ଆଜି ନାହିଁ । ତାଙ୍କ ସମ୍ମୁଖରେ ଆଜି ବିରାଟ ପୃଥିବୀ—ଯେଉଁଠାରେ ସବୁ ଅଛି ପୁଣି ସବୁ ନାହିଁ ।

ରମଣୀରଞ୍ଜନ ଲଜ୍ଜାରେ ମୁହଁ ପୋତି ବାଟଭଙ୍ଗ ଅନ୍ୟ ରାସ୍ତାକୁ ପଳାଇ ଆସିଲେ । ଅଦୂରର ପାନଦୋକାନ ପାଖରେ ଠିଆହୋଇଥିବା ଫ୍ରକ୍ ପିନ୍ଧା ଝିଅଟିଏ ଠିଆ ହୋଇଥିବାର ଦେଖିଲେ । ବୋଧେ ସ୍କୁଲ ଯିବା ବାଳିକାଟିଏ । ବିପରୀତ ଦିଗରୁ ନଲପେଣ୍ଟ୍ ସହ ପଞ୍ଜାବୀ ପିନ୍ଧା ଟୋକା ଜଣେ ସାଇକେଲ ଚଲାଇ ତା' ନିକଟରେ ଚାଲିଗଲା ଏବଂ ସେ ଝିଅଟି ଛାତିର ଫ୍ରକ୍‌ଭିତରୁ କାଗଜଟିଏ ବଢ଼ାଇଦେଲା ।

ରମଣୀରଞ୍ଜନ ଘୃଣାରେ ଅସହ୍ୟ ହୋଇଉଠିଲେ । ଚାହୁଁଥିଲେ ଠୋ କରି ଚାପୁଡ଼ାଏ ବସାଇଦେବେ । ପିତାମାତାଙ୍କ ଅଗୋଚରରେ ବାଳିକାର ଆଜିଠୁଁ ପ୍ରେମ କରିବା କେଡ଼େ ସହଜ ସତେ ! ନିଜକୁ ସେ ସମ୍ଭାଳି ନେଲେ । ନିଜର ଭଉଣୀ ହୋଇଥିଲେ ବା......

ଏ ସହରର ଇତିହାସ ନୂଆ ନୁହେ । ଏ ସହର ବହୁତ ଜନ୍ମ ଦେଇଛି । ବହୁତଙ୍କୁ ମାରିଛି । ପ୍ରେମଟା କିଛି ନୂଆ ନୁହେଁ । ପଶୁ ପକ୍ଷୀ ପ୍ରେମ କରୁଛନ୍ତି ।

ମନୁଷ୍ୟ ବ ପ୍ରେମ କରୁଛୁ । ମାତ୍ର ତଫାତ୍‌ଟା ତ ସେଇ ପଶୁ ଓ ମନୁଷ୍ୟର ସଂଜ୍ଞା ଭିତରେ !

ଆଉ କେତୁବାଟ ଗିବା ପରେ ଫୁଟପାଥ୍ ଉପରୁ କାହାର ବିକଳ ଶବ୍ଦ ଶୁଣି ଚାଲି ଗ୍ଲହଁଲେ—କୁଷ୍ଠରୋଗ ଦ୍ୱାରା ଆକ୍ରାନ୍ତ ମାଇକିନାଟାଏ ।

ରମଣୀରଞ୍ଜନ ଚମକି ଉଠିଲେ ।

ଗର୍ଭବତୀ ଭିକାରୁଣୀ ! ଶୂନ୍ୟ ପକେଟ୍‌ରେ ହାତ ପୂରାଇ ଆଗକୁ ଚାଲିଲେ ।

ଏବେ ନିଜ ଘରମୁହାଁ ବସ୍ତିକୁ ଆଗେଇଲେ । ନିଜ କୁଡ଼ିଆ ଘରଟାକୁ ନିଜେ ଦେଖି ଆଶ୍ଚର୍ଯ୍ୟ ହେଲେ । ଘରଟା ଖୋଲା ପଡ଼ିଛି । ଅପର ପାର୍ଶ୍ୱରେ ଥିବା ବିରାଟ ଦେବଦାରୁ ଗଛରୁ ରେଡ଼ିଓଟା ଚିତ୍କାର କରୁଛି । ସମବେଦନା ବଦଳେ ଯେପରି ତାହା ରମଣୀରଞ୍ଜନଙ୍କୁ ବିଦ୍ରୂପ କରୁଛି ।

ଅଧାଖୋଲା ଘରକୁ ପ୍ରବେଶ କରିବାକୁ ରମଣୀରଞ୍ଜନ ଭୟକଲେ । ସେ କୁଡ଼ିଆରୁ ଆଉ ଧୂଆଁ ଉଠୁନାହିଁ ? ଚୂଲି ବି ଆଉ ଜଳିବ ନାହିଁ । ଘରେ ନିଶ୍ଚୟ ନିଜ ମା'ର ଅମର ଆତ୍ମାଟା ଭୂତ ହୋଇ ଘୂରିବୁଲୁଥିବ ।

ତଥାପି ସାହସ ବାନ୍ଧି ରମଣୀରଞ୍ଜନ ଗୃହ ମଧ୍ୟକୁ ପ୍ରବେଶ କଲେ । ଦୌଡ଼ିବନ୍ଧା ଖଟ ଉପରେ କିଏ ଜଣେ ଧଳାଶାଢ଼ୀ ପିନ୍ଧି କାନ୍ଦୁଛି । ଏ କିଏ ? ଚମକି ଉଠିଲେ ରମଣୀରଞ୍ଜନ ! ନିଜ ମା'ତ ନୁହେଁ !! ଝାପ୍‌ସା ଝାପ୍‌ସା ଅନ୍ଧାର ଭିତରେ ସେ ଆଗେଇଗଲେ ।

ରମଣୀରଞ୍ଜନ ନିଜକୁ ନିଜେ ବିଶ୍ୱାସ କରି ପାରୁନଥିଲେ । ଯେପରି ଏ ସହର, ଆଜି ଅସତ୍ୟ ସହର । ଏ ସହରରେ ସବୁକିଛି ସମ୍ଭବ । ସତ୍ୟ, ଧର୍ମ, ଆନନ୍ଦ ପୁଣି ଅସତ୍ୟ, ଅଧର୍ମ, ନିରାନନ୍ଦ ହୋଇଯାଏ । ବିଷର ଜ୍ୱାଳା ଯେପରି ତାଙ୍କର ସର୍ବାଙ୍ଗକୁ ଜାଳିପୋଡ଼ି ଅତୀତକୁ ଅସ୍ୱୀକାର କରୁଛି ।

ସେ ହେଉଛି ତାଙ୍କର ବାଲ୍ୟକାଳର ଅଚିହ୍ନଟ ପ୍ରେମିକା । ସେ ଆଜି ବିଧବା ?

ରମଣୀରଞ୍ଜନ ଭାବୁଥିଲେ—କାହାକୁ ସାନ୍ତ୍ୱନା ଦେବେ ; ନିଜକୁ ନା ତାକୁ । ନିଜର ଅତୀତ ବର୍ତ୍ତମାନ ଓ ଭବିଷ୍ୟତ ଯେପରି ତାଙ୍କ ଜୀବନର ଗୋଟିଏ ଜଟିଳ ତ୍ରିଭୁଜ । ଭବିଷ୍ୟତ ପାଇଁ ସେ ଦୁହେଁ ଯେପରି କୁଟୀଳ ବନ୍ଦିନୀ । ଏ ସମାଜର ଯୌନ କ୍ଷୁଧାଠାରୁ ପେଟର ଜ୍ୱାଳା ବଡ଼ ବୋଲି ସେ ଭାବିଥିଲେ । ମାତ୍ର ତାଙ୍କ ସମ୍ମୁଖରେ ସବୁଠାରୁ ବଡ଼ ଜ୍ୱାଳା ଦେଖାଯାଉଥିଲା ସମାଜ ଓ ସଂଘର୍ଷ । ଯାହାକି ଏ ଦୁହିଁଙ୍କୁ ଅନ୍ଧକାରର ବସ୍ତିରେ ଅନ୍ଧ କରିଦେବ ।



# ଚିଠି

● ତ୍ରିଲୋଚନ ମହାକୁଲ

ଓଡ଼ନ୍
ଜୁନ ସତେଇଶି

ପ୍ରେମ ସଳିଳା,

ଚିଠି ପାଇଛୁ । କେବଳ ମୋର ସ୍ୱାସ୍ଥ୍ୟ ଓ ତମ ପାଖକୁ ଯିବାର ନିମନ୍ତ୍ରଣ । ଯେତେ ଛିଅ ଚିଠି ଲେଖନ୍ତ ସମସ୍ତଙ୍କର ପରିସୀମା କ'ଣ ଏଇ ଭିତରେ ? ପର ଚିଠିରେ ଜୀବନର ଓ ପୃଥିବୀର ଅନ୍ୟକଥା ଲେଖିବ ।

ମୋର ମନ-ଆକାଶରେ ଅନ୍ୟ ଦିଗନ୍ତର ମେଘ ଆସିଥିଲା । ମାତ୍ର ସେଇ ମେଘ ଓ ତା'ର ଅଶାନ୍ତ ପବନରେ ମୁଁ ଚହଲି ନାହିଁ । ମେଘ ଦୂରେଇ ଯାଇଛୁ । କିନ୍ତୁ ସ୍ମୃତିର ଶ୍ୟାମଳ ଆସ୍ତରଣ ବେଳେ ବେଳେ ଆଉ ମଣିଷର ସେଇ ସ୍ୱପ୍ନ ଦେଖିବାର ପଥ, ହଜାଇବାର, ପାପ କରିବାର ଦୁରନ୍ତ ଅଭୀପ୍ସା ଅତି କମନୀୟ ଭାବରେ ଉଦ୍‌ଘାଟନ କରେ । ସମସ୍ତର ସରଳ ସଙ୍କେତ ମୋର ଚେତନା ଓ ବିଶ୍ୱାସକୁ ସମ୍ପୂର୍ଣ୍ଣ ବଦଳାଇ ଦେଇଛୁ । ତଥାପି ଅଭ୍ୟାସ ବଦଳି ନାହିଁ । ବିଶେଷ ପରିଶ୍ରମ କରିହେଉନ । ସ୍ୱପ୍ନ ଏତେ ଫେନିଳ ହୋଇ ଉଠୁଛୁ ଯେ ସାଧାରଣ ପ୍ରତ୍ୟାଶା ଜୀବନରେ କିଛି ନୁହେଁ ବୋଲି ଧାରଣା ହେଉଛୁ ।

ଜୀବନ ମୋ ପାଇଁ ଏକାନ୍ତ ନିର୍ଜନ । ସମସ୍ତ ଯାହା ନେଇଗଲା ତାହା କେବେ ଫେରାଇ ଦେବନାହିଁ । ଦୂର ସମ୍ବଲପୁରରେ ତୁମର ଅଞ୍ଚଳତଳେ କିଞ୍ଚିତ ସ୍ଥାନ ପାଇଁ ଅନୁରୋଧ ଜଣାଇଥିଲି । ମାତ୍ର ଏ ଦରିଦ୍ର ରଇତର ଯେ କରୁଣ ପୃଷ୍ଠଭୂମି ଆଜି ମଧ୍ୟ ଅପ୍ରାପ୍ତିର ଅବର୍ଣ୍ଣନୀୟ ଜ୍ୱାଳାରେ ଲୋହିତ । ତୁମ ପ୍ରତି ଅନ୍ୱେଷା ଏତେ ରଙ୍ଗୀନ୍ ହୋଇଥିଲା ଯେ କି ମର୍ମନ୍ତୁଦ ଜ୍ୱାଳା ଧରି କଣ୍ଟକ ଗୁଳିଆସିଲି ତାହା ମୋତେ ସେହି ବିଫଳ ଐତିହାସିକ ଯାତ୍ରାର ରୋମାଞ୍ଚ ଦିଏ । ଏକଦା ମୋର ଗପ, କବିତା ଲେଖାର ତୁମେ ଥିଲ ନେପଥ୍ୟବାସିନୀ ପ୍ରେରଣା । ମୋର ମନେ ଅଛୁ ସେଇ ଅପରାହ୍ଣ, ଯେତେବେଳେ ତୁମ ଓଷ୍ଠ ପାଖେଇ ଆସିଥିଲା ଓ ମୋ ଓଷ୍ଠ ନଇଁ ଯାଇଥିଲା—ଅବିସ୍ମରଣୀୟ ସେହି କମ୍ପନ, ସେହି ଭୀତ ଓ ଲଜ୍ଜିତ ଗୌରବ ।

ଆଜ ସେସବୁ ଫେରୁନାହିଁ । ମନେ ହେଉଚ୍ଛ ଆକାଶର ଓ ଜୀବନର କେଉଁ ପ୍ରଥମ ତାରୁଣ୍ୟରେ ସେ ସବୁ ଲଜ୍ଜା, ସଙ୍କୋଚ, ଭୀତ, ଶିହରଣ, ପ୍ରୀତ ଯେମିତ ସବୁଜ ଥିଲା; ଆଜ ସେମାନଙ୍କର ସ୍ମୃତ କେବଳ ଜୀବନକୁ ବେଢ଼ି ଧରୁଚ୍ଛ

କାହିଁ ସମ୍ବଲପୁରର ସେ ଅବସ୍ମୃତ ଲଳତ ଅତୀତ ଓ କଟକର ଲକ୍ଷ ଲକ୍ଷ ବଦଗ୍ଧ ମୁହୂର୍ତ୍ତ । ଶ୍ୱେତାଙ୍ଗ-କୃଶାଙ୍ଗୀ ମଡ଼ଗନ୍‌ଙ୍କ ପାଇଁ ଆୟାରଲଣ୍ଡର କବ ଉଇଲ୍‌ଅମ ବଟଲର ୟେଟସ୍‌ଙ୍କ ଜୀବନକାଳ ଆଚ୍ଛନ୍ନ-ଶ୍ରାବଣ ହେଲା ପରେ ମୋର ସ୍ୱପ୍ନମୟ ଯୌବନ ଅସ୍ତମିତ । ତଥାପି ମୋର ମାନସର ଅଲିଭା ପଟରେ ତୁମେହିଁ ତାରୁଣ୍ୟର ଶେଷଝାନ କମ୍ପନ ତୋଳଯାଇଛ । ସେ ଲାବଣ୍ୟର ଦ୍ୟୁତ ଚର ଅମ୍ଲାନ ରହବ ।

କଟସଙ୍କ ସହ ମୁଁ ଏକମତ ନୁହେଁ । ମୋ ପାଇଁ ଅଶ୍ରୁତ ବା ପ୍ରତୀକ୍ଷିତ ସଙ୍ଗୀତଠାରୁ ଶ୍ରୁତ ଓ ଅତୀତ ସଙ୍ଗୀତ ମୋପାଇଁ ମଧୁରତର । ସେ ସଙ୍ଗୀତର ଗୁଞ୍ଜରଣ ପାଇଁ ଅବଚ୍ଛିନ୍ନ ସାମିପ୍ୟ ଲୋଡ଼ା । କନ୍ତୁ ତୁମେ ଯେ ବହୁ ଦୂରରେ ।

କଟକରେ ମୋ ଜୀବନ ପ୍ରବାହ ଖିନ୍ ଭିନ୍ ହୋଇଯାଇଛ । ପରଣତ ତୁମକୁ ଅଜଣା ନୁହେଁ । ମୋର ଆଉ ଧୈର୍ଯ୍ୟ ନାହିଁ । ସାହସ ମଧ୍ୟ ନାହିଁ । ତୁମେ ମୋର ନେପଥ୍ୟରେ ରହିବ । ମାତ୍ର ଏ ଉଦ୍‌ବେଳମୟର ବ୍ୟାପ୍ତ ମୀଳମା ତଳେ ମୋ ପ୍ରେମ, ମୋ ଜ୍ୱାଳାମୟ ଅନୁରକ୍ତି ଚର ଅନୁଦ୍‌ଘୋଷିତ ରହିବ । ତୁମେ ମୋର ପ୍ରଥମା ନାୟକ, ଲାବଣ୍ୟମୟୀ ଅଲକା ସାନ୍ୟାଲ—ଯାହା ପାଇଁ ଜୀବନର ସମସ୍ତ ସାଧନା ଯଥେଷ୍ଟ ନୁହେଁ । ଏଥିପାଇଁ ବାରମ୍ବାର ଧନ୍ୟବାଦ ଜଣାଉଛି । ଦୁଃଖ ନାହିଁ ।

ଲରେନ୍‌ସ କହନ୍ତୁ ଦେହର ମିଳନ ବନା ମନର ମିଳନର ପୂର୍ଣ୍ଣତା ଅସମ୍ଭବ । ଏହା ମୋର ଜୀବନର ଓ ସାହତ୍ୟର ସର୍ବଶ୍ରେଷ୍ଠ ସତ୍ୟ । ଉନଗାତ ଧରି ମୁଁ ଭାବଚ୍ଛ । ଦେଖିଚ୍ଛ ତୁମକୁ ନୀଳ ଶାଢ଼ୀର ମଧୁର ଆଶ୍ଳେଷରେ । ମାତ୍ର…

ଆମ୍ବ ବଉଳର ବଳାସ ମଉଳଲା । ପାଚଲା ଆମ୍ବର ବାସ୍ନା ସରିଗଲା । ତୁମେ ଆସିଲନ । କଦମ୍ବ ଫୁଟୁଚ୍ଛ । ତମେ ଆସିବ ନା ?

॥ ଏତକ ॥



# ତଥାପି କହିବି

॥ ଶ୍ରୀ କମଳାକାନ୍ତ ପଣ୍ଡା (କଳ୍ପାନ୍ତ) ॥

ମୁଁ ଏକ ବ୍ୟର୍ଥତାର ଇତିହାସ । ସମସ୍ତର ଚିପା ଖାତାରେ ଏ ଇତିହାସ ଏକାନ୍ତ ଅସ୍ପଷ୍ଟ ନିହାତି ନଗଣ୍ୟ । ହେଲେ ମୋ ମାନସିକ ସ୍ମୃତିପଟରେ ତାହା ଜୀବନ୍ତ ଓ ତାହାର ଆକ୍ରମଣଭଳି ବେଶି ତିକ୍ତ ଓ ଯନ୍ତ୍ରଣାଦାୟକ ।

ମୃତ୍ୟୁ ଯେତେବେଳେ ପାଟି ମେଲି କରି ଏଇ ଅଳ୍ପ ଦୂରରେ ଖଟେଇ ହେଉଛି ମୁଁ ଝୁରୁଛି ମୋର ବିଗତ ଦିନକୁ । ସେ ଦିନର ଘଟଣାଗୁଡ଼ିକ ଆଜି କଡ଼ଲେଉଟାଉଛନ୍ତି । ମୋର ମାନସିକ ଅବସ୍ଥା ଆଜି ଦୁର୍ବଳ । ତଥାପି ମୁଁ କହିବି । ଏଇ କହିବାରେ ହିଁ ମୋର ଶାନ୍ତି, ମୋର ଆନନ୍ଦ ।

ସହରର କୋଳାହଳମୟ ପରିସ୍ଥିତିଠାରୁ ଅଳ୍ପ ଦୂରରେ ମୁଁ ପ୍ରଥମଥର ପାଇଁ ଏ ଦୁନିଆର ଆଲୋକ ସହ ବନ୍ଧୁତା ସ୍ଥାପନ କଲି । ଗୁଳ ଘରଟିଏ । ହେଲେ ଖୁବ୍ ପରିଷ୍କାର, ପରିଚ୍ଛନ୍ନ । ବାପା ସରକାରୀ କର୍ମଚାରୀ ନହେଲେ ବି ତାଙ୍କର ବ୍ୟକ୍ତିତ୍ୱ ଥିଲା । ଜମିବାଡ଼ି, ଟଙ୍କା, ପଇସାର ଅଭାବ ଦିନେ ମୁଁ ଅନୁଭବ କରିନି । ଆଉ ମା' । ସେ ଥିଲେ ଅମୃତମୟୀ । ଦୁଃଖୀ, ରଙ୍କି ଯିଏ ଯେତେବେଳେ ଯାହା ମାଗିଛି ତାହା ପାଇଛି । ଏକମାତ୍ର ସନ୍ତାନ ଭାବରେ ସେଇ ଅଚଳାଚଳ ସମ୍ପତ୍ତିର ଉତ୍ତରାଧିକାରୀ ଥିଲି ମୁଁ ।

କିନ୍ତୁ ସବୁଥିରେ ପରିବର୍ତ୍ତନ – ବୟସରେ, ମନରେ ଆଉ ପ୍ରାକୃତିକ ଜଗତରେ । ପରିବର୍ତ୍ତନ ନଥିଲେ ସୃଷ୍ଟିର ମହତ୍ତ୍ୱ ବୁଝିବା ବୋଧେ ସମ୍ଭବ ହୋଇ ନ'ଆନ୍ତା । ଜୀବନକୁ ଉପଲବ୍ଧି କରିବାର ଯେଉଁ ଆକର୍ଷଣ ବୋଧହୁଏ ବିଲୋପ ଘଟିଥାନ୍ତା ।

ସେ ଦିନଟି ଠିକ୍ ମୋର ମନେ ନାହିଁ । ତଥାପି କାହିଁକି ମୁଁ ଗୋଟିଏ ଅଭାବ ଅନୁଭବ କରିଥିଲି । ସେ ଅଭାବ ଭାବର ଏବଂ ସମ୍ପର୍କର । ମୁଁ କାନ୍ଦିଥିଲି । ହୃଦୟ ହାହାକାର କରି ଉଠିଥିଲା । ଆଉ ପାଖ ମଶାଣିରେ ବାପାଙ୍କ ମୃତ ଦେହଟି ଯେତେବେଳେ ସମ୍ପୂର୍ଣ୍ଣ ପାଉଁଶରେ ପରିଣତ ହୋଇଥିଲା ସେଦିନ ଥିଲି ମୁଁ ଏକ ଅବୋଧ ଶିଶୁ । ଦୁନିଆର ଜଟିଳତାଠାରୁ ମୁଁ ଥିଲି ଦୂରରେ । ତଥାପି ମୋର ଗଣ୍ଡଦେଶ ଆର୍ଦ୍ର ହୋଇ ଯାଇଥିଲା । ବାପାଙ୍କର ମୁହଁ ଆଜି ମୋ ପାଖରେ ଝାପ୍‌ସା ଅନ୍ଧକାର ଭଳି ହେଲେ ବି ମୋ ମା'ଙ୍କ ସ୍ନେହାଶିଷ ମୁହଁଟି ଏବେ ବି ମନେ ପଡ଼େ । ମୋ ମା'ର ଆଲୋକ ଚିତ୍ର ମୋ ପାଖରେ ନ'ଥାଇ ପାରେ ହେଲେ

ସେ ହସନ୍ତା ମୂର୍ତ୍ତି ଏଇ କେଇଦିନ ହେଲା ପୁଣି ମୋ ଆଖି ଆଗରେ ବେଶୀ ବେଶୀ ନାଚ ଉଠୁଛି ।

ପୁଣି ମନେ ପଡ଼ୁଛି ସେଇ ମଶାଣି, ଭଙ୍ଗା ମାଠିଆ ଆଉ ଡାଆଣିଆ ଶିଖା । ଏ ସବୁ ସହ ପୁଣି ମୋର ସାକ୍ଷାତ ହେଲା ଠିକ, ବାପାଙ୍କ ମୃତ୍ୟୁର ଦେଢ଼ ବର୍ଷ ପରେ । ଯେତେବେଳେ ମା' ଶେଷ ନିଃଶ୍ୱାସ ତ୍ୟାଗ କଲା । ସେତେବେଳେ ମୁଁ ଥିଲି ଦଶ ବର୍ଷର ବାଳକ । ହାଇସ୍କୁଲ ଛାତ୍ର ।

ତଥାପି ଅନଶନ ସହ ମୋର ସାକ୍ଷାତ ହୋଇନି । ଦୁଃଖ, ଦାରିଦ୍ର୍ୟ, ଅନାଟନ ଭିତରେ ମୁଁ ପେଶିହୋଇ ଯାଇନି । କିନ୍ତୁ ଦୁଃଖ ବଢ଼ିଛି, ମୁଁ ଅଭାବ ଅନୁଭବ କରିଛି । ଏବେ ଭାବୁଛି ସେ ଅଭାବର ପୂରଣ ନାହିଁ । ସେ ଦୁଃଖର ସମାପ୍ତି ନାହିଁ ।

ମାମୁଁଙ୍କର ସାହାଚର୍ଯ୍ୟରେ ମୁଁ ବଢ଼ିଛି । ବଢ଼ିଛି ମୋର ବୟସ । ମୋର ଶରୀର ବୃଦ୍ଧି ଘଟିଛି । ହେଲେ ମୁଁ ମଣିଷଭଳି ମଣିଷଟିଏ ହୋଇପାରିନି । ମୋର ମାନବିକ-ଜ୍ଞାନବୃଦ୍ଧି ହୋଇନି । ମାମୁଁଙ୍କର ପ୍ରକୃତିସହ କ୍ରମଶଃ ନିଜକୁ ମିଶାଇ ଦେଇଛି । ମୋତେ ସେସବୁ ସେତେବେଳେ ଖୁବ୍ ଭଲ ଲାଗିଥିଲା ।

ଏବେ ଅନୁଭବ କରୁଛି ମାମୁଁ ଥିଲେ ଜଣେ ମଦ୍ୟପୀ । ମୋ ବାପାଙ୍କ ସଞ୍ଚିତ ଅର୍ଥହିଁ ଥିଲା ତାଙ୍କର ଫୂର୍ତ୍ତି କରିବାର ଏକ ଉପାଦାନ । ମୋର ମୁରବି ଭାବରେ ସେ ମୋତେ ମଣିଷଟିଏ ଗଢ଼ି ତୋଳିନାହାନ୍ତି । ସିମେଣ୍ଟ ତୁଳନାରେ ବାଲିର ପରିମାଣ ଅଧିକ ହୋଇଛି । ମୁଁ ତେଣୁ ଆଜି ଏକ ଅସମ୍ପୂର୍ଣ୍ଣ ଭଗ୍ନ କୋଠାଘର ।

ଦିନକର ଘଟଣା ଏବେ ବି ମୋର ଦିବସର ଆଲୋକଭଳି ସ୍ପଷ୍ଟ ମନେଅଛି । ହଠାତ୍ ସକାଳୁ ଉଠି ଶୁଣିଲି ମାମୁଁ ଡାକ୍ତରଖାନାରେ ମଦ୍ୟପାନ କରି ରାତିରେ ଘରକୁ ଫେରିବା ସମୟରେ ମଟର ଦୁର୍ଘଟଣାରେ ସେ ଆଘାତପ୍ରାପ୍ତ । ସଙ୍ଗେ ସଙ୍ଗେ ଯାଇଥିଲି ତାଙ୍କ ପାଖକୁ । କିନ୍ତୁ ପଦଟିଏ କଥାମଧ୍ୟ ହୋଇପାରିଲାନି । ମୁଁ ପହଞ୍ଚିବାର କିଛି ସମୟ ପୂର୍ବରୁ ତାଙ୍କର ନିଃଶ୍ୱାସ ବନ୍ଦ ହୋଇଯାଇଥିଲା ।

ସେତେବେଳେ ମୁଁ ପନ୍ଦରବର୍ଷର ଯୁବକ । ତଥାପି ମୋର ଆତ୍ମଜ୍ଞାନ ଫେରିଲାନି । ମାମୁଁଙ୍କ ପଥରେ ମୁଁ ପଥିକ । ତାଙ୍କର ଆଦର୍ଶକୁ ମୁଁ ଅନୁକରଣ କରିନେଲି । ଟଙ୍କାର ଅଭାବ ନଥିଲା । ଯୌବନରେ ମୁଁ ପଦାର୍ପଣ କରିଥାଏଁ । ଯୌବନ, ଟଙ୍କା, ମଦ – ମୋତେ ଅନ୍ଧକାର ରାସ୍ତାରେ ଯିବାପାଇଁ ଖୁବ୍ ବେଶୀ ସାହାଯ୍ୟ କରିଥିଲା ।

ମୁଁ ବିବାହ କରିନଥିଲି । ହେଲେ ମୋର ସମ୍ପର୍କ ଥିଲା 'ଅଗ୍ରୁ' ସହ । ସେ ଆମର ପଡ଼ୋଶୀ । ଗାଁର ଶେଷ ମୁଣ୍ଡରେ ଥିଲା ତାର ଘର । ବାପା ତା'ର ନଥିଲେ । କେବଳ ବିଧବା ମା' । ଅଭାବ, ଅନାଟନ ଥିଲା ତାଙ୍କର ଚିରସାଥୀ ।

ମୋର ଟଙ୍କା ପଇସା ପାଖରେ ଅଶ୍ରୁର କୁମାରୀତ୍ୱ ନଷ୍ଟ ହୋଇଥିଲା । ଅଯାଚିତ ଭାବରେ ମୁଁ ସେମାନଙ୍କୁ ସାହାଯ୍ୟ କରିଥିଲି ।

ଶେଷରେ ଦିନେ ଠିକ୍ କଲି ଅଶ୍ରୁକୁ ବିବାହ କରିବାକୁ । ପ୍ରସ୍ତାବ ଦେଲି । ଅଶ୍ରୁର ମା ରାଜିହେଲେ । ଅଶ୍ରୁର ମଧ୍ୟ ଆପତ୍ତି ନଥିଲା । ସେ ଆସିଲା ମୋର ପତ୍ନୀ ହୋଇ । ଏକୁଟିଆ ଘରେ ମଣିଷଟିଏ ବଢ଼ିଲା । ପୂର୍ବାପେକ୍ଷା ମୁଁ ଘରେ ରହିବାକୁ ଭଲପାଇଲି । ନିଃସଙ୍ଗତା ଆଉ ସେତେବେଶୀ ଜଣାପଡ଼ିଲା ନି ।

ହେଲେ ମୋର ମଦଖିଆ ବନ୍ଦ ହେଲାନି । ଅଶ୍ରୁ ବହୁବାର ଚେଷ୍ଟା କରିଛି ମୋତେ ସେଥିରୁ କ୍ଷାନ୍ତ କରିବାକୁ । ବହୁଥର ଅନୁନୟ କରିଛି । କାନ୍ଦିଛି । ଉପାସ ଶୋଇଛି ; ହେଲେ ମୋତେ ବଦଳାଇ ପାରିନି ।

ଦୀର୍ଘ ସାତବର୍ଷ ପରେ ମଧ୍ୟ ଆମ ଦୁଇଜଣଙ୍କ କୋଳରେ କୌଣସି ନୂତନ ଅତିଥିର ଆବିର୍ଭାବ ଘଟି ନି । ମୋ ଜୀବନ ଇତିହାସର ଏକ ଦାଗଧରୁଷ୍ଠା ଏକ ଅବିସ୍ମରଣୀୟ ଘଟଣା । ସେଇ ମଦ ଖାଇବା ଉପରେ ସେଦିନ ରାତିରେ ଅଶ୍ରୁ ମୋ ଭିତରେ ଆରମ୍ଭ ହୁଏ ବଚସା । କ୍ରମଶଃ ତାହା ବଢ଼ିଗଲେ । ରାଗ, ରୋଷ ଅଭିମାନ – ସବୁ କିଛି ଅଶ୍ରୁର ଲିଭିଯାଏ । ସେ ହତୋତ୍ସାହ ହୋଇପଡ଼େ । ମୁଁ କିନ୍ତୁ ନିଷ୍ଠୁର । ତାକୁ ସାନ୍ତ୍ୱନା ଟିକିଏ ମଧ୍ୟ ଦେଇନି । ସେ ଉପାସ ଶୋଇଛି ବୋଲି ଜାଣିମଧ୍ୟ ତାକୁ ଖାଇବାକୁ ଡାକିନି । ରାତିସାରା ସେ କାନ୍ଦିଛି । ସକାଳେ ତକିଆ ସମ୍ପୂର୍ଣ୍ଣ ଓଦା ଥିଲା—ଏଇଥିରୁ ସ୍ପଷ୍ଟ ଅନୁମାନ କରିନେଲି । ତଥାପି ମଧ୍ୟ ମୁଁ କିଛି କହିନି । ଏକ ଜରୁରୀ କାର୍ଯ୍ୟରେ ଦାନ୍ତ ନ ଘଷି ବାହାରି ଯାଇଛି ବାହାରକୁ ।

ସବୁଦିନଭଳି ଅଶ୍ରୁ ତାର ନିତ୍ୟ ନୈମିତ୍ତିକ କାର୍ଯ୍ୟ ସମାପନ କରିଛି । ମୋ ପାଇଁ ଦୁଧ ଫୁଟାଇ ରଖିଛି । ଠାକୁରଙ୍କୁ ପୂଜା କରିଛି । ମୋର ମଙ୍ଗଳପାଇଁ ନିଶ୍ଚୟ ସେଇ ପଥର ମୂର୍ତ୍ତିଙ୍କୁ ଡାକିଥିବ । ତା'ପରେ ଚାହିଁ ଥିବ ମୋର ବାଟକୁ । କିନ୍ତୁ ମୁଁ ସେଦିନ ଶୀଘ୍ର ଫେରିନଥିଲି ଘରକୁ । ଅଶ୍ରୁ ତାର ମନକୁ ସ୍ଥିର ରଖି-ପାରିନି । ଯନ୍ତ୍ରଣାର ଆତିଶଯ୍ୟରେ, ଭବ ଓ ଆନ୍ତରିକତାର ଅଭାବରେ ସେ କରିଛି ଆତ୍ମହତ୍ୟା । ଆଉ ତାର ଆତ୍ମହତ୍ୟା ପାଇଁ ଏକାନ୍ତ ଭାବେ ଦାୟୀ ମୁଁ ।

× × × ×

ଆଜି ମୁଁ ନିଃସଙ୍ଗ । ଟଙ୍କା, ପଇସା ନାହିଁ । ପର ଉପରେ ନିର୍ଭର କରିବାକୁ ପଡ଼ୁଛି ।

ଅଶ୍ରୁର ମୃତ୍ୟୁପରେ ମଦ ମଧ୍ୟ ଛାଡ଼ିଦେଇଛି । ସେ ଯୌବନ ନାହିଁ । ଆଜିର ବାର୍ଦ୍ଧକ୍ୟ ମୋ ମନର ଏକ ଅଇନା । ଆଉ ସେ ଘଟଣାଗୁଡ଼ିକ ସେଥିରେ ଗୋଟିଏ ଗୋଟିଏ ପ୍ରତିଛବି ।

× × × ×

ମୋର ଏ କଳଙ୍କିତ ଆତ୍ମଲିପି ମୁ କହୁଛି—ମୋ ମନକୁ ଟିକିଏ ହାଲୁକା କରିବାପାଇଁ । ଆତ୍ମଗ୍ଳାନିରେ ଜର୍ଜ୍ଜରିତ ମୋର ମୃତଦେହ ପୁଣି ସେଇ ମଶାଣିକୁ ଯିବାପୂର୍ବରୁ ମୁଁ ଅନୁଶୋଚନା କରୁଛି ମାତ୍ର । ଆଜି ସେଇ ଦଗ୍ଧୀଭୂତ ଇତିହାସ ବଖାଣିବାରେ, ମୋର ବିଶ୍ୱାସ ମୁଁ ଶାନ୍ତି ପାଇବି—ପାଇବି ଆନନ୍ଦ ।



# ଉତ୍ତର ଉପତ୍ୟକା

।। ଶ୍ରୀ ଧୀରେନ୍ ଆଚାର୍ଯ୍ୟ ।।

ଅନୁପମ !

ଦୀର୍ଘ ଦଶବର୍ଷ ପରେ ଅପ୍ରତ୍ୟାଶିତ ଭାବେ ମୋର ଏ ଚିଠିଟି ପାଇ ଆଶ୍ଚର୍ଯ୍ୟ ହୋଇଯିବ ନିଶ୍ଚୟ । ସମ୍ପର୍କର ରେଳଗାଡ଼ି ନିର୍ଦ୍ଦିଷ୍ଟ ଷ୍ଟେସନ ଛୁଇଁବା ପୂର୍ବରୁ ହଠାତ୍ ଦିନେ ତୁମକୁ ନ ଜଣାଇ ବିନା ଟିକଟ ଯାତ୍ରୀ ପରି ମୁଁ ଚେନ୍ ଟାଣି ତଳକୁ ଓହ୍ଲାଇଗଲି । ମନର ଡାଏଲ ଉପରେ ଉତ୍ତେଜନାର ସାଙ୍କେତିକ କଣ୍ଟାଟା ପୁଣି ଥରେ ଜଗେ ପାଖକୁ ଫେରି ଆସିବା ପୂର୍ବରୁ ମୁଁ ତମଠାରୁ ବିଦାୟ ନେଇ ଚାଲି ଯାଇଥିଲି । ସେ ଦଶବର୍ଷ ତଳର କଥା । ସେତେବେଳେ ମୋର ଗ୍ରୀବ ତଳେ ହୁଏତ ସମୟର ଯନ୍ତ୍ରଣା ସୃଷ୍ଟି ହୋଇ ପାରିନଥିଲା କିମ୍ବା ମୋତେ ଆଖି ତଳୁ ବୟସର କଳା ଦାଗକୁ ମେକାପ ଦେଇ ଯଥା ସମ୍ଭବ ଲୁଚାଇବାକୁ ପଡ଼ୁ ନଥିଲା । ଆଜିପରି ସେଦିନ ମୁଁ ହାତ ଘଣ୍ଟାର ଟିକ୍ ଟିକ୍ ଶବ୍ଦରେ ସନ୍ତ୍ରସ୍ତ ହୋଇ ପଡ଼ୁ ନଥିଲି । ସତରେ ଅନୁପମ ! ଆଜି ହାତଘଣ୍ଟାର ସେକେଣ୍ଡ କଣ୍ଟାଟାକୁ ମୁଁ ଭାରି ଭୟ କରେ । ଏମିତି ଆଉ କିଛି ବର୍ଷ ସମୟର ସଙ୍ଗୀତ ଶୁଣେଇ ଶୁଣେଇ ସେ ମୋତେ ଏମିତି ଏକ ମୃତ୍ୟୁଭୂମିକୁ ଟାଣିନେବ, ଯେତେବେଳେ ଯଥେଷ୍ଟ ମେକାପ୍ ନେଇ ମଧ୍ୟ ବୟସର ଦାଗକୁ ଆଉ ଲୁଚେଇ ହେବନି । ସମୟର ବିଭତ୍ସ ଦାନ୍ତଗୁଡ଼ାକ ମୋତେ ସେତେବେଳେ ଛିନ୍ନଭିନ୍ନ କରି ଦେବେ । ବେଳେବେଳେ ମୁଁ ସ୍ୱପ୍ନ ଦେଖେ— "ଟ୍ରାଫିକ୍ ପୋଲିସ୍ ପରି ସମୟର ଗାଡ଼ିକୁ ହାତ ଟେକି ମୁଁ ଅଟକେଇ ଦେଇଛି ଏବଂ ମୋ ଭିତରେ ଖୁନ୍ଦି ହୋଇ ରହିଥିବା ଅନାବଶ୍ୟକ ଅବାଞ୍ଛିତ ସମୟଗୁଡ଼ାଙ୍କୁ ତାକୁ ଫେରାଇ ନେବାକୁ ବାଧ୍ୟ କରୁଛି ।" ସ୍ୱପ୍ନ ମୋର ଭାଙ୍ଗିଯାଏ । ସମୟର ଗତିଶୀଳ ସ୍ରୋତ ସହିତ ମୁଁ ଭାସି ଭାସି ଚାଲୁଥିବାର ଅନୁଭବ କରେ । ଘଡ଼ିର କଣ୍ଟାକୁ ପଛ ପାଖକୁ ଘୁରାଇ ସମୟର ସ୍ରୋତକୁ ପଶ୍ଚାତ୍‌ମୁଖୀ କରି ହୁଏନା, ବରଂ ହୃଦୟ ତଳେ ସମୟର ଯନ୍ତ୍ରଣା ଅଧିକ ତୀବ୍ର ହୋଇ ଉଠେ — ତଥାପି ମୁଁ ନିଜକୁ ଚେଷ୍ଟା କରି ବୁଝାଇ ପାରେନା ।

ଅନୁପମ, ଏ ଭିତରେ ଦଶ ବର୍ଷ ଧରି ସେକେଣ୍ଡ କଣ୍ଟାଟା ତା'ର ନିର୍ଦ୍ଦିଷ୍ଟ ଗତିରେ ଘୂରୁଛି । ମୁଁ ମଧ୍ୟ ଘୂରୁଛି । ହେଲେ ଘଡ଼ି କଣ୍ଟା ପରି ଏକ ନିର୍ଦ୍ଦିଷ୍ଟ ଗତିରେ ନୁହେଁ । ଭାବିଥିଲି ତମ ପାଖକୁ ଆଉ ଫେରିବିନି । ପ୍ରଜାପତିର ଡେଣା ନେଇ ଉଡ଼ି ଉଡ଼ି ସଭିଙ୍କୁ ଟିକିଏ ଟିକିଏ ଛୁଇଁ ଯିବାକୁ ମୋତେ ଭାରି ଭଲ ଲାଗେ ।

କାହାର ମନକୁ, କାହାର ଦେହକୁ, ଆଉ ବା କାହାର ଚୂନା ଚୂନା ସ୍ୱପ୍ନକୁ । ବନ୍ଧନର ଅଗ୍ନିକଣିକାରେ ମୋର ପାଗଳ ଓ ଚଞ୍ଚଳ ଡେଣା ଦୁଇଟିକୁ ଜାଳି-ପୋଡ଼ି ଦେବାକୁ ମୁଁ କେବେ ବି ଚାହିଁ ନି । ହେଲେ ଜାଣେନା ଆଜି କାହିଁକି ତମକୁ ଆଉ ଥରେ ଖୋଲା ଆଖିରେ ଦେଖିବାର ମନ ହେଲା ।

ଦଶ ବର୍ଷ ଧରି ତମର ଖବର ମୁଁ ରଖିନି । ରଖିବାକୁ ଚେଷ୍ଟା ମଧ୍ୟ କରିନି । କେଉଁଠି ବର୍ତ୍ତମାନ ଅଛ ତା' ମଧ୍ୟ ଜାଣେ ନା । ତମର ସେଇ ପୁରାତନ ଠିକଣାରେ ଚିଠି ଦେଲି । ଯଦି କୌଣସିମତେ ଏ ଚିଠି ତମ ପାଖରେ ପହଞ୍ଚିପାରେ, ତେବେ ଯେଉଁଠି, ଆଉ ଯେଉଁ ଅବସ୍ଥାରେ ଥାଅନା କାହିଁକି ନିଶ୍ଚୟ ଆସିବ । ଆମର ସେଇ ପୂର୍ବପରିଚିତ ଝାଉଁ ବଣ ନିକଟରେ ମୁଁ ତମକୁ ଆସନ୍ତା ରବିବାର ରାତି ଆଠଟା ସମୟରେ ଅପେକ୍ଷା କରିବି । ଅନ୍ତତଃ ଶେଷଥର ପାଇଁ । ଇତି ।

ତମର
ଲୀନା

ସତରେ ତମେ ଅଦ୍ଭୁତ ଲୀନା ! ତମେ ବିଚିତ୍ର !! ତମେ ଏକ ଜଟିଳ ଅଙ୍କ—ବାରବାର କଷି ମଧ୍ୟ ତମକୁ ମୀମାଂସା କରି ହୁଏନା । ତମେ ଏକ ଅତ୍ୟାଧୁନିକ କବିତା—ବାରମ୍ବାର ଆବୃତ୍ତି କରି ବି ତମକୁ ବୁଝି ହୁଏନା ।

ବର୍ତ୍ତମାନ ସକାଳ ଆଠଟା । ଆଉ ବାର ଘଣ୍ଟା ପରେ ତମର ଆସିବାର କଥା ।

କିନ୍ତୁ ସତରେ କଣ ତମେ ଆସିବ ? ହାତ କାଟି ଯେଉଁ ପ୍ରତିଶ୍ରୁତି ଦେଇଛ ତାହା କଣ ତମେ ରକ୍ଷା କରିପାରିବ ? ତମେ କଣ ଏବେ ବି ବନ୍ଧନୀମୁକ୍ତ ପ୍ରଥମ ସଂଖ୍ୟା !

ମୁଁ କିନ୍ତୁ ଏ ଭିତରେ ଏକ ବନ୍ଧନୀ ଭିତରର ସଂଖ୍ୟା ହୋଇ ପଡ଼ିଛି; ଆଉ ସେ ସଂଖ୍ୟାଟା କଣ ଜାଣ ? 'ଥ୍ରି' । ଯାହାକୁ ମେଜର୍ ନାମ୍ବର କୁହାଯାଏ । ତମ ପରି ମୁଁ ଦଶ ବର୍ଷ ତଳେ ପ୍ରଥମ ସଂଖ୍ୟା ଥିଲି । ହେଲେ ବର୍ତ୍ତମାନ ତିନୋଟି ସନ୍ତାନର ଜନନୀ ମୋର ସ୍ତ୍ରୀ ଅଞ୍ଜୁ ପ୍ରଥମ ସଂଖ୍ୟା । କାରଣ ପରିବାର ଚଳେଇବାର ସହଜ ଫର୍ମୁଲାଟା ତାକୁ ଜଣାଅଛି । ଦ୍ୱିତୀୟ ସଂଖ୍ୟା ହୋଇ କିଛି ଦିନ ଥିଲି । ହେଲେ କ୍ରମଶଃ ସେ ସ୍ଥାନକୁ ଅଧିକାର କରିନେଲେ ବାପି, କୁନି ଓ ମିନି । ସେଇଠୁ ମୁଁ ହେଲି ତୃତୀୟ ସଂଖ୍ୟା—'ଥ୍ରୀ' । ତା'ପରେ ସେଇ ସଂଖ୍ୟାକୁ ଦୁଇ ପାଖରେ ବନ୍ଧନୀ ପରି ଜଗି ରହିଲେ ମୋର ପାରିବାରିକ ଜୀବନର ଦାୟିତ୍ୱ ଓ ଓ ସାମାଜିକ ଜୀବନର କର୍ତ୍ତବ୍ୟ । ଆରମ୍ଭ ହେଲା ମେଜର୍ । ମୋତେ ଜଣେ ଦାୟିତ୍ୱ-ପୂର୍ଣ୍ଣ ସରକାରୀ ଚାକିରିଆ ହେବାକୁ ହେବ, ଉପଯୁକ୍ତ ସ୍ୱାମୀ, ଗୃହସ୍ଥ, ପିତା ହେବାକୁ

ହେବ, ସର୍ବୋପରି ଗୋଟେ ସାମାଜିକ ସମସ୍ୟା । ସବୁ ଗୋଟେ ଗୋଟେ ମେଳକ୍ ।

× × × ×

ବର୍ତ୍ତମାନ ଦଶ ଘଣ୍ଟା । ଆଉ ଦୁଇଘଣ୍ଟା ପରେ ତମେ ଆସିବ । ସତରେ ଆସିବ ଲୀନା ? ମୋ'ପରି ତମେ ଯଦି ଏକ ବନ୍ଧନୀ ଭିତରର ସଂଖ୍ୟା ହୋଇ ପଡ଼ିଥାଅ ଏ ଭିତରେ ?? ସେ ବନ୍ଧନୀକୁ ଦୁଖୁଲା କରି ଧାଇଁ ଆସିବାର ଶକ୍ତି ସଞ୍ଚୟ କରିପାରିବ ତ ??

ତମେ ଆସିବ !! ମୁଁ ବିଶ୍ୱାସ କରିପାରୁନି···ଅବିଶ୍ୱାସ ମଧ୍ୟ କରିପାରୁନି ।

ଆଃ···ଲୀନା, ଯଦି ଆଜି ସତରେ ଆସନ୍ତ ତେବେ ଖୁବ ମଜା ହୁଅନ୍ତା । ତମେ ଥରେ ଦେଖି ନଥାନ୍ତ ଦଶବର୍ଷ ତଳର ତମ ପ୍ରେମିକ ଅନୁପମ କେମିତି ତିନୋଟି ସନ୍ତାନର ଜନକ ହୋଇଛି । ଉତ୍ତେଜନାର ଯୋଉ କଣ୍ଟାଟାକୁ ଚିରଦିନ ମନର ଡାଏଲ ଉପରେ ଉର୍ଦ୍ଧ୍ୱମୁଖୀ କରି ରଖିବା ପାଇଁ ଜୀବନଟାକୁ ନେଇ ଏତେ ବଡ଼ ପରୀକ୍ଷା କରିଗଲ, ସେ କଣ୍ଟାଟା କେମିତି ଅତି ସହଜରେ 'ଜିରୋ'କୁ ଖସି ଆସିଛି ତମେ ଥରେ ଦେଖି ନଥାନ୍ତ ।

ତମେ ହାରିଯାଇଛ ଲୀନା—ଅସହାୟ ଭାବରେ ହାରି ଯାଇଛ । ତମେ ମହମବତୀ ନୁହଁ, ଗୋଟେ ଇଲେକ୍‌ଟ୍ରିକ୍ ଆଲୁଅ । ପତଙ୍ଗକୁ ତମେ ଆକୃଷ୍ଟ କରିପାର, ହେଲେ ଜାଳିପୋଡ଼ି ଭସ୍ମ କରିଦେଇ ପାରିନା । ଆମ୍ଭମାନ ଭିତରେ ତମେ ନିଜ ଜୀବନକୁ ନେଇ ପରୀକ୍ଷା କର । ନିଜକୁହିଁ ବିକ୍ଷତ ବିକଳାଙ୍ଗ କର । ନିଜେଇ ଯନ୍ତ୍ରଣାରେ ଶିହରି ଉଠ ।

ତଥାପି ତମେ ଅଦ୍‌ଭୁତ ଲୀନା ! ତମେ ବିଚିତ୍ର !! ତମପ୍ରତି ସମ୍ବେଦନା ସୃଷ୍ଟି ହୁଏ ।

× × × ×

ଆଠଟା ଦଶ ମିନିଟ୍ । ଦଶ ମିନିଟ୍ ବିଳମ୍ବ ହୋଇଗଲଣି; ହୁଏତ ଅପେକ୍ଷା କରି କରି ତମ ମନର ବୁଢ଼ିଆଣୀ ଅବିଶ୍ୱାସର ଜାଲ ବୁଣିବାକୁ ଆରମ୍ଭ କରି-ଦେବଣି ।

ଲୀନା ! ସ୍ତ୍ରୀ ମୋର ଚତୁର୍ଥଥର ପାଇଁ ମାତୃତ୍ୱ ମଣ୍ଡିତ ହେବାକୁ ଯାଉଛି । ଡାକ୍ତରଙ୍କ ପରାମର୍ଶ ନେବାକୁ ଯାଇ ଦଶମିନିଟ୍ ବିଳମ୍ବ ହୋଇଗଲା । ଆଜି ତ ମୁଁ ଆଉ ଦଶବର୍ଷ ତଳର ଅନୁପମ ନୁହେଁ···ଯୌବନର ପ୍ଲାଟଫର୍ମରେ ଘଣ୍ଟା ଘଣ୍ଟା ଧରି 'ଲୀନା' ନାମକ ଟ୍ରେନ୍‌କୁ ଅପେକ୍ଷା କରି ମଧ୍ୟ ଧୈର୍ଯ୍ୟ ହରାଇବି ନି । ଆଜି ଟ୍ରେନ୍ ମୋତେ ଅପେକ୍ଷା କରୁଛି—ଦଶ ମିନିଟର ବିଶ୍ୱାସ ଅବିଶ୍ୱାସର ଦ୍ୱନ୍ଦ୍ୱ ଭିତରେ ।

କିନ୍ତୁ ସତରେ କଣ ତମେ ଆସିଥିବ ? କେଜାଣି ??

ଯଦି ନ ଆସିଥାଅ .. ? ତା' ହେଲେ ଆଜି କିଏ ତମକୁ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରିବାର ଉତ୍କଣ୍ଠା ସହ୍ୟ କରିପାରିବ ??

× × × ×

"ଆଶ୍ଚର୍ଯ୍ୟ ! ଲୀନା, ତମେ ଆସି ଯାଇଛ !! ତମେ ତା'ହେଲେ ଠିକ୍ ସମୟରେହିଁ ଆସିଯାଇଛ !! ସତରେ ମୁଁ କାହିଁକି ଏବେ ବି ବିଶ୍ୱାସ କରିପାରୁନି । ତମକୁ ଆଖି ଆଗରେ ଦେଖି ମଧ୍ୟ ବିଶ୍ୱାସ କରିପାରୁନି ।"

"ଆଃ...ତମେ ଏତେ ନୀରବ କାହିଁକି ଲୀନା ? ହେଇ ଦେଖ ମୁଁ ଆସି-ଗଲିଣି । ଚାହିଁଲ । ହେଇ ମୋତେ ଚାହଁ !"

"ମୁଁ ଜାଣିଥିଲି ତମେ ଆସିବ । ନିଶ୍ଚୟ ଆସିବ ।"

"ଆଶ୍ଚର୍ଯ୍ୟ !!"

"କାରଣ ନିଜ ତରଫରୁ ଯେତେ ଦାବୀ କଲେ ମଧ୍ୟ ଉତ୍ତେଜନାର କଣ୍ଟାଟା ଆଉ ଯେ 'ଜିରୋ' ପାଖକୁ ଫେରିପାରିନି ଏକଥା ମୋତେ ଜଣାଥିଲା । ନ ଆସି ତମେ ରହିପାରି ନ ଥାଆନ୍ତ ।"

"କିନ୍ତୁ ତମେ କାନ୍ଦୁଛ କାହିଁକି ?"

"ଏ ଭିତରେ ମୁଁ ଅନେକ କାନ୍ଦିଛି ଅନୁପମ ! କାନ୍ଦିବା ପାଇଁହିଁ ତମ ପାଖକୁ ଆଜି ଆସିଛି । ଗତ ଦଶବର୍ଷ ଭିତରେ ମୁଁ ମନଭରି କାନ୍ଦିଛି । ମୁହଁରେ ମେକାପ୍ ନେଇ ମୋତେ କାନ୍ଦିବାକୁ ଖୁବ ଭଲ ଲାଗେ । ଆହୁରି ଭଲଲାଗେ କାନ୍ଦିସାରି ମେକାପ ଉପରେ ଲୁହ ଦାଗକୁ ଅଇନାରେ ଦେଖିବାକୁ । ଆଖିର ଲୁହରେ ମୁହଁର ମେକାପ୍ ଯେଉଁଦିନ ଯେତେବେଶୀ ଧୋଇଯାଏ ସେଦିନ ସେତେ ବେଶୀ ମୁଁ ତୃପ୍ତି ଅନୁଭବ କରିଛି; ହେଲେ ଗୋଟିଏ ସୁଯୋଗ ମୁଁ କେବେବି ପାଇନି । ତା' ହେଉଛି ପୁରୁଷର ଛାତିରେ ମୁହଁଗୁଞ୍ଜି ଟିକିଏ ନିଶ୍ଚିନ୍ତରେ କାନ୍ଦିବାର ସୁଯୋଗ । ଅନୁପମ ! ମୋତେ ସେଇ ସୁଯୋଗ ଟିକେ ଦେବନି ??"

"କଣ ଭାବୁଛ ? ମୋର ଏଇ ମେଦବହୁଳ ଦେହଟାକୁ ଘୃଣା କରୁଛ ଅନୁପମ ?? ଓଃ ତମେ କହୁଥିଲ ନା—ମୋଟୀ ଝିଅମାନଙ୍କୁ ଦେଖିଲେ ତମକୁ ଘୃଣା ଲାଗେ ବୋଲି !!' ମୁଁ ଏ ଭିତରେ ଯଥେଷ୍ଟ ମୋଟୀ ହୋଇଯାଇଛି । ସେଥିପାଇଁ ଘୃଣା କରୁଛ ମୋତେ ??"

"ଆଃ—ଲୀନା, ତମର ଯାହା ଇଚ୍ଛା କର; ହେଲେ ସେମିତି କୁହନା । ତମକୁ ମୁଁ ଏବେ ବି ଭଲପାଏ । ଠିକ୍ ପୂର୍ବପରି ଭଲପାଏ । ମୁକ୍ତ କଣ୍ଠରେ ମୁଁ ସ୍ୱୀକାର କରୁଛି—ଉତ୍ତେଜନାର କଣ୍ଟାଟା ଆଉ ଜିରୋକୁ ଫେରିପାରିନି—ପାରିବନି ମଧ୍ୟ ।"

"ଅନୁପମ, ଆଜିର ଲୀନା ଭୁଲ ଠିକଣା ଲେଖାଥିବା ଓ ଉପଯୁକ୍ତ ଟିକଟ ନଥିବା ଏକ ବେରଙ୍ଗ ଚିଠି । ଦଶବର୍ଷ ଭିତରେ ବହୁ ସହର ଓ ମଫସଲ

ଡାକଘର ଦେଇ ଆଜି ତମ ନିକଟକୁ ପୁଣି ଫେରିଆସିଛି । ତା' ଦେହରେ ଅନେକ ମୋହର ବସିଛି । ଚେଷ୍ଟାକଲେ ମଧ୍ୟ ତମେ ପଢ଼ିପାରିବ ନି, କାରଣ ସବୁଗୁଡ଼ିକ ମୋହର ଆଜି ଅସ୍ପଷ୍ଟ । ଏ ଭିତରେ ଦଶବର୍ଷ ବିତିଯାଇଛି । ସେ ଲଫାଫା ଖୋଲିବାର ଆବଶ୍ୟକତା ଆଉ ନାହିଁ । ତମେ ତାକୁ ଫେରାଇ ଦିଅ । ଲଫାଫାର ମୁହଁ ଅକ୍ଷତ ଅଛି । ଦଶବର୍ଷର ଘୂର୍ଣ୍ଣନ ପରେ ବି ହତାଦାର ସହି ଫେରିଯିବାରେ ସେ ଲାଗି ପଡ଼ିବନି ।"

"ଲୀନା, ତମେ କଣ କହୁଛ ? ତମକୁ ଏତେଦିନ ପରେ ବି ମୁଁ ବୁଝିପାରୁନି । ସବୁଦିନପାଇଁ କଣ ତମେ ଅବୋଧ୍ୟା ରହିଯିବ ?"

"ତମର ନବୁଝି ପାରିବାଟା ଅସ୍ୱାଭାବିକ ନୁହେଁ । ବୁଝିପାରିବାର ସୁଯୋଗ ମୁଁ ତମକୁ ଜାଣି ଜାଣି ଦେଇନି ଯେତେବେଳେ । ଜାଣିଛ ମୁଁ ତମକୁ କାହିଁକି ଛାଡ଼ି ଚାଲିଗଲି ? କାରଣ ମୁଁ ମୋର ଦେହଟାକୁ ଅନେକ ବେଶୀ ଭଲପାଏ । ଆଉ ତାକୁଇ ଅକ୍ଷତ ରଖିବା ପାଇଁ ଦିନେ ମୁଁ ମୋ ଭିତରେ ଥିବା ମାତୃତ୍ୱର ସମ୍ଭାବନାକୁ ଜାଣି ଜାଣି ପଙ୍ଗୁ କରି ଦେଇଥିଲି । ତମକୁ ଭଲ ପାଉଥିଲି । ସେ ଭଲପାଇବା ଭିତରେ କିଛିଟା ସ୍ପର୍ଦ୍ଧା ଓ ଆତ୍ମଶ୍ଲାଘା ଥିଲା । ହେଲେ ତମକୁ କେବେ ବିବାହ କରିବି—ଏକଥା ଚିନ୍ତା ମଧ୍ୟ କରିପାରି ନ ଥିଲି । ଯେଉଁଦିନ ଜାଣିଲି ତମେ ମୋତେ ବିବାହ କରିବାକୁ ଏକରକମ ସ୍ଥିର ନିଶ୍ଚିତ—ସେଦିନ ମୋ ଭିତରେ ଏକ ଆଶଙ୍କା ଦେଖାଦେଲା । ମୋର ବ୍ୟର୍ଥ ମାତୃତ୍ୱକୁ ବିବାହ ପରେ ଥରେ ଆବିଷ୍କାର କରିପାରିଲେ—ତମ ମନର ଡାଏଲ୍ ଉପରେ ଉତ୍ତେଜନାର କଣ୍ଟାଟା ଆସ୍ତେ ଆସ୍ତେ 'ଜିରୋ' ଉପରକୁ ଖସିପଡ଼ିବ । ତେଣୁ ମୁଁ ହଠାତ୍ ଦିନେ ତମକୁ ଛାଡ଼ି ଚାଲିଗଲି ।"

"ଲୀନା !!"

"ନିଷ୍ଠୁର ସତ୍ୟଟାକୁ ଗ୍ରହଣ କରିପାରୁନା ନୁହେଁ ?? ଅତି ସ୍ୱାଭାବିକ । କେହି ବି ଗ୍ରହଣ କରିପାରିବେନି ।

ଛାଡ଼—ଅନୁପମ ଆଳାପ କରିବାର ସମୟ ଆଉ ନାହିଁ । ଆଜି ମୁଁ ଆସିଛି ତମର ଛାତିରେ ଟିକିଏ ମୁହଁ ରଖି ନିଶ୍ଚିନ୍ତରେ କିଛିସମୟ ପାଇଁ କାନ୍ଦିବାକୁ ।"

ତମେ କାନ୍ଦ ଲୀନା । ମନଭରି କାନ୍ଦିପକାଅ । ସମୟର ଯନ୍ତ୍ରଣା ତମକୁ ବନ୍ଧ୍ୟା କରିଦେଇଛି । ଏଥିପାଇଁ ତମେ ଦାୟୀ ନୁହଁ । ତମେ କାନ୍ଦୁଚ ? କାନ୍ଦ । ତମ ଭିତରେ ଆଜି ଦଶ ବର୍ଷର ସଞ୍ଚିତ ମିନିଟ ସେକେଣ୍ଡ ସବୁ କାନ୍ଦୁଛନ୍ତି । ଯନ୍ତ୍ରଣାଗ୍ରସ୍ତ ମୁହୂର୍ତ୍ତମାନେ କାନ୍ଦୁଛନ୍ତି । ସେ ପାଖରେ ସମୁଦ୍ର, ଏ ପାଖରେ ଝାଉଁବଣ ବି କାନ୍ଦୁଛି । ମୁଁ ମଧ୍ୟ ଆଉ ନୀରବ ରହିବିନି । ଆଜି ସମସ୍ତେ ମିଶି କ୍ରନ୍ଦନର ଏକ କୋରସ ସୃଷ୍ଟି କରିବା କିଛିସମୟ ପାଇଁ । ତା' ପରେ ତମେ

ଫେରିଯିବ । ଏକ ଅସ୍ୱୀକୃତ ବେଦରଂ ଚିଠିପରି ତମେ ଘୂରିଯିବ । ମୁଁ ଫେରିଯିବି ମୋର ବନ୍ଧନୀ ଭିତରକୁ । ମୁଁ ମେଜିକ୍ ନାମ୍ବର । ମୋତେ ପୁଣି ମେଜିକ୍ ଦେଖାଇବାକୁ ପଡ଼ିବ । ହେଲେ ସବୁରି ଭିତରେ ଉତ୍ତେଜନାର ପରମାପଢ ଘଣ୍ଟା ଆଉ ଜଣେ ପାଖକୁ ଫେରିପାରିବ ନି ।



# ରକ୍ତ ସମୁଦ୍ର

## ।। ଅଧ୍ୟାପକ ଫନୀ ମହାନ୍ତି ।।

ମୁଁ ତୁମକୁ ଯେଉଁକଥା କହିବ ବୋଲି ଏତେବେଳ ଯାଏଁ ବସେଇ ରଖିଛି, ବିଶ୍ୱାସକର ସେ ସବୁ ମୋ ନିଜକଥା ନୁହେଁ । ନିଜକଥା ଶୁଣାଇବାଠାରୁ ଯଦିଓ ବେଶୀ କିଛି ଆନନ୍ଦ ନାହିଁ, ତଥାପି ନିଜକଥା ଶୁଣିଲି ପରି ମଣିଷଟିଏ ଏ ପୃଥିବୀରେ ଖୋଜି ବାହାରି କରିବା କଷ୍ଟକର କଥା ।

ମୁଁ କେଉଁ ଦେଶର ଅଜବ ମଣିଷ । ଭୁଲରେ ମୋ ପାଦ ଏଠି ଲାଗିଯାଇଛି । ନୀତି, ନିୟମ, ଆଦର୍ଶ, ଆଇନ୍ କାନୁନ୍‌ର ଦ୍ୱାହାଦେଇ ମୁଁ ଜୀବନକୁ ନିରେଖି ଦେଖିଛି । କିନ୍ତୁ ମୋର ବନ୍ଧୁ ଅବିନାଶ । ଜୀବନର ସଂଜ୍ଞା ଉପରେ ସଂଦର୍ଭ ଲେଖିଛି ମଣିଷକୁ ତିଳ ତିଳ ନଷ୍ଟ କରି ।

ଭାରତବର୍ଷରେ ସେ ପାଦଦେବା ପୂର୍ବରୁ ମୁଁ ଆହୁରି ନିର୍ମମ ହେବି । ଅଧିକ ମାତ୍ରାରେ ଅସାମାଜିକ କାର୍ଯ୍ୟ କରିବି । ଯେଉଁ ସମୁଦ୍ରରେ ମୁଁ ପହଁରୁଛି, ସେହି ସମୁଦ୍ର ଭିତରେ ଆରମ୍ଭ ହେବ ମୋର ଅଭିଯାନ । ମୁଁ ଲକ୍ଷ ଲକ୍ଷ ବର୍ଣ୍ଣଶଙ୍କର ସୃଷ୍ଟି କରି, ପୃଥିବୀରୁ ଧର୍ମ, ସତ୍ୟ ଓ ଅହିଂସାକୁ ନଷ୍ଟ ଭ୍ରଷ୍ଟ କରିଦେବାପାଇଁ ରିଂ ମାଷ୍ଟର ପରି ଟ୍ରେନିଂ ଦେବି ।

ମୋ ହାତଗଢ଼ା ରକ୍ତ ସମୁଦ୍ରକୁ ଉର୍ବଶୀ ଆସିବ । ଅବିନାଶ ଆସିବ । ସଂଧ୍ୟା, ମେନା, ପୁଷ୍ପା, ବନଜା ସଭିଏଁ ଆସିବେ । ମୁଁ ତାଙ୍କୁ ପୁଣି ଶିଖାଇବି ପ୍ରେମ କ'ଣ ! ଭଲପାଇବା କାହାକୁ କହନ୍ତି ? ନର୍କ କେଉଁଠି ? ସ୍ୱର୍ଗ କେଉଁ ଇଲାକାରେ ! ସମସ୍ତେ ଏଠି ବୁଡ଼ପକାଇବେ ; ଯେ ପର୍ଯ୍ୟନ୍ତ ମଣିଷକୁ ମଣିଷ ପ୍ରେମଦେଇ ପାରିନି, ମମତା ଦେଇ ପାରିନି । ଆତ୍ମୀୟତାର ବଂଧନରେ ବାନ୍ଧି ରଖିନି ।

ସାତ ସମୁଦ୍ର ତେର ନଈ ପାରି ହୋଇ ଜୀବନର ଭୂତ କେମିତି ଏ ସହରକୁ ଆସିଲି ମୁଁ ସେଇକଥା ବସି ଭାବୁଛି । ମଦ ନିଶାରେ ମଣିଷ ପାଗଳପରି ଚିତ୍କାର ଛାଡ଼ିଲା ଭଳି, ଆମେ ସମସ୍ତେ ଜୀବନର ନିଶାରେ ସଂଘର୍ଷ କରୁଛୁ । ପ୍ରତି-ଦ୍ୱନ୍ଦ୍ୱିତା ଚଳାଇଛୁ ।

ଆମର ସଂସ୍କୃତି ଆମକୁ ଭୁଲିଯିବାକୁ ହେଉଛି । ନିହାତି ବିଦେଶୀ ଢଙ୍ଗରେ ଆମର କଥାବାର୍ତ୍ତା, ଚାଲିଚଳନ, ବେଶ ପୋଷାକ । ଆମର ପ୍ରେମ ଖାଣ୍ଟି ବିଦେଶୀ । ନାଚ ଗୀତର ଆସର ଜମିଲେ ଆମେ ଉନ୍ମାଦ ହୋଇ ଯାଉଛୁ । ହିପ୍‌ପୀ

ସମାଜର ମଣିଷପରି ଅଶ୍ଳୀଳ ସ୍ୱରରେ ହୋ-ହଲ୍ଲା କରୁଛୁ । ମଦ ପିଇବା, ମନଇଚ୍ଛା ସାଙ୍ଗାଳଙ୍କପରି ନାଚିବା, ବାନ୍ଧବୀ ମେଳରେ ସମସ୍ତ କଟାଇବା ଏକ ନୂତନ ଫେସନ୍ ।

ଆମ ସମସ୍ତଙ୍କ ଆଗରେ ସେଇ ଗୋଟିଏ ପ୍ରଶ୍ନ ! ଦେଶର ମନ୍ତ୍ରୀ, ମହାପ୍ରଭୁମାଙ୍କ ଭାଷଣରେ ସେଇ ଗୋଟିଏ କଥା । ବିଶିଷ୍ଟ ଶିକ୍ଷାବିତ୍ମାନଙ୍କ ଦୃଷ୍ଟିକୋଣ ସେଇ-ଆଡ଼କୁ । ସେଇ ସର୍ବଗ୍ରାସୀ ନିଆଁର କୁଣ୍ଡଳୀରେ ଆମେ ପତଙ୍ଗ ପରି ମରିହଜି ଯିବାକୁ ଚାହୁଁ । ବେଦ, ବେଦାନ୍ତ, ଉପନିଷଦ ଆମପାଇଁ ବହୁ ପୁରୁଣା ଯୁଗର ଖବରକାଗଜ । ଯୁଗ ବଦଳୁଛି । ବଦଳି ଯାଉଛି ମଣିଷର ସଭ୍ୟତା, ଶିକ୍ଷା, ସଂସ୍କୃତି, ଐତିହ୍ୟ । ଆମକୁ ଧାଇଁବାକୁ ହେବ ନିହାତି ସାହେବୀ କାଇଦାରେ । କର୍ପୂର ଉଡ଼ି ଯାଇଥିଲେ ବି କନା ପଡ଼ିଛି । ଆମର ଲହୁଡ଼ା ଜୀବନ । ଅମାପ ଐଶ୍ୱର୍ଯ୍ୟ । ଅସରନ୍ତି ଯୌବନ । ଆମେ ଯୌବନରେ ଉନ୍ମାଦ ହେବୁ । ଆମ ଉପରେ ଯୋଉ ଯବରଦସ୍ତି ଲଦି ଦିଆ ଯାଇଥିବା ନୈତିକତାର ବୋଝକୁ ଆମେ ଓହ୍ଲାଇଦେବୁ । ଆମେ ପ୍ରଗତିବାଦୀ । ଆମ ଆଗରେ ସୁନ୍ଦର ପୃଥିବୀ ମୁରୁକି ହସୁଛି ।

: ବୁଝିଲ ମନ ମୋହନ !

ମତେ ସମସ୍ତେ ସେଇପ୍ରଶ୍ନ ପଚାରୁଛନ୍ତି । ଯାହା ତମେ ଆଜି ପଚାରୁଛ । ମୁ କାହିଁକି ଏତେ ବ୍ୟସ୍ତ ହେଉଛି । ଏଇଆ ନା ?

ବେଶ୍ ! ବେଶ୍ !

ବିଭ୍ରାନ୍ତି ଭିତରେ ଏ ଦେଶ ରସାତଳକୁ ଯାଉ । ଏ ଦେଶର ସଭ୍ୟ ମଣିଷ-ମାନେ ରକ୍ତ ଚାପ ରୋଗରେ ଆକ୍ରାନ୍ତ ହୁଅନ୍ତୁ । ଦେହର ସମୁଦ୍ରରେ କାମନାର ବିହଙ୍ଗ ସନ୍ତରଣ କରୁ । ମଣିଷ ରକ୍ତରେ ବିଷର ଜୁଆର ଉଠ ।

ମୁଁ କାହିଁକି ଏତେ ବ୍ୟସ୍ତ ହେବି ! ହଁ, ହଁ, ମୁଁ କାହିଁକି... । କାହିଁକି ମୁଁ ରାତି ରାତି ଅନିଦ୍ରା ରହି ଦୁଶ୍ଚିନ୍ତା ଭିତରେ ବୁଡ଼ିରହିବି ! କାହା ହିସାବଖାତାର ପୃଷ୍ଠା ଓଲଟାଇ ମୋର ଲାଭ କଣ ? କିଏ କେତେ ସୁଖ, ଐଶ୍ୱର୍ଯ୍ୟ ଓ ସମ୍ପଦ ଭିତରେ ଦିନ କାଟୁଛି; ସେ ସବୁର ଚିଠା ପ୍ରସ୍ତୁତ କରିବା ମୋର କି ପ୍ରୟୋଜନ !

ମୁଁ ଜାଣେ ମନମୋହନ !

ସବୁ ସତକଥା କହିଦେଲେ ଅବିନାଶ ପାଗଳ ହୋଇଯିବ । ପ୍ରାଚୁର୍ଯ୍ୟର ସମୁଦ୍ର ଭିତରେ ଥାଇ ବି କାଳନାଗର ଦଂଶନରେ ସେ ଆହତ ହେବ ।

ହେଉ । ସେ ପାଗଳ ହେଉ । ମୋର ବା' ଯା ଆସ କେତେ ! ଗୋଟିଏ ମଣିଷର ଜୀବନ ରକ୍ଷାପାଇଁ ମୁଁ ଏତେବଡ଼ ଅନ୍ୟାୟ କରିପାରିବି ନି । ମୁଁ ଏ ଦେଶର ପୁରୁଣା ମଣିଷଭ ଗନ୍ଧନେଇ ତା'ର ସମ୍ମୁଖୀନ ହେବି । ଆଉ ତାକୁ ସେଇକଥା ପଚାରିବି । ଯେଉଁକଥା ଆମେରିକା ଯିବା ପୂର୍ବରୁ ସେ ମତେ ପଚାରିଥିଲା ।

ବିଦେଶ ଫେରନ୍ତା ସୁଶ୍ରୀ ଯୁବକ ଅବିନାଶ ଜୀବନର ସଙ୍ଗୀ ଜାଣିବା ପାଇଁ ଛଟିପିଟି ହୋଇ ଦିନେ ଚିକାଗୋ ପଳାଇଥିଲା । ଯେଉଁ ଦେଶର ପାଣି, ପବନ, ମାଟି, ଗୋଡ଼ ଧୂଳିରେ ବଢ଼ି ସେ ମଣିଷ ହୋଇଥିଲା; ସେ ଦେଶ ତାର ସନ୍ଦର୍ଭ ପାଇଁ କାଲେ ଆବଶ୍ୟକୀୟ ତଥ୍ୟ ଯୋଗାଇ ପାରିବ ନାହିଁ, ଏଇ ଭୟରେ ଅବିନାଶ ଭାରତ ଛାଡ଼ି ଚାଲିଯାଇଥିଲା ।

ବିଦେଶୀ ଛାତ୍ରଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ସେ ଯେ ନିଶ୍ଚୟ ଜୟଯୁକ୍ତ ହେବ, ସେକଥା ଗଣନାକରି ବହୁ ଆଗରୁ ମୁଁ ଜାଣିସାରିଥିଲି । ସୁତରାଂ ଅବିନାଶର ଚିତ୍ରପଟ ସହିତ ତା'ର ସଂକ୍ଷିପ୍ତ ପରିଚୟ ଯେଉଁଦିନ ସମ୍ବାଦପତ୍ରରେ ପ୍ରକାଶିତ ହେଲା; ସେଦିନ ମୁଁ ଆଦୌ ଆଶ୍ଚର୍ଯ୍ୟ ହୋଇନଥିଲି । ମୁଁ ଆଶାକରି ଅନେଇ ବସିଥିଲି । କେମିତି ମଣିଷ ହୋଇ ସେ ଫେରିଆସିଛି—ସେତିକି ଜାଣିବାକୁ ।

ମନମୋହନ !

ଡକ୍ଟର ଅବିନାଶର ଆର୍ଯ୍ୟ ରକ୍ତରେ ଚିକାଗୋ ସହରର ଜୀବାଣୁ ସଂକ୍ରମିତ ହେଉଥିବା କଥା ଯେଉଁଦିନ ମୁଁ ଜାଣିପାରିଲି, ସେହିଦିନଠାରୁ ମୁଁ ତାକୁ ଏକ ମାରାତ୍ମକ ବ୍ୟାଧିଗ୍ରସ୍ତ ମଣିଷପରି ରୂପ ଦେଇଛି ଅନ୍ୟମାନଙ୍କ ଆଗରେ । ଯଦିଓ ସେ ମୋର ଏତେବଡ଼ ଦୁନିଆରେ ଏକମାତ୍ର ବନ୍ଧୁ ।

( ଅବିନାଶର ଅସ୍ଥି, ମେଦ, ମଜ୍ଜାରେ ଅସମ୍ଭବ ଜ୍ୱାଳା । ଜୀବନରେ ସଙ୍ଗିନୀନିରୂପଣ କରିବାପାଇଁ ଯାଇ ସେ ଯେଉଁ ଶୋଚନୀୟ ଭାବରେ ପରାସ୍ତ ହୋଇ-ଯାଇଛି ସେଥିରୁ ଯେ କେହି ମନେକରିପାରେ । ଜୀବନ ତା'ପାଇଁ ସୁରକ୍ଷିତ ଗୋଲାପର ପୁଷ୍ପଶଯ୍ୟା ନୁହେଁ । ଏକ ବେଦନା ସମ୍ବଳିତ ଶରଶଯ୍ୟା ! ସ୍ନେହ, ମମତା ପ୍ରେମ ସେ' ସବୁକୁ ଅବିନାଶ ରୂପଦେଇଛି "ଏକ ପୁରୁଣା" ପୃଥିବୀର କାହାଣୀପରି । ତା' ଭାଷାରେ ସେ'ସବୁ କେଉଁ ଆଦି ପୁରୁଷର ମୁଖସ୍ତକର ସଂଲାପ ! )

ଆମ ଦେଶର ମଣିଷମାନଙ୍କର ଜୀବନପ୍ରଣାଳୀ ସେ ଦେଶ ତୁଳନାରେ କେତେ ଦୟନୀୟ, ସେ କଥା ଚିକାଗୋରେ ଥିଲାବେଳେ ଅବିନାଶ ଚିଠିରେ ଲେଖିଥିଲା । ସେ ଦେଶରେ ଏତେ ନୀତି, ନିୟମ ନାହିଁ ସାଂସାରିକ ଜୀବନରେ । ଥରେ ଯୌବନ ଆସିଗଲେ ସେ ଦେଶର ମଣିଷ ମନରେ ସୁନାର ଡେଣା ଲାଗିଯାଏ । ନୀଳ ଆକାଶରେ ଶିଆର କାଟି କାଟି ସଭିଏଁ ଉଡ଼ିବୁଲନ୍ତି । ଯେ ପର୍ଯ୍ୟନ୍ତ ମନରେ କ୍ଳାନ୍ତି ଆସିନି । ହାତଗୋଡ଼ ଅବଶ ହୋଇନି ।

ସେ ଦେଶରେ ସମାଜ ନାହିଁ; ସୁତରାଂ ସାମାଜିକ ବାଧାବନ୍ଧନ, କାଇଦା କଟକଣାର ପ୍ରଶ୍ନ ଉଠୁଛି କାହିଁକି ! ସମସ୍ତେ ସ୍ୱାଧୀନ । ଉପାର୍ଜ୍ଜନକ୍ଷମ । ଆମ ଦେଶପରି କେହି କାହାଉପରେ ନିର୍ଭର ରଖନ୍ତି ନାହିଁ । ଏମିତିକି ବାପା ପୁଅ ଉପରେ ନୁହେଁ । ମା ଝିଅ ଉପରେ ବି ନୁହେଁ । ଆମେ ଏଠି ଶ୍ରବଣକୁମାର ସାଜି ବୃଦ୍ଧ ବାପ ମା'ଙ୍କୁ ବୁହାଇ ବୁହାଇ ଘୂରିବୁଲୁ । ନିଜେ ନଖାଇ ନ ପିନ୍ଧି ସେମାନଙ୍କ

କଥା ଆଗ ବୁଝ଼ନ୍ତି । ମୃତ୍ୟୁ ପରେ କ୍ରିୟାକର୍ମ କରୁ । ଗଙ୍ଗାରେ ନେଇ ଅସ୍ଥି ପକାଉ । ଦାନ, ଧର୍ମ, ବ୍ରାହ୍ମଣ ଭୋଜନ କରି ପିତୃଋଣ ପରିଶୋଧ କରୁ ।

ଏତେ କଥା କରି ବି ଆମର ମୁକ୍ତି ନାହିଁ, ବୃଦ୍ଧ ଅଭିଶାପପରି ପିତୃ ଅଭିଶାପକୁ ଆମର ପ୍ରାଣେ ଭୟ ! ସେ ଦେଶ ପରି ବୃଦ୍ଧମାନେ ଆମଠାରୁ ଅଲଗା ହୋଇ ରହନ୍ତି ନାହିଁ କିମ୍ବା ନିଜ ପେନସନ୍ ଟଙ୍କାରେ ଭରଣପୋଷଣ କରି ମୃତ୍ୟୁର ଅପେକ୍ଷା ଗୃହରେ କାଳ କଟାନ୍ତି ନାହିଁ ।

ସେ ଦେଶର ଆଗ୍ରହ ବ୍ୟବହାର ଆମଠାରୁ ସମ୍ପୂର୍ଣ୍ଣ ପୃଥକ୍ । ସେ ଦେଶରେ ଆମ ଦେଶ ପରି ସ୍ତ୍ରୀ ସାବିତ୍ରୀ କିମ୍ବା ସୀତା ପରି ବ୍ରତ ଉପାସନାରେ ସମୟ ଅପବ୍ୟୟ କରନ୍ତି ନାହିଁ । ସମସ୍ତେ ସେଠି ସମୟର ମୂଲ୍ୟ ବୁଝନ୍ତି । ଶ୍ରମର ଗୁରୁତ୍ୱ ଉପଲବ୍‌ଧି କରନ୍ତି । ସ୍ୱାମୀ ଫେରିବାର ସାମାନ୍ୟ ବିଳମ୍ବ ହୋଇଗଲେ , ସ୍ତ୍ରୀ ନିଜର ବୟ ଫ୍ରେଣ୍ଡକୁ ଧରି ଆଳାପ ଜମାଇ ଦିଏ ଡାଇନିଂ ଟେବୁଲ ପାଖେ ।

ବଡ଼ ବଡ଼ ହୋଟେଲ, ରେସ୍ଟୁରାଣ୍ଟ, କ୍ଲବ କିମ୍ବା ବାର୍ ରୁମଗୁଡ଼ିକ ଗୋଟିଏ ଗୋଟିଏ ବିରାଟ ଛକ । ଯେଉଁଠି ଅନେକ ଆଉ ଅନେକ ଲୋକ ଆସି ଜୁଟନ୍ତି । କିଛି ସମୟ ପାଇଁ ମିଳମିଶି ନାଚନ୍ତି, ଗାଆନ୍ତି, ମଉଜ ମଜଲିସ୍ କରି ମନ-ଭରି ପିଅନ୍ତି । ତା'ପରେ ଯେ'ଯା ବାଟରେ ପିଏ ଆଗେଇ ଯାଆନ୍ତି । କାହାପାଇଁ କେହି ମନ ଦୁଃଖ କରିବାକୁ ନାହିଁ । କାହାର କଣ ହଜିଗଲା ସେଥିପ୍ରତି ଖିଆଲ ନାହିଁ । ସମସ୍ତେ ସେଠି ବିନା ଦ୍ୱିଧାରେ ଦେହ ବଦଳାନ୍ତି । ମନ ବି ବଦଳାଇ ନିଅନ୍ତି ।

( ଅବିନାଶକୁ ପ୍ରଥମେ ପ୍ରଥମେ ଏସବୁ ଅଡ଼ୁଆ ଲାଗୁଥିଲା । ତା'ପରେ ଦିନ କେଇଟାରେ ସବୁ ଠିକ୍ ହୋଇଗଲା । )

ଅଢ଼େଇ ବର୍ଷ କାଳ ବିଦେଶରେ ରହି ଅବିନାଶ ଯେତେବେଳେ ଭାରତକୁ ଆସିଲା, ସେ ଦେଖିଲା — ଏଠି ବି ସବୁ କିମିତି ନୂଆ ନୂଆ ଲାଗୁଛି । ସେଇ ଦ୍ୱନ୍ଦ୍ୱ କୋଳାହଳ ଭିତରେ ସମସ୍ତେ ଏଠି ମିୟମାଣ । ପରସ୍ପର ପ୍ରତି ଅଯଥା ସନ୍ଦେହ ଦୋଷା-ରୋପ । କାହାର କାହା ପ୍ରତି ସମ୍ମାନ ନାହିଁ । ଭୟ ନାହିଁ । ସଭ୍ୟତା, ସଂସ୍କୃତି ସବୁ ବିପାକ୍ତ ।

ରେଡ଼ିଓ, ସମ୍ବାଦପତ୍ରଗୁଡ଼ିକ ସବୁଠାରୁ ବଡ଼ ଶତ୍ରୁ ଏ ଦେଶରେ । କାରଣ ଏଠି ଟେଲିଭିଜନ ସେତେ ବେଶୀ ପରିମାଣରେ ନାହିଁ; ଯେତିକ ପରିମାଣରେ ଗୋଟିଏ ସଭ୍ୟ ଦେଶରେ ଅନ୍ତତଃ ରହିବାର କଥା । ସବୁ ସମ୍ବାଦ ଏଠି ମିଥ୍ୟାର ପ୍ରହେଳିକା ସୃଷ୍ଟି କରୁଛି । ମଣିଷ ଜୀବନକୁ ଆହୁରି ବିଷାକ୍ତ, ବିଷମୟ କରି ଥୋଉଛି । ଏଠି ବି ସେ ଦେଶପରି ଯୁବକମାନେ ବୃଦ୍ଧମାନଙ୍କୁ ପଛରେ ପକାଇ

ଆଗକୁ ପାଦ ଦଉଥିଲେଣି । ନରହତ୍ୟା, ଧର୍ମଘଟ, ଯୌନସ୍ୱାଧୀନତା, ଗର୍ଭପାତ, ପ୍ରେମ, ପ୍ରତାରଣା – ଏ ସବୁ ଏକ ସାଧାରଣ ଘଟଣାରେ ପରିଣତ ହେଲାଣି ।

ମଣିଷ ନିଜ ଜୀବନର ମହାସତ୍ୟକୁ ଉପେକ୍ଷାକରି ଯେଉଁ ରଙ୍ଗୀନ ଦୁନିଆଁକୁ ଗଢ଼ି ତୋଳିବାର ନିଶାରେ ମଜଗୁଲ ହୋଇ ରହିଛି, ବଞ୍ଚିରହିବାର ନିଶାରେ ଅନ୍ଧ ହୋଇ ଅକ୍ଳାନ୍ତ ପରିଶ୍ରମ କରୁଛି ସେସବୁ ଆଜି ତାହାର ଘରପରି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିବାକୁ ଲାଗିଲାଣି ।

ଦୁଇବର୍ଷର ପରିଶ୍ରମ । ବିଦେଶ ଭ୍ରମଣ, ଗାର୍ଲ୍ ଫ୍ରେଣ୍ଡସ୍‌ମାନଙ୍କ ସହିତ ବାରମ୍ବାର ଡେଟିଂ, ମେରିଗୋ ରାଉଣ୍ଡରେ ବସି ଟି. ଭି. ସେଟ୍‌ରେ ନଗ୍ନ ନାରୀଙ୍କର ନୃତ୍ୟ ପରିବେଷଣ ଦେଖିବା ।

ବାର୍ ରୁମରେ ବସି ପେଗ୍ ପରେ ପେଗ ନିଃଶେଷ କରିବା । ଏସବୁର କ'ଣ କିଛି ମୂଲ୍ୟନାହିଁ ଜୀବନରେ ! ଯେଉଁଠି ଜୀବନର ମୂଲ୍ୟ ହିସାବ ଖାତାରେ କଷି ବାହାର କରାଯାଏ ; ଯେଉଁ ଦେଶର ମଣିଷ ଗ୍ରହ ବ୍ରହ୍ମାଂଡରରେ ଉଡ଼ି ବୁଲୁଛି ସେ ଦେଶର ଚାଲିଚଳନ ସହିତ ଏତେ ଖାପ ଖୁଆଇ ଚାଲିଲାପରେ ବି ଜୀବନର ଗୋଟାଏ କିଛି ମୂଲ୍ୟବାନ୍ ବସ୍ତୁର ଅଭାବ ଉପଲବ୍‌ଧି କରୁଛି ଅବିନାଶ ତାହିଁକି ?

: ବୁଝିଲି ମନମୋହନ ! ଅବିନାଶ ପିଲାଳିଆ ।

ସବୁଥାଇ ବି ଯେଉଁ ଦେଶର ମଣିଷ କିଛି ନ ପାଇବାର ଭୟରେ ଭାଙ୍ଗିପଡ଼ି ମାନସିକ ଭାରସାମ୍ୟ ହରେଇ ବସେ, ଦୁର୍ଘଟଣା କରି ଅତ୍ୟଧିକ ମଦ୍ୟପାନ କରି ମୃତ୍ୟୁ ମୁଖରେ ପଡ଼େ, ଯେଉଁଠି ମଣିଷ ମଣିଷକୁ କେବଳ ଘୃଣାକରି ଶିଖିଛି ।

ଯେଉଁ ଦେଶରେ ମଣିଷର ଚରମ ଦୁର୍ଭାଗ୍ୟରେ ମଣିଷ ତାଳିମାରି ହସେ, ସେପରି ଏକ ଦେଶରୁ ଶିକ୍ଷା କରିବାର କ'ଣ ବା ଅଧିକ ଥିଲା ଅବିନାଶ ପାଇଁ ।

ମୁଁ ଜାଣିଶୁଣି ଅବିନାଶକୁ ସ୍ୱାଗତ ଜଣାଇଲି ନାହିଁ । କାରଣ ମୋ ହାତରେ ସମୟ ଅଳ୍ପ ଥିଲା । ଏବଂ ମୋର ଅନେକ କିଛି କରିବାର ଥିଲା ।

ଅବିନାଶ ମନେ ମନେ ଭାବୁଥିଲା । 'ମୁଁ ତାର ସେଇ ପିଲାଦିନର ପୁରୁଣା ବନ୍ଧୁ ; ସେ' କି ମୁହଁରେ ହସରହିକ ଖେଳାଇ ତାକୁ ଅଭ୍ୟର୍ଥନା କରିବ । ଚିକାଗୋ ସହରର ଜୀବନଯାପନ ପ୍ରଣାଳୀ ସମ୍ପର୍କରେ ଏକ ଚିଠା ପ୍ରସ୍ତୁତ କରି ବସିବ ପ୍ରଥମ ସାକ୍ଷାତରେ ।

ମୁଁ ଯେଉଁ ରକ୍ତ ସମୁଦ୍ରରେ ବୁଡ଼ୁଛି, ଉଠୁଛି, ସେ କଥା ଆମେରିକାରୁ ଫେରିଥିବା ମଣିଷ ଏତେ ସହଜରେ ବୁଝିପାରିବ କେମିତି ! ରକ୍ତର ସମୁଦ୍ର ଏଠି ସଂଖ୍ୟାହୀନ ଯନ୍ତ୍ରଣାରେ ପରିପୂର୍ଣ୍ଣ । ଏ ଯନ୍ତ୍ରଣା ଆହତ ହୃଦୟର ! ଭଗ୍ନ

ମନର ! ବିଶ୍ୱାସଭଙ୍ଗତା ଓ ଆତ୍ମପ୍ରବଞ୍ଚନାର । କେତେ ନିସ୍ପୃତ ଦିନ ମୁଁ ଏଠି କଟାଇ ସାରିଲିଣି—ଯଦିଓ ଜୀବନର ଶେଷ ମାଇଲଖୁଣ୍ଟ ଦେଖିବାକୁ ମୋର ଆହୁରି ଅନେକ ସମୟ ଅଛି ।

ମନ ମୋହନ !

ଏ ତ ଗଲା ଅବିନାଶ କଥା । ଅଳକା, ପଲ୍ଲବୀ, ନୀତା, ଫୁଲପରି ଝିଅମାନେ ଲୁଚି ଲୁଚି ମୁହଁରେ ରଙ୍ଗ ବୋଳି ଏବେ ବୁଲୁଛନ୍ତି ଧରାପଡ଼ିଯିବା ଭୟରେ । ବଡ଼ ବଡ଼ ହୋଟେଲରେ ଆସର ଜମେଇଲେଣି । ବିଦେଶୀ କାଇଦାରେ ମେକପ୍ ହେଲେଣି । ଦେହର ସାମ୍ରାଜ୍ୟରେ ଶ୍ରେଷଣୀ ଜାଲି ପ୍ରେମିକ ନାମଧାରୀ ନିରୀହ ଜୀବଗୁଡ଼ିଙ୍କୁ ପୁଣି କ୍ଷତ ବିକ୍ଷତ କଲେଣି । ଅନ୍ୟମାନଙ୍କ ପରି ଏମାନେ ବି ଜୀବନର ସଂଖ୍ୟା ଖୋଜି ବାହାର କରିବାରେ ବ୍ୟସ୍ତ ।

: ବାସ୍ତବିକ । କେଡ଼େ ନିର୍ବୋଧ ଏମାନେ !

: ତମେ ଭାବୁଥିବ ମନମୋହନ ।

: ମୁଁ କେମିତି ଏତେ ନିଷ୍ଠୁର ହେଲି । ଏଇଆନା ! କେମିତି ମୁଁ ନିଃସହାୟ ଅବସ୍ଥାରେ କାହାକୁ ନ ଜଣେଇ ଏତେବାଟ ଚାଲିଆସିଲି । ସେ ଅନେକ କଥା । ସେ ସବୁ ବୟସର ଅପରାହ୍ନରେ ମନେପକାଇ ଲାଭ କଣ ?

ଅବିନାଶ ଜାଣୁ । ମଣିଷଠାରୁ ବଳି ବଡ଼ ଶତ୍ରୁ କେହି ଏ ପୃଥିବୀରେ ନାହାନ୍ତି । ପ୍ରତିହିଂସା ନେବ ତ, ମଣିଷ ଉପରେ ନିଅ । ଘୃଣା କରିବାକୁ ମନ ହେଉଛି, ମଣିଷକୁ ଘୃଣାକରି ଶିଖ । ତା’ ପରେ ଦେଖିବ ସବୁ ଆପେ ଆପେ ଠିକ ହୋଇଯିବ । ସବୁ ସମସ୍ୟାର ସମାଧାନ ହୋଇଯିବ ।

ପ୍ରେମକରି ଯଦି ମୁଁ ମଣିଷ ହୋଇ ପାରିଲିନି, ଘୃଣାକରି ଥରେ ଦେଖେ ମୁଁ କଣ ହେଉଛି ! ଝଡ଼ ରାତିରେ ଅକ୍ଳାନ୍ତ ପରିଶ୍ରମ କରି ମୁଁ ଯଦି ଦିବ୍ୟ ଜୀବନର ସଂଜ୍ଞା ଜାଣିପାରିଲି ନି, ପ୍ରସ୍ତ ପ୍ରସ୍ତ ଅନ୍ଧକାରର କଳା ଝାଲେରିକୁ ଭେଦ କରି ବି ମୁଁ ଯଦି ଆଲୋକର ରେଖାଟିଏ ଦେଖିପାରିଲିନି—ତେବେ କଣ ମିଳିବ ମୋ ମଣିଷ ପଣିଆରୁ ? କି ଲାଭ ଅଛି ନୀରବରେ ଧୈର୍ଯ୍ୟର ସହିତ ଅପେକ୍ଷା କରି ଶ୍ରଦ୍ଧାଭାଜନ ହେବାରେ ।

ଅବିନାଶ ଯେଉଁଦିନ ଜାଣିବ, ମୁଁ କୌଣସି ଏକ ମହୀୟସୀ ମହିଳାର ପ୍ରେମରେ ଅନ୍ଧ ହୋଇ ରାକ୍ଷସ ହୋଇଯାଇଛି, ସେ ହୁଏତ ବାଲ୍ୟବନ୍ଧୁ ଭାବରେ ଆଖିରୁ ଦି’ଟୋପା ଲୁହ ଗଡ଼େଇବ ।

ଦୁଇବିନ୍ଦୁ ଲୁହ ଦେଖି ମୋର ମନକଷ୍ଟ କରିବାର କ’ଣ ଅଛି । ବିନ୍ଦୁ ବିନ୍ଦୁ କରି କେତେ ବିନ୍ଦୁର ଲୁହରେ ମୁଁ ନିଜେ ଗଢ଼ିଛି ଏଇ ରକ୍ତର ସମୁଦ୍ରକୁ । ସେ କଥା କ’ଣ ଅବିନାଶ ବୁଝିପାରିବ ! କେତେ ଅନାହୂତ ଯନ୍ତ୍ରଣାରେ ମୁଁ ଘାଣ୍ଟି ହେଉଛି ।

ସେ ଡକ୍ଟର । ଜୀବନକୁ ସେ ଭିନ୍ନ ଦୃଷ୍ଟିକୋଣରୁ ଦେଖିଛି । ବିଶ୍ଳେଷଣ କରିଛି । ତା' ପାଇଁ ଏସବୁ କିଛି ନୂଆକଥା ନୁହେଁ । ସେ କେମିତି ବୁଝିବ ଯେ କି ଅବ୍ୟକ୍ତ ଯନ୍ତ୍ରଣାରେ ମୁଁ ଘାଣ୍ଟି ହେଉଛି ।

ସମସ୍ତେ ଅବିନାଶପରି ଡକ୍ଟର ନୁହନ୍ତି । ସମସ୍ତଙ୍କର ଗାଡ଼ି, କୋଠାଘର, ସୁନ୍ଦରୀ ସ୍ତ୍ରୀ ନାହାନ୍ତି । ଜଣେ କିଏ ଦେଉଁଠି କ'ଣ ଗୋଟାଏ କାମ କରିଦେଲା ସେଥିପାଇଁ ଏତେ ଝାଙ୍କିପଡ଼ିବାର କ'ଣ ଅଛି !

: ବୁଝିଲ ମନମୋହନ !

ରକ୍ତ ସମୁଦ୍ରର ରଙ୍ଗ ଦେଖି ତମେ ଡରିଯାଉଛ କି ?

ମତେ ବି ଦିନେ ଏମିତି ଡର ଲାଗୁଥିଲା । ତାପରେ ସବୁ ଆସ୍ତେ ଆସ୍ତେ ଠିକ୍ ହୋଇଗଲା ।

ତମେ ବି ବେଶ୍ ଠିକ୍ ହୋଇଯିବ ।



# ପ୍ରଲୋଭନ

## ॥ ଶ୍ରୀମତୀ ସୁଧାଂଶୁବାଳା ପଣ୍ଡା ॥

ଗତ ରାତିର ରେଡ଼ିଓ ପ୍ରୋଗ୍ରାମ ପରେ, ସେଇ ଶିଶୁଶିଳ୍ପୀ ଦେବୀ ଶେଖରର ପ୍ରୋଗ୍ରାମ ଥିଲା ଷ୍ଟେଡିଓରୁମରେ । ଅଫିସ୍ ରୁମ୍‌ରେ ବସି ସେ ପ୍ରୋଗ୍ରାମ କାର୍ଡ଼ ମୁଁ ହସ୍ତଗତ କଲାବେଳେ, ଚେୟାର ଗୁଡ଼ି ଉଠିପଡ଼ିବାର ମୁଁ ଅନୁଭବ କରୁଛି । କାରଣ, ଗତ ରାତିର ଉନ୍ମାଦନା, ଆଉ ଥରେ ପାଇବା ପାଇଁ, ସେଇ ମୁହୂର୍ତ୍ତିରେ ମୁଁ ବ୍ୟାକୁଳ ଥିଲି । ତେଣୁ ଏତେ ଶିଘ୍ର ପ୍ରତ୍ୟାଶା ପୂରଣ ହେବାରେ ବିଚଳିତ ହୋଇ ପଡ଼ିବା ସ୍ୱାଭାବିକ ।

ସଙ୍ଗେ, ସଙ୍ଗେ ଟେଲିଫୋନ୍ ଉଠାଇଲି, ମେନକାଙ୍କୁ ଏ ଶୁଭ ଖବର ଅତି ଶିଘ୍ର ଜଣାଇବା ପାଇଁ ।

ମେନକା ମୋର ସ୍ତ୍ରୀ ।

ଗତ ରାତିରେ ଦେବୀଶେଖରର ସଂଗୀତ କାର୍ଯ୍ୟକ୍ରମ ମତେ ମନ୍ତ୍ରମୁଗ୍ଧ କରିଥିଲା ସତ, କିନ୍ତୁ ମେନକାଙ୍କ ଭଳି ମତେ ବିଚଳିତ କରି ନ ଥିଲା । ଓଡ଼ିଶା ବାହାରର ଶିଶୁଶିଳ୍ପୀଙ୍କ କଣ୍ଠରେ, ଓଡ଼ିଆ ସଂଗୀତ ମତେ ଆକୃଷ୍ଟ କରିବ, ଏ କଥା ମୁଁ କଳ୍ପନା କରି ନ ଥିଲି । ମେନକା ଦିନ ଭିତରେ ତିନଥର ମତେ ମନେ ପକାଇ ଦେଇଥିଲେ ତା କାର୍ଯ୍ୟକ୍ରମ ଶୁଣିବା ପାଇଁ···ଯେମିତି ମୁଁ ବାହାରକୁ ଚାଲି ନ ଯିବି··· । ବାରମ୍ବାର ତାଙ୍କ ସତର୍କତାରେ ମୁଁ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲି ଶେଷ ଅନୁରୋଧ ବେଳେ । ତେଣୁ କାର୍ଯ୍ୟକ୍ରମ ପ୍ରସାର ପରେ ମଧ୍ୟ ରେଡ଼ିଓ ପାଖେ ବସି, ଦେବୀ ଶେଖରର ସଂଗୀତ ଶୁଣିବା ପାଇଁ ମୋର ଆଗ୍ରହ ନ ଥିଲା । ମାତ୍ର ହଠାତ୍ ତା କଣ୍ଠସ୍ୱର ମତେ ଟାଣି ନେଇଥିଲା ରେଡ଼ିଓ ପାଖକୁ ।

ଟେଲିଫୋନ୍‌ରେ ଏ ଶୁଭବାର୍ତ୍ତା ପାଇ, ହଠାତ୍ ମେନକା ଖୁସି ହୋଇଗଲେ । କିନ୍ତୁ ଠିକ୍ ତା' ପର ମୁହୂର୍ତ୍ତିରେ ଗଳାକୁ ଗମ୍ଭୀର କରି କହିଲେ, "ତମେ ଟିକା ଅଫିସରୁ ଶିଘ୍ର ଆସିଲେ ହେବ···ନଚେତ୍ ଏଇଲେ କହୁ ସେତେବେଳକୁ ଭୁଲିଗଲେ ମତେ ମରିଗଲା ପରି ଲାଗିବ ।"

ଦେବୀ ଶେଖ ପ୍ରତି ମେନକାଙ୍କ ଆନ୍ତରିକ ସ୍ୱର ମତେ ମୁଗ୍ଧ କଲା । ମୁଁ ବିଶ୍ୱାସ କରିପାରିଲିନି ଯେ, ମୋ କଥାରେ ମେନକା କିପରି ରାଜି ହୋଇ, ଦେବୀ ଶେଖରର ପ୍ରୋଗ୍ରାମ ଶୁଣିବା ପାଇଁ ଆଗ୍ରହ ପ୍ରକାଶ କଲେ । ମୋର କୌଣସି କଥାରେ ସେ ରାଜି ହେବା ପାଇଁ ଆଦୌ ପ୍ରସ୍ତୁତ ନୁହଁନ୍ତି ଯେମିତି··· । ନୂଆ ନୂଆ

ତାଙ୍କ ଅମନୋଜ୍ଞତ ବ୍ୟବହାରରେ ମୁଁ କ୍ଷୁବ୍ଧ ହେଉଥିଲି । ବୋଉ ବ୍ୟସ୍ତ ସ୍ୱରରେ କହୁଥିଲା, ପାଠ ପଢୁଆ ଝିଅକୁ ମୋର ବୋହୂ କରିବା ପାଇଁ ଆଦୌ ଇଚ୍ଛା ନ ଥିଲା ଏଇ କାରଣରୁ··· । ସ୍ୱୀକାର କରୁଚ ବୋଲି ଯେ ମୋ ପୁଅ କଥା ତା ମନକୁ ପାଇବନି·· ଏ କଥା ସମ୍ଭାଳିବ କିଏ ? ଅବଶ୍ୟ ସେ କଥା ପଦକ ଶୁଣିବା ପାଇଁ ବୋଉ ଆଉ ପାଖରେ ନାହିଁ । କିନ୍ତୁ ଚରିଦିନ ମନେଥିବ ତାର ସେ ଆନ୍ତରିକ ବାଣୀ··· । ଏବେ ମେନକାଙ୍କ ବ୍ୟବହାର ମତେ ବିରକ୍ତ ନ କରାଇ ଅଭ୍ୟାସରେ ପରିଣତ ହୋଇଗଲାଣି ।

ଦେବୀ ଘୋଷଙ୍କର ସଂଗୀତ ଶୁଣି, ଆମେ ଏକନିଷ୍ଠ ଗୋଟିଏ ବିଛଣାରେ ପଡ଼ି ରହି କେବଳ ତାର ବିଷୟରେ ଆଲୋଚନା କରିଥିଲୁ··· । ତାଙ୍କ ପିତାମାତାଙ୍କ ପ୍ରତି ସଦ୍‌ଭକ୍ତିରେ ମଥା ମୋର ଆନତ ହୋଇଥିଲା ଆପେ ଆପେ··· । ମେନକା ତାଙ୍କ ଟିକି ଝିଅକୁ କୋଳରେ ପୂରାଇ ଗେହ୍ଲାଳିଆ ସ୍ୱରରେ କହୁଥିଲେ, ତୁ ଟିକି ମା ! ଘୋଷ ନାମୀ ଭଳି ଜଣେ କଣ୍ଠଶିଳ୍ପୀ ହୁଅନ୍ତୁ ନାହିଁ··· ? ଆଠମାସର କୁନି ଝିଅ ଟିକି ମେନକାଙ୍କ ମୁହଁ ଚାହିଁ ଦେଇ ଧୀରେ ଲାଳ ଗଡ଼ାଇ ହସି ଦେଲା··· ।

ମମତାମୟୀ ମେନକାଙ୍କ ଟିକି ର ଭବିଷ୍ୟତ କଳ୍ପନା କରୁଥିବା କାହାଣୀ ଶୁଣି, ମତେ ହସ ଲାଗୁଥିଲେ ବି ଖୁସି ହେଉଥିଲି ମୁଁ ··· । କାରଣ, ଦେବୀ ଘୋଷଭଳି ତା' କଣ୍ଠ ଯେ ଦିନେ ମନ୍ତ୍ରମୁଗ୍ଧ କରିବ ସେ କଥା ଭାବିଲା ବେଳକୁ ପ୍ରତ୍ୟେକ ଶିରା ପ୍ରଶିରାରେ ମୋର ଆନନ୍ଦର ବାତ୍ୟା ଖେଳି ଯାଉଥିଲା । ଟିକି ଯେ କେବଳ ମେନକାଙ୍କ ଝିଅ, ତା ନୁହେଁ, ସେ ଯେ ମୋ ଝିଅ··· ।

ମେନକାଙ୍କୁ ଫେରିବାର ପ୍ରତିଶ୍ରୁତି ଦେଇ ଟେଲିଫୋନ୍ ରଖିଲି । ଫୋନ୍ ରଖିବା ସମୟରେ ମେନକା କହୁଥିଲେ, ତମେ ଶିଘ୍ର ଆସିବ···ମନେ କରି ଶିଘ୍ର ଆସିବ··· ।

ସାମନାରେ ମୋର ସ୍ତୁପିକୃତ ଫାଇଲକୁ ନ ଦେଖିଲାଭଳି ଲେଉଟି ଆସିଲି ମୁଁ··· । ଘରେ ପହଞ୍ଚି ଡ୍ରଇଂରୁମ୍‌ରୁ ମୁଁ ପାଟିକରି ଉଠିଲି ମେନକାଙ୍କ ଉଦ୍ଦେଶ୍ୟରେ ମୋର ଆସିବାକୁ ସୂଚେଇ ଦେବାପାଇଁ··· । ଡ୍ରଇଂରୁମ୍‌ରୁ ଶୟନ କକ୍ଷ···ବାହାର ବାରଣ୍ଡାରୁ ଯାଇ ପଶିଲି ରୋଷେଇଘରେ··· । ସେଠାରେ ବି ମେନକା ନାହାନ୍ତି । ପିଅନ୍ କୋଳରେ ଟିକିମା ବୋତଲରେ ଦୁଧ ପିଉଛି··· । ମୋ କଣ୍ଠସ୍ୱର ଶୁଣି, ତା ନାଳୁଆ ପାଟିରୁ ବୋତଲ ଖସାଇ ମତେ ସତୃଷ୍ଣ ଦୃଷ୍ଟିରେ ଚାହିଁରହିଲା ମୋ ପାଖକୁ ଆସିବା ଲାଗି··· । ତା' ପାଟିରେ ବୋତଲ ଭରିଦେଇ ନେଇଆସି ପିଅନ୍ ଉଦ୍ଦେଶ୍ୟରେ ପ୍ରଶ୍ନ କଲି ମା' ଯାଇଛନ୍ତି କୁଆଡ଼େ···? ତୋତେ କିଛି କହିକରି ଯାଇଛନ୍ତି ଗଲାବେଳେ···?

: ମାଆ ଷ୍ଟେଡ଼ିୟମ୍ ଯାଇଛନ୍ତି...କହିଛନ୍ତି ବାବୁ ଆସିଲେ କହିବୁ, 'ମୁଁ ୪ ନମ୍ବର ବାଲ୍ କୋଣରେ ତାଙ୍କପାଇଁ ଜାଗା ରଖିଥିବି...ସେ ଶିଘ୍ର ଯିବେ

ସେମିତ... ।' ଯାଗା ମିଳିବ ନାହିଁ ବୋଲି ମାଆ ଆଗରୁସ ଚାଲିଯାଇଛନ୍ତି ବୋଧେ... ।

ଦର୍ଶକମାନଙ୍କ ଅସମ୍ଭବ ଭିଡ଼ ଠେଲି ମୁଁ ୪ ନମ୍ବର ବାଲ୍‌କୋନିରେ ପହଞ୍ଚିଲି ସତ, କିନ୍ତୁ ମେନକା କାହାନ୍ତି··· ? ତନ୍ନ ତନ୍ନ ଖୋଜି ନିରାଶରେ ସେଠି ବସିରହିଲି ସିନା, ମେନକାଙ୍କ ପାଖେ ମୋ ମନ ପ୍ରାଣ ଥାଏ । କାରଣ ସଙ୍ଗୀତ ପ୍ରତି ବେଶୀ ଆଗ୍ରହୀ ମେନକା... । ସେ ବୋଧେ ଏଇ ଭିଡ଼ ଠେଲି ଆସିପାରିଲେନି... କିମ୍ବା ୪ ନମ୍ବରରେ ନ ବସି ଅନ୍ୟ କେଉଁଠି ବସିଗଲେ... । କିଛି ସ୍ଥିର କରି ନ ପାରି ମନଟା ଦ୍ୱିଧାରେ ଛନ୍ଦି ହୋଇଗଲା... ।

ଅଢଣସ୍ତ ବ୍ୟସ୍ତହୋଇ, ରେଜିର ଗୀତ ଶୁଣିବାରେ ଗୁରୁତ୍ୱ ନ ଦେଇ ମେନକାଙ୍କୁ ଖୋଜିବାରେ ଲାଗିଲି । ପ୍ରାୟ ସବୁ ଆଡ଼େ ଖୋଜି ଖୋଜି କାଳେ ସେ ଘରକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । ଭାବି ଘରକୁ ପୁଣି ଫେରିଲି··· । ମେନକା ଘରେ ମଧ୍ୟ ନାହାନ୍ତି··· । ଗଲେ କୁଆଡ଼େ ? ସେ ଯେଉଁଠାରେ ଅଟକିଯିବା ସମ୍ଭବ, ସେଠାକୁ ଫୋନ୍ କରି ନିରାଶ ହୋଇ ପୁଣି ଫେରିଗଲି ଷ୍ଟେଡ଼ିୟମକୁ । ସେତେବେଳକୁ ରେଜିର ସଙ୍ଗୀତ ଗାନ ସରିଗଲାଣି । ଦର୍ଶକଙ୍କ ପାଟିରୁ ବାରମ୍ବାର ବାଃ...ବାଃ... ଶୁଣି ମୁଁ ବ୍ୟସ୍ତ ହୋଇପଡ଼ିଲି । ଗୀତ ଶୁଣି ନ ପାରି, ମେନକାଙ୍କ ପ୍ରତି ବିରକ୍ତିଭାବ ପ୍ରକାଶ ପାଇଲା । ମେନକାଙ୍କୁ ଖୋଜିବାକୁ ଇଚ୍ଛା ନ ହୋଇ, ବେଶୀ ରେଜିକୁ ଦେଖିବାକୁ ପ୍ରବଳ ଇଚ୍ଛା ହେଲା ମୋର... । ଗୀତ ନ ଶୁଣିଲେ ନାହିଁ···ଅନ୍ତତଃ ସେ ଝିଅଟାକୁ ଦେଖିଦେଲେ କେତେ ପରିମାଣରେ ଆନନ୍ଦ ମିଳିବ... । ଗୀତ ତ କାଲି ଶୁଣିଛି··· ।

ଅଧୈର୍ଯ୍ୟ ଚିତ୍ତରେ ମେନକାଙ୍କୁ ନ ଖୋଜି, ରେଜିକୁ ଦେଖିବା ପାଇଁ ଷ୍ଟେଡ଼ିୟମର କକ୍ଷ ଭିତରେ ପ୍ରବେଶ କଲି । ଆପଣା ଛୁଏଁ ଗୋଡ଼ ଦୁଇଟା ମୋର ଅଟକିଗଲା ଦୁଆରବନ୍ଧ ପାଖେ । ମେନକା ରେଜିକୁ ଛାତିରେ ଚାପିଧରି ଶୋକାତୁର କଣ୍ଠରେ କ'ଣ କହିବାରେ ଲାଗିଛନ୍ତି··· । ରେଜି କଅଁଳ କ୍ରନ୍ଦନ କଣ୍ଠରେ କହୁଛି, ମମୀ ! ତମେ ଆଉ କେବେ ଡାକିବ ଓଡ଼ିଶାକୁ ମୋ ଗୀତ ଶୁଣିବା ପାଇଁ··· ?

ମୁଗ୍ଧ କଣ୍ଠରେ ମୁଁ ଦ୍ୱାର ରକ୍ଷକକୁ ପ୍ରଶ୍ନ କଲି, ସେ ସ୍ତ୍ରୀଲୋକ ତାଙ୍କର କ'ଣ ?

ଦ୍ୱାର ରକ୍ଷକ କ୍ଷୀଣ କଣ୍ଠରେ କହିଲା, "କଣ୍ଠଶିଳ୍ପୀ ବେବି ରେଜିଙ୍କ ମା··· । ଏଇ ଓଡ଼ିଶାରେ ସେ ବିବାହ କରିଛନ୍ତି ଜଣେ ପଦସ୍ଥ ଅଫିସରଙ୍କୁ···ଲୁଚିକରି ଆସିଛନ୍ତି ଟିକେ ଝିଅକୁ ଦେଖିଯିବା ପାଇଁ··· ।"

କିଛି କହି ନ ପାରି, ମୁଁ ଭାବୁଥିଲି, କାହାକୁ ଲୁଚିଛନ୍ତି ସେ···???






# ॥ ବିପ୍ଳବୀ ॥

● ଅଧ୍ୟାପକ ସନତ୍ ଦାସପଟ୍ଟନାୟକ

ପିଏ 'ହଁ' କହି ଚାଲିଗଲାପରେ ମାତ୍ର ବୁଝିଲି ଯେ ସେ ମୋ' ବିରୁଦ୍ଧରେ ଏକ ବିରାଟ ବିଦ୍ରୋହ ଘୋଷଣା କରିଯାଇଛି ।

ମୁଁ ପଚାରିଥିଲି—ଭବିଷ୍ୟତ ସମ୍ପର୍କରେ କିଛି ଭାବିଛ ରାଜେଶ ।

ସେ କହିଥିଲା—ହଁ ।

ବାଣ୍ । ସେତିକି । ତାପରେ ସେ' ଚାଲିଗଲା ।

ଅଥଚ ହଠାତ୍ ଏତିକି ଉପଲବ୍ଧିକରି ଝରକାରୁ ତାକୁ ଡାକିବାକୁ ବସିଲି । ମାତ୍ର ସେ ସେତେବେଳକୁ ଅଳ୍ପ ଦୂରରେ ଥିବା ଅଶ୍ୱତ୍ଥଗଛର ଉହାଡ଼ରେ ଲୁଚି ଯାଉଥିଲା । ମୁଁ କେବଳ ଲକ୍ଷ୍ୟକଲି ଯେ ପିଏ ନିଶ୍ଚିନ୍ତ କିଛି ଗମ୍ଭୀର ଚଲାକରି ପାଦ ପକାଉଥିଲା ଓ ତାର ହାତଯୋଡ଼ିକ ପୃଷ୍ଠ ଉପରେ କମାଟ ବାନ୍ଧି ଯାଇଥିଲା ।

ଅଭିମାନିଆ ହୋଇ ସ୍ତ୍ରୀଙ୍କୁ କହିଲି—ଦେଖିଲ, ଆଜିକା ପିଲାଙ୍କୁ ଆଉ ପାରିହେବନି । ଟିକିଏ କଥାରେ ଜିଦ୍ । ଏଇ ରାଜେଶ କଥା । ବିପ୍ଳବୀ ସାଜିଛି । ଏଣେ ବାପା ମା' ତାର ମୋତେ ଦେଖିଲେ ପଚାରୁଛନ୍ତି—ପିଲାଟି କେମିତି ପଢ଼ୁଛି ଆଜ୍ଞା ? ସେତେବେଳେ କଣ ମନେପଡ଼େ ଜାଣ ! ମନେପଡ଼େ ମୁଁ ତାର ପରୀକ୍ଷା ଖାତା ଦେଖି ଖୁବ୍ ଜୋରରେ ଶହେରୁ ଦଶ ନମ୍ବର ଦେଇପାରେ । ହୁଁଃ । ଇଏ ପୁଣି ବିପ୍ଳବୀ ହେବ ! ଏମାନେ ପୁଣି ଆମର ଇଣ୍ଟେଲେକ୍ଚୁଏଲ୍ କ୍ଲାସ୍ ସୃଷ୍ଟି କରିବେ !

ସ୍ତ୍ରୀ କହିଲେ—ସେଥିରେ ତୁମର କ ଯାଏ । ପିଏ ଯାହା ହେବାର ଥିବ ହେବ । ଏ ସବୁରେ ଅଯଥା ଏତେ ମୁଣ୍ଡ ଖେଳାଉଛ କାହିଁକି ଯେ !

ମୁଁ ଦୃଢ଼ ସ୍ୱରରେ କହିଲି – ଭବିଷ୍ୟତ ତ ଗଢ଼ୁଛେ ଆମେ । ଜାଣି ଜାଣି ପିଲାଟିର ଭବିଷ୍ୟତ ଧ୍ୱଂସ କରିଦେବି । କେବେ ନୁହେଁ !

ସ୍ତ୍ରୀ କହିଲେ—ତାହେଲେ କଣ କରିପାରିବ କର ।

—କାହିଁକି ତାର ବାପମା'ଙ୍କୁ ସବୁକଥା ଜଣାଇଦେବି ।

ସ୍ତ୍ରୀ ଏଥର ହସିଲେ—ତୁମେ ପରା କହୁଥିଲ ମା' ବାପାଙ୍କ ପ୍ରତି ସ୍ନେହଟାକୁ ବୃକୋସ୍ଥା ପ୍ରୀତିରେ ପରିଣତ ହେଲାଣି । ରାକେଶ ଯଦି ବିପ୍ଳବୀ, ତେବେ ସେ ତାର ବାପା ମା'ଙ୍କୁ ସେମିତି ବି ଜବାବ ଦେବ ।

— ଅସମ୍ଭବ !

ହଠାତ୍ ଜଣ ଗୋଟିଏ ଗୁଡୁମ୍ ହୋଇ ଫୁଟିଲା । ସ୍ତ୍ରୀ ଓ ମୁଁ ହତବାକ୍ ହୋଇ ଦେଖିଲୁ ପୁଅ ଆମର ବନ୍ଧୁକ ଆମ ଆଡ଼କୁ ଦେଖାଇ ଫୁଟାଇଛି ଏକ ଅଦୃଶ୍ୟ ଗୋଳି । ସେ ଖିଲ୍ ଖିଲ୍ ହୋଇ ହସୁଛି । ତାର ଆଖି ଯୋଡ଼ିକରେ ଗୋଟାଏ ବାଘଛୁଆର ନରମ ନିର୍ମମ ଚାହାଣୀ । ମୁଁ ପ୍ରାୟ ଥରୁଥିଲି । ସ୍ତ୍ରୀଙ୍କୁ ଅନାଇଲି । ସେ ମଧ୍ୟ ହସୁଛନ୍ତି । ବାଃ ! କେତେ ମନକଣ ଯାହାରୁ ପୁଅଲାଗି କିଣିଦେଇଥିଲି ଖେଳନା କାଠ-ବନ୍ଧୁକଟି ସତେ ?



## ଅନୁବାଦ

# ॥ ସୁଭଦ୍ରାଙ୍କ ରଥ ॥

ମୂଳ ବଙ୍ଗଳା ରଚନା : ଶ୍ରୀ ସନ୍ତୀକାନ୍ତ ଗୁହ

ଭାଷାନ୍ତର : ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

ରମେନ ମଜୁମଦାର ଅକ୍ସଫୋର୍ଡ଼ରୁ ଏକ ଦୁର୍ଲଭ ଡିଗ୍ରୀ ହାସଲ କରି ଦେଶକୁ ଫେରି ଆସିବା ସଙ୍ଗେ ସଙ୍ଗେ କଲିକତାର ଏକ ୟୁନିଭର୍ସିଟିରେ ଇଂରାଜୀ ବିଭାଗରେ ଏକ ସିନିୟର ପୋଷ୍ଟ ପାଇଗଲେ । ଫଳରେ ତାଙ୍କର ଆତ୍ମୀୟ ଓ ବନ୍ଧୁମହଲରେ ଈର୍ଷା ବିଷାଦ ଆନନ୍ଦ ଓ କ୍ଷୋଭ ଲୌକିକ ଶୁଭକାମନାର ଛଦ୍ମ ବେଶରେ ନାନାପ୍ରକାର ଟିକା ଟିପ୍ପଣୀ ସହ ରମେନଙ୍କ ଦୁଇ କାନରେ ଢିଆଁଳି ଗଛର ଚଟପଟି ପରି ଫୁଟି ଉଠିଥିଲା । କିଛିଦିନ ପରେ ଶୁଭକାମନାର ପାଲା ଶେଷ ହେବା ପରେ ରମେନ ସ୍ୱସ୍ତିର ନିଃଶ୍ୱାସ ମାରିଲେ ।

ଦିନେ ରମେନଙ୍କ ଘର ସାମନା ରାସ୍ତାରେ ବୃଦ୍ଧ ତାରାନାଥ ସାନ୍ୟାଲଙ୍କ ସଙ୍ଗେ ଦେଖା ହେବାରେ ସେ ପ୍ରାୟ ରମେନଙ୍କ ପଥ ଅବରୋଧ କରି କହିଲେ, "ହ୍ୟାଲୋ ଇୟଂ ଜିନିୟସ୍ ! ପଚିଶ ବର୍ଷରେ ୟୁନିଭର୍ସିଟିର ରିଡ଼ର ! ଏକ ପୁରୁଷରେ ଚୌଦ ପୁରୁଷର କୀର୍ତ୍ତି ଅର୍ଜ୍ଜନ କରି ପକାଇଲ !"

ରମେନ ସୁଖ୍ୟାତିର ଏଇ ସମ୍ମୁଖ ଆକ୍ରମଣରେ ପ୍ରାୟ ବିଧ୍ୱସ୍ତ ହୋଇ ମୁହଁ ଆମ୍ବିଳାଇ କହିଲେ, "ଆଜ୍ଞା, ଇଏ ଆଉ ଏମିତି କଣ ଗୋଟାଏ !"

ତାରାନାଥ ରାସ୍ତାରେ ଛିଡ଼ା ହୋଇ ଟିକିଏ କୃତ୍ରିମ କୋପ ଓ ବିସ୍ମୟ ପ୍ରକାଶ କରି କହିଲେ, "ହାଉ ଆରଗାଣ୍ଟ ! ଏଇ ବୟସରେ କଣ ଆଉ ଭାଇସ୍-ଚ୍ୟାନ୍‌ସେଲର ହେବାକୁ ଚାହଁ ନା କଣ ?" ତା'ପରେ ହା ହା କରି ହସି ରମେନଙ୍କ ପିଠି ଥାପୁଡ଼ାଇ କହିଲେ, "ଆଇ ଆମ୍ ଗ୍ରେଟ୍‌ଫୁଲ ଭେରି ହାପି ।

ଆଜ୍ଞ ଶମି ! ଶମି ତ ଖତମତ ଏକ୍ସାଇଟେଡ୍ !" ଶମି କିଏ ଏବଂ କାହିଁକି ବା ଏକ୍ସାଇଟେଡ୍ ରମେନଙ୍କ ପକ୍ଷରେ କାଳେ ବୁଝିବା ସମ୍ଭବ ନ ହୋଇପାରେ, ସେଥିପାଇଁ ଝପ୍ କରି ତାରିନାଥ କହିଲେ, "ଇଉ ମଷ୍ଟ ଗେଟ୍ ଟୁ ନୋ ଶମି । ଶମି ମୋର ନାତୁଣୀ । ଝିଅର ଝିଅ । ଲଭଲି ଏଣ୍ଡ୍ ଡିଫିକଲ୍ଟ । କିନ୍ତୁ ହୀରାର ଟୁକୁରା ଖଣ୍ଡେ । ମୋଷ୍ଟ ଇମ୍ପୋର୍ଟାଣ୍ଟ ଗାର୍ଲ ଇନ୍ ଦ ହୋଲ୍ କ୍ୟାମ୍ପାସ୍ ।"

ତାରିନାଥ ତାଙ୍କ ଅବରୋଧ ଉଠାଇ ନେଇ ପ୍ରସ୍ଥାନ କରିବା ସଙ୍ଗେ ସଙ୍ଗେ ତାରିନାଥ ଓ ଶମି ରମେନଙ୍କ ଆକାଶରେ ଅତି କ୍ଷୀଣ ଗୋଟାଏ ଆଞ୍ଚୁଡ଼ା ଦାଗ କାଟି, କୁଆଡ଼େ ମିଳାଇଗଲେ । ରମେନ ସଦ୍ୟ ବିବାହିତ । ସେ ସେତେବେଳେ ତାଙ୍କର ସୁନ୍ଦରୀ ତରୁଣୀ ସ୍ତ୍ରୀଙ୍କ ଧ୍ୟାନରେ ମଗ୍ନ । ତାରିନାଥଙ୍କ ମୁହଁରେ ଶମିର ନାଁ ତାଙ୍କର କିଛିମାତ୍ର ଭାବାନ୍ତର ଘଟାଇ ପାରିଲା ନାଇ ।

ରମେନଙ୍କ ବୁଦ୍ଧିଦୀପ୍ତ ଚେହେରା ଓ ମାର୍ଜିତ ଆଚରଣ ତାଙ୍କୁ ଏକ ଆକର୍ଷଣୀୟ ବ୍ୟକ୍ତିତ୍ୱ ଦେଇଥିଲା । ୟୁନିଭର୍ସିଟିର ଅଧ୍ୟାପକମଣ୍ଡଳ ଓ ଛାତ୍ରମଣ୍ଡଳ ଉଭୟଙ୍କୁ ସେ ପଦିଏ କଥା ଉଚ୍ଚାରଣ କରିବା ପୂର୍ବରୁ ହିଁ ଜୟ କରିଦେଲେ । ଏଥିପାଇଁ ହୁଏତ ସେଦିନ ଅନାର୍ସ କ୍ଲାସର ଦ୍ୱିତୀୟ ଘଣ୍ଟାରେ ରମେନ ଟିକିଏ ଚମକି ଗଲେ ।

ରମେନ କ୍ଲାସରେ ଢୁକି ଚେୟାର ଟାଣି ବସିବାକୁ ଯାଉଛନ୍ତି, ପଛ ଧାଡ଼ିରୁ ଗୋଟିଏ ଝିଅ ଉଠି ଛିଡ଼ା ହେଲା । ଶ୍ୟାମବର୍ଣ୍ଣ । ଚଟପଟ । ସପ୍ରତିଭ । ତା ହାତରେ ଖଣ୍ଡେ ବୃହଦାକାର କାଗଜ । ରମେନଙ୍କର ସପ୍ରଶ୍ନ ଦୃଷ୍ଟିର ଉତ୍ତରରେ କହିଲା, "ସାର୍ ! ଆଜି ପଢ଼ାଇବା ଆଗରୁ ଆମର ଚ୍ୟାଟାର ଅଫ୍ ଡିମାଣ୍ଡ ନେଇ ଆଲୋଚନା ହେଲେ ଭଲ ହୁଅନ୍ତା । ନ ହେଲେ, ଆପଣ ଯେତେ ଅନେଷ୍ଟଲି, ଯେତେ ଭଲ ପଢ଼ାନ୍ତୁ ନା କାହିଁକି ଆମର ଆଉ ଆପଣଙ୍କର, ଉଭୟ ପକ୍ଷରଇ ସମୟ ନଷ୍ଟ ହେବ ।"

ରମେନ ନିଜ ଭିତରେ ଏକ ପ୍ରବଳ ଉତ୍ତେଜନାର ଆଲୋଡ଼ନ ଅନୁଭବ କଲେ । କିନ୍ତୁ କୌଣସି ପ୍ରକାରେ ନିଜକୁ ପ୍ରାୟ ଦମନ କରି ସମ୍ଭାଳି ନେଲେ । କହିଲେ, "ମୁଁ ଅଧ୍ୟାପକ । ଏଠି ଇଂରାଜୀ ସାହିତ୍ୟ ପଢ଼ାଇବାକୁ ଆସିଛି । ମୋ ପାଖରେ ତମର ସବୁ କଣ ଡିମାଣ୍ଡ ଥାଇ ପାରେ ? ଚାର୍ଟାର ୟୁନିଭରସିଟି ଅଥରିଟିମାନଙ୍କ ପାଖରେ ପେଶ୍ କର ।"

ଝିଅଟି ଟିକିଏ ହସି କହିଲା, "ଚାର୍ଟାରଟା ଦେଖିଲେଇ ବୁଝି ପାରିବେ ଆମର କଣ ଡିମାଣ୍ଡ । ଯଦି ଅନୁମତି କରନ୍ତି ତ ପଢ଼ିବି ।"

ରମେନ ଗମ୍ଭୀର କଣ୍ଠରେ କହିଲେ, "କାଗଜଟା ମୋତେ ଦିଅ । ଯଦି କ୍ଲାସରେ ପଢ଼ି ଶୁଣାଇବା ଭଲ ହୁଏ, ଅନୁମତି ବିଷୟ ବିବେଚନା କରିବି ।"

ଝିଅଟି ଆଗେଇ ଆସି ରମେନଙ୍କ ହାତରେ କାଗଜଟା ଦେବା ସଙ୍ଗେ ସଙ୍ଗେ ରମେନଙ୍କ ମୁହଁର ଚେହେରା ବଦଳିଲା । ଛାତ୍ରମାନଙ୍କ ଦାବିର ପ୍ରଥମ କେତୋଟି ଦଫା ହେଲା ଏଇ : (୧) ଅକ୍ସଫୋର୍ଡର ଉଚ୍ଚାରଣ ନକଲ କରିବାକୁ ଯାଇ ସାନୁନାସିକ ଉଚ୍ଚାରଣ କରି ଆମର କର୍ଣ୍ଣପୀଡ଼ାର କାରଣ ହେବେ ନାଇ । (୨) ଅନ୍ୟଠୁ ଧାରକରା ବୋଲି ଆଉଡ଼ାଇ ନିଜର ଅଜ୍ଞତା ଢାଙ୍କିବାକୁ ଚେଷ୍ଟା କରିବେ ନାହିଁ । (୩) ପାଣ୍ଡିତ୍ୟ ଜାହିର କରିବାକୁ ଯାଇ ମୂଳ ବିଷୟରୁ ଦୂରେଇ ଯାଇ ରାଶିକୃତ ଅପ୍ରାସଙ୍ଗିକ ବିଷୟର ଅବତାରଣା କରି ଆମର ଅମୂଲ୍ୟ ସମୟ ନଷ୍ଟ କରିବେ ନାହିଁ ।

ରମେନ କାଗଜ ଖଣ୍ଡିକ ଟିକିଟିକି କରି ଛିଣ୍ଡାଇ ଝିଅଟି ହାତରେ ଦେଇ କହିଲେ, "ତମ ଚାର୍ଟାରର ଏଇ ହେଲା ମୋର ଜବାବ୍ ।"

ଝିଅଟିର ମୁହଁ ଏକାବେଳକେ ପାଉଁଶିଆ ପଡ଼ିଗଲା । କିନ୍ତୁ ସପ୍ରତିଭ ଭାବରେ ସେ କହିଲା, "ସ୍ୟାର୍ ! ଆମେ ଚାର୍ଟାର ଦେଇଛୁ, ଜବାବ ବି ପାଇଛୁଁ । ଧନ୍ୟବାଦ ।"

ରମେନଙ୍କର ଇଚ୍ଛା ହେଲା ପଢ଼ା ବନ୍ଦ କରି ତାଙ୍କ ନିଜ ପ୍ରଥାରେ ଅସହଯୋଗ ଅବଲମ୍ବନ କରି କ୍ଲାସଟାକୁ ଶାସ୍ତି ଦିଅନ୍ତେ । କିନ୍ତୁ ତାଙ୍କୁ ନେଇ ପିଲାଖେଳ କରିବା ସମ୍ଭବ, କ୍ଲାସର କେହି ଏକଥା ଭାବିଥିଲେ ତାଙ୍କର ଅସହ୍ୟ ମନେହେଲା । ତାଙ୍କର ମର୍ଯ୍ୟାଦା ଦିଗରୁ ବିଷୟଟାକୁ ଏକାବେଳକେ ହିସାବକୁ ନେବା ଚଳିବ ନାଇ । ଯେମିତି କିଛି ଘଟି ନାଇ ଏଇରକମ ଗୋଟାଏ ଉନ୍ନାସିକ ଔଦାସୀନ୍ୟ ଅବଲମ୍ବନ କରି ରମେନ ଯଥାରୀତି ନିର୍ଦ୍ଧାରିତ ବିଷୟ ପଢ଼ାଇଲେ । କ୍ଲାସରେ ଟୁଁ ଶବ୍ଦ ହେଲା ନାଇ ।

ରମେନ ଯଦିଓ ଏଇ ଘଟଣାଟାକୁ ଏକାବେଳକେ ଚାପା ଦେବାକୁ ଚାହିଁଥିଲେ, କାର୍ଯ୍ୟତଃ ତାହା ସମ୍ଭବ ହେଲା ନାଇ । ଖବରଟା ଅଧ୍ୟାପକ-ମାନଙ୍କ କମନରୁମ୍‌ରେ ଯାଇ ପହଞ୍ଚିଲା । ବିନୟ ସେନ କହିଲେ,

"ଶର୍ମିଳା ଅସମ୍ଭବ ପପୁଲାର ଓ ବ୍ରିଲିୟାଣ୍ଟ୍ ଝିଅ । ସେଇଥିପାଇଁ ତ ଇଏ ହେଉଛି ଷ୍ଟୁଡେଣ୍ଟ୍‌ମାନଙ୍କ ଭିତରେ ସବୁଠୁ ଡେଞ୍ଜେରସ । ସ୍ୟାକୁ ପ୍ରୁଭ୍ କରି ସେପରି ଭାବରେ ଆଜି କ୍ଲାସଟାରେ ନାକମୋଡ଼ ଦେଲେ, ଦେଖି ଅଧ୍ୟାପକମାନେ କିପରି କ୍ଲାସ୍ କଣ୍ଟ୍ରୋଲ କରିବାକୁ ହୁଏ ଶିଖନ୍ତୁ ।

ରମେନ କିଛି କହିବା ଆଗରୁ ଦର୍ଶନର ଅଧ୍ୟାପକ ବିଭୂତି ଚୌଧୁରୀ କହିଲେ, "ନାଃ ! ଏମିତି କିଛି ଗୋଟାଏ ହେବା ଉଚିତ ଥିଲା । ସ୍ମାର୍ଟାର ସ୍ମାର୍ଟାର କହି ମୋତେ କମ ଜଳେଇଛି ! କମ କ୍ଲାସ ପଣ୍ଡ କରିଛି !"

ଅଧ୍ୟାପକ ମୁରଲୀବାବୁ କହିଲେ, "ଏମାନେ ଆମ ଖିରୁଡ଼ାଇ ସୁଯୋଗ ନଅନ୍ତୁ । ଅଥଚ ଆମେ ସାହସ ଦେଖେଇବାକୁ ଯାଇ ଭୟ ପାଉଁ, ଅନର୍ଥ ଘଟେ ।"

ଅଧ୍ୟାପକ ମଣ୍ଡଳୀର ନାନା ଉକ୍ତି ପରେ ରମେନ ଧୀରକଣ୍ଠରେ କହିଲେ, "କ୍ଲାସଟା ଖୁବ୍ ରସେପ୍‌ଟିଭ । ତେଣୁ ମନଟା ମୋର ଟିକିଏ ଖରାପ ଲାଗୁଛି । ଅଥଚ ଯାହା କରିଛି ତା ନ କରିବାର ଉପାୟ ନଥିଲା ।

ଛାତ୍ର ଛାତ୍ରୀ ଲାଞ୍ଛିତ ବହୁ ଅସମ୍ମାନିତ ସମସ୍ତଙ୍କର ହାସ୍ୟ ଓ କୃପାର ପାତ୍ର ବାଂଲାର ଅଧ୍ୟାପକ ପ୍ରତାପ ସିଂହ କହିଲେ—"ନାଃ ! ଟିକିଏ କଡ଼ାକଡ଼ି ନ କଲେ ଚଳୁନାଇ । ଏମାନେ ଯେମିତି ମୁଣ୍ଡରେ ଚଢ଼ୁଛନ୍ତି ! ମୋ ମତରେ ଆପଣ ଠିକ୍ ହିଁ କରିଛନ୍ତି ରମେନବାବୁ ।"

ପ୍ରତାପ ସିଂହଙ୍କର ଏଇ ବିବେଚିତ ଉକ୍ତିରେ ଅଧ୍ୟାପକମାନଙ୍କ କମନରୁମ୍‌ରେ ଯେଉଁ ତୁମୁଳ ହାସ୍ୟରୋଳ ଉଠିଲା ରମେନ ସେଥିରେ ଯୋଗ ନ ଦେଇ ରହି ପାରିଲେ ନାଇ ।

କ୍ଲାସରୁମ୍‌ର ଏଇ ନାଟକୀୟ ଘଟଣାର ନାୟିକା ଶର୍ମିଳା ଚାଟାର୍ଜି । ତାରକନାଥଙ୍କ ନାତୁଣୀ ଶମି । ଝିଅଟି ଯେ ଖାଲି ସପ୍ରତିଭ ତା ନୁହେଁ; ତା'ର ଆଖି ଓ ମୁହଁରେ ବୁଦ୍ଧି ଓ ମେଧାର ଦୀପ୍ତି । କ୍ଲାସରେ ଖୁସିହେଲେ ସେ ଫାଷ୍ଟ ହୁଏ । ପ୍ରୟୋଜନ ହେଲେ ଖିଆଲ ଚରିତାର୍ଥ କରିବାକୁ ଯାଇ ବ୍ଲାଙ୍କ୍ ପେପର ସବମିଟ କରେ । ଅସମାନ୍ୟ ତାର ବ୍ୟକ୍ତିତ୍ୱ ଏବଂ ଏ ବିଷୟରେ ସେ ବିଶେଷ ସଜାଗ ।

ସେଦିନ କ୍ଲାସରେ ଅଘଟଣାଟା ବିଶ୍ଳେଷଣ କରି ରମେନ ଯେଉଁ ସିଦ୍ଧାନ୍ତରେ ଉପନୀତ ହେଲେ ତାହା ତାଙ୍କୁ ବିଚଳିତ କଲା । ଛାତ୍ରଛାତ୍ରୀ-ମାନେ ସେଦିନ ରମେନଙ୍କ ବ୍ୟକ୍ତିତ୍ୱ ନିକଟରେ ମୁଣ୍ଡ ନୁଆଇଁଥିଲେ ସତ, କିନ୍ତୁ ସେମାନଙ୍କ ପକ୍ଷ ନେଇ ସେମାନଙ୍କର ନେତ୍ରୀସ୍ଥାନୀୟା ଯେଉଁ ଝିଅଟି ଅମାର୍ଜନୀୟ ଧୃଷ୍ଟତାର ପରିଚୟ ଦେଇଥିଲା ତାହା ବିରୁଦ୍ଧରେ କେହି ହୁଁ ଶବ୍ଦଟି କରି ନାହାନ୍ତି । ରମେନଙ୍କୁ ମାନି ନେବା ସତ୍ତ୍ୱେ ବି ସେମାନେ ଯେ ଶର୍ମିଳାର ଧୃଷ୍ଟତାକୁ ମାନି ନେଇ ପାରିଲେ କ୍ଲାସର ଏଇ ଆଚରଣର କୂଟ ଇଙ୍ଗିତଟା ଗୋଟାଏ ପରିହାସ ବିକୃତ ମଣିଷର ମୁହଁ ପରି ରମେନଙ୍କ ଆଡ଼କୁ ଯେପରି କଟାକ୍ଷ କରୁଥିଲା । ଶର୍ମିଳା ନିଜେ, କ୍ଲାସର ଆଉ କୌଣସି ଛାତ୍ରଛାତ୍ରୀର ସାହାଯ୍ୟ ନ ନେଇ ରମେନଙ୍କୁ ସମ୍ଭାଳି ନେଇ ପାରିବ, କ୍ଲାସଟାର ମନୋଭାବ ହୁଏ ତ ଏଇଆ । ତା' ହେଲେ, ରମେନ ନ ଭାବି ରହିପାରନ୍ତି ନି, ଏଥିରେ ତାଙ୍କ ପକ୍ଷରେ ବିଚଳିତ ହେବାପାଇଁ ଯଥେଷ୍ଟ କାରଣ ରହିଯାଏ ।

ରମେନ ବୁଝିଲେ ଯେ, ଶର୍ମିଳାର ଦୃଷ୍ଟି ଶତ୍ରୁର ଦୃଷ୍ଟିପରି । ବାରମ୍ବାର ତାର ଦୃଷ୍ଟି ତାଙ୍କ ଉପରେ ପଡ଼ିବ । ବାରମ୍ବାର ତାଙ୍କୁ ଏଇ ଦୃଷ୍ଟିମୁକ୍ତ ହେବାକୁ ହେବ । ତାର ଅଳ୍ପ କେତେ ଦିନ ପରେ ରମେନ କମନରୁମ୍‌ରେ ଏକା ବସିଛନ୍ତି, ସଦ୍ୟପ୍ରକାଶିତ ଗୋଟିଏ ବହି ଗଭୀର ମନଯୋଗସହ ପଢ଼ୁଛନ୍ତି । ବହିର ପୃଷ୍ଠା ଉପରେ ହଠାତ୍ ଛାୟା ପଡ଼ିବାରୁ ରମେନ ମୁହଁ ଟେକି ଦେଖିଲେ । ଶର୍ମିଳା ଆସି ଏକାବେଳକେ ସାମ୍ନା ଚେୟାର ପଛରେ ଛିଡ଼ା ହୋଇଛି ।

ରମେନ ପ୍ରଶ୍ନ କରିବା ପୂର୍ବରୁ ଶର୍ମିଳା କହିଲା, "ସେଦିନ କ୍ଲାସ୍ ତରଫରୁ ଚାର୍ଟାର ଦେଇଥିଲି । ଚିରି ଦେଇଥିଲେ ।"

ରମେନ ଜବାବରେ କହିଲେ, ନ ଚିରି ଦେଇଥିଲେ ଅଶିଷ୍ଟ ଆଚରଣକୁ ପ୍ରଶ୍ରୟ ଦିଆ ଯାଇଥାଆନ୍ତା ।

ଶର୍ମିଳା କହିଲା, "କିନ୍ତୁ ବ୍ୟକ୍ତି ହିସାବରେ ମୋର ନିଜସ୍ୱ ଗୋଟିଏ ଚାର୍ଟାର ଅଛି ।"

ରମେନ କହିଲେ, "ଦିଅ, ଦେଖିବି କି ଚାର୍ଟାର ।" କିନ୍ତୁ ରମେନ୍ ଭିତରେ ଭିତରେ ଜଳି ଜାମୁଡ଼ିଲେ । ବୁଝିଲେ, ମନସ୍ତତ୍ତ୍ୱ ଦିଗରୁ ଗୋଟାଏ ମାରାତ୍ମକ ରକମର ଭୁଲ କରି ପକାଇଛନ୍ତି ।

ଶର୍ମିଳା ମୁହଁ ଗୋଟାଏ ସ୍ୱପ୍ନ ଜ୍ୟୋତ୍ସ୍ନାସରେ ଉଜ୍ଜ୍ୱଳ ହୋଇ ଉଠିଲା । କଣ୍ଠସ୍ୱର ନୁଆଇଁ କହିଲା, "ଦେଖିବେ ?"

ରମେନ ଦ୍ୱିରୁକ୍ତି କଥା କହିବା ଆଗରୁ ସେ ଦ୍ରୁତ ଲଘୁପଦରେ ବାହାରିଗଲା ।

ପରଦିନ କ୍ଲାସରେ ପଢ଼ାଉ ପଢ଼ାଉ ରମେନଙ୍କର ମନେ ହେଲା ସେ କଡ଼ା ନଜରବନ୍ଦୀ ହୋଇ ପଡ଼ିଛନ୍ତି । ଆଡ଼ଆଖିରେ ଚାହିଁ ବୁଝି ପାରିଲେ, ପଛ ବେଞ୍ଚରୁ ଶର୍ମିଳାର ଦୁଇଟି ଆଖି ତାଙ୍କ ଉପରେ ନ୍ୟସ୍ତ । ଗଭୀର ତନ୍ମୟ ଦୃଷ୍ଟି । ସେପରି ନିଷ୍ପଲକ । ରମେନଙ୍କ ମନ ଅସ୍ୱସ୍ତିରେ ଭରିଗଲା । ପ୍ରଚଣ୍ଡ ଇଚ୍ଛାଶକ୍ତି ପ୍ରୟୋଗ କରି ସେ ଶର୍ମିଳାର ଦୃଷ୍ଟିବାଣ ନିଷ୍ଫଳ କରିବାକୁ ଚେଷ୍ଟା କଲେ । କିନ୍ତୁ ଉଦ୍ୟାସ୍ତ ପରି ଶର୍ମିଳାର ଦୁଇ ଆଖିର ଦୃଷ୍ଟି ତାଙ୍କୁ ବିଦ୍ଧ କରି ଚାଲିଲା । ଆଶ୍ଚର୍ଯ୍ୟ ! ଆଜି କୌଣସି ଛାତ୍ରୀ ପକ୍ଷରେ ଏପରି ନିର୍ନିମେଷ ଭାବରେ ମୁହୂର୍ତ୍ତ ପରେ ମୁହୂର୍ତ୍ତ ଅଧ୍ୟାପକଙ୍କ ଆଡ଼କୁ ଅନାଇ ରହିବା ନିଶ୍ଚୟ ଅପରାଧ ବୋଲି ଗଣ୍ୟ ହୁଅନ୍ତା । ଅନ୍ତତ କ୍ଲାସର କୌତୁକର ବସ୍ତୁ ହୁଅନ୍ତା । କିନ୍ତୁ ଶର୍ମିଳା ବେକସୁର ଖଲାସ ପାଇଗଲା । ଶର୍ମିଳାର ଏଇ ବିସଦୃଶ ଆଚରଣ ଅନାୟାସରେ ସମସ୍ତଙ୍କର ଦୃଷ୍ଟି ଏଡ଼ାଇଗଲା । ରମେନ ବିସ୍ମିତ ହେଲେ । ମନେ ମନେ ପରାଭବ ସ୍ୱୀକାର କରିବାକୁ ବାଧ୍ୟ ହେଲେ । ତାଙ୍କ ଦିଗରୁ କୌଣସି ଛାତ୍ରୀ ପ୍ରତି ଅନୁରୂପ ଆଚରଣ ଏମିତି ପୂର୍ବପୂର ଗୁଡ଼ ପାଇ ନ ଥାନ୍ତା ।

କୌଣସି ପ୍ରକାରେ ପଢ଼ାଇବା ଶେଷ କରି ରମେନ କ୍ଲାସରୁମ ବାହାରକୁ ଆସିଲେ । କମନରୁମ୍ ଆଡ଼କୁ ଆସୁ ଆସୁ ଟେର ପାଇଲେ କିଏ ତାଙ୍କର ପିଛା ନେଇଛି । ବୁଝି ପାରିଲେ କିଏ ।

ପାଖକୁ ଆସି ମୃଦୁକଣ୍ଠରେ ଶର୍ମିଳା କହିଲା, "ସାର୍, ଗୋଟାଏ କଥା ଅଛି ।"

ରମେନ ନିର୍ଲିପ୍ତ କଣ୍ଠରେ କହିଲେ, ଅନ୍ତତ କହିବାକୁ ଚେଷ୍ଟା

"କ୍ଲାସରେ ତ କହି ପାରିଥାନ୍ତ ?"

ଶର୍ମିଳା କହିଲା, "କ୍ଲାସରେ କହିବାଭଳି ନୁହେଁ ।"

ରମେନ ଏଥର ବିସ୍ମୟରେ ଶର୍ମିଳା ଆଡ଼କୁ ଅନାଇଲେ ।

ଶର୍ମିଳା କଣ୍ଠସ୍ୱରକୁ ଆଉ ଟିକିଏ ନମ୍ର କରି କହିଲା, "ମୁଁ ଆପଣଙ୍କ ଆଡ଼କୁ ଚାହିଁଥିଲି, ଦେଖିଥିଲେ ?"

ରମେନ ହତବୁଦ୍ଧି ହେଲେ । ଏଇ ଅସଙ୍ଗତ, ଅସ୍ୱାଭାବିକ ପ୍ରଶ୍ନର କଣ ଜବାବ ଦେବେ ?

ଶର୍ମିଳା କହିଲା, ଆପଣ ଦେଖି ମଧ୍ୟ ନ ଦେଖିଲା ପରି ଭାବ ଦେଖାଉଥିଲେ ।

ରମେନଙ୍କୁ ନିରୁତ୍ତର ଦେଖି ଶର୍ମିଳା କହିଲା, "ମୁଁ ଆପଣଙ୍କୁ ସାରା ଘଣ୍ଟାଟା ଦେଖିପାରେ । ଆପଣ କଣ କେଇଟା ସେକେଣ୍ଡ୍ ମୋତେ ଚାହିଁ ପାରନ୍ତି ନାହିଁ ?"

ରମେନ୍ କହିଲେ, "ପାରିବା ନ ପାରିବା କଥା ନୁହେଁ । ଏ ହେଉଛି ଉଚିତ ଅନୁଚିତର କଥା ।

ଶର୍ମିଳା କହିଲା, "ଏହା ଭଲ ଲାଗିବା ମନ୍ଦ ଲାଗିବାର କଥା ।"

ରମେନ ଧୀର କଣ୍ଠରେ କହିଲେ, "ମୁଁ ଅଧ୍ୟାପକ, ତୁମେ ଛାତ୍ରୀ । ଏଠି ଉଚିତ ଅନୁଚିତର ପ୍ରଶ୍ନ ଆଉ ସବୁ ପ୍ରଶ୍ନକୁ ଟପିଯାଏ ।"

ଶର୍ମିଳା କହିଲା, "ଭଲମନ୍ଦ ଲାଗିବା ଭିତରେ ଅନୁଚିତ କଣ ଦେଖିଲେ ?"

ରମେନ କହିଲେ, "ତୁମେ ଯେ ଭଲଲାଗିବା ମନ୍ଦ ଲାଗିବାର କଥା କହୁଛ, ଯେଉଁ ମନୋଭାବ ନେଇ ଜଣେ ଆଉ ଜଣଙ୍କୁ ସ୍ଥାନକାଳପାତ୍ର ଭୁଲି ଆଁ କରି ଚାହିଁରହେ ତାହା କ୍ଲାସରୁମ୍‌ରେ ଅଧ୍ୟାପକ ଓ ଛାତ୍ରୀ ପକ୍ଷରେ ଅଶୋଭନ ।"

ଶର୍ମିଳା କହିଲା, "କିନ୍ତୁ ଭଲ ଲାଗିବା ସର୍ବଦା ଭଲ । କ୍ଲାସରୁମ୍ ବୋଲି ତାର ଜୋର କମିଯାଏ ନାହିଁ । ଆପଣଙ୍କୁ ମୋତେ ଯେତେଟା ଭଲ ଲାଗେ, ତାର ଜୋର ଏତେ ବେଶୀ ଯେ ମୋତେ ଆପଣଙ୍କୁ ଆଁ କରି ଚାହିଁ ରହିବାକୁ ହୁଏ । ସ୍ଥାନକୁ ନେଇ କୌଣସି କଥା ଉଠି ନ ପାରେ । ଉଠିଲେ ମୁଁ ଅଗ୍ରାହ୍ୟ କରିପାରେ ।"

ରମେନ କହିଲେ, "ମୁଁ ପାରେ ନାହିଁ ।" ହଠାତ୍ ରମେନ ଯେପରି ନିଦରୁ ଉଠିଲେ । କଥାର ସ୍ରୋତର ଆକର୍ଷଣରେ ଯେଉଁ ଅତଳ ଜଳରେ ଆସି ପଡ଼ିଛନ୍ତି ବୁଝିପାରି ନାହାନ୍ତି । ଏକଥା ଆଉ ବେଶୀଦୂର

ଆଗେଇବାକୁ ଦେବା ଉଚିତ ନୁହେଁ । ତା ଛଡ଼ା ଖେଳଖେଳି ଅଥଚ ଭଦ୍ରତା ବଜାୟ ରଖି ଝିଅଟାର ମନ ବଦଳାଇବା ଉଚିତ ।

ରମେନ ଗମ୍ଭୀର ଅଥଚ ସହାନୁଭୂତିଶୀଳ କଣ୍ଠରେ କହିଲେ, "ଶର୍ମିଳା ମୁଁ ଗୋଟାଏ ସ୍ପଷ୍ଟ ଜବାବ ଚାହେଁ । ତୁମେ ଯେ ଏତେ କଥା କହ, ତୁମେ ମୋ ସମ୍ବନ୍ଧରେ କଣ ଭାବ ?"

ଶର୍ମିଳା ହସି କହିଲା, "ଥରେ ଅନାଇଁ ଭଲ କରି ଦେଖିଲେ ଆପଣଙ୍କର ଆପତ୍ତି । ମୋର ଭାବିବା ନ ଭାବିବାରେ ଆପଣଙ୍କର କଣ ଆସେ ଯାଏ ?"

ରମେନଙ୍କୁ କୌଣସି କଥା କହିବାର ସୁଯୋଗ ନ ଦେଇ ଶର୍ମିଳା ପ୍ରସ୍ଥାନ କରେ । ରମେନ ପୁଣି ଜିଭ କାମୁଡ଼ିଲେ । ପ୍ରଶ୍ନଟା କରି ମନସ୍ତତ୍ତ୍ୱ ଦିଗରୁ ସେ ଦ୍ୱିତୀୟବାର ମସ୍ତବଡ଼ ଗୋଟାଏ ଭୁଲ କରିଛନ୍ତି ।

ରମେନ ଚିନ୍ତିତ ହୋଇ ପଡ଼ିଲେ । ତାଙ୍କର ବୟସ ପଚିଶ । ଶର୍ମିଳାର ଊଣେଇଶ । ଏଇ ଅବସ୍ଥାରେ ମଣିଷର ହୃଦୟ ଓ ମନର ସ୍ୱାଭାବିକ ନିୟମରେ କାହା ପକ୍ଷରେ ଏକତରଫା ଜଡ଼ିତ ହୋଇ ପଡ଼ିବା ଉଚିତ ନୁହେଁ । ରମେନ ବିବାହିତ ଓ ପ୍ରଥମ ଦାମ୍ପତ୍ୟପ୍ରେମର ଅଳ୍ପମଧୁର ରସରେ ପରିପ୍ଲୁତ । ରମେନ ନିଜକୁ ବୁଝାଇବାକୁ ଚେଷ୍ଟା କଲେ ଯେ ତାଙ୍କ ପକ୍ଷରେ ଶର୍ମିଳା ପ୍ରତି କୌଣସି ପ୍ରକାର ଆକର୍ଷଣ ବୋଧ କରିବା ସମ୍ଭବ ନୁହେଁ । ସେଥିପାଇଁ ଇଚ୍ଛା ଓ ଆସକ୍ତିର ପ୍ରୟୋଜନ । ରମେନଙ୍କ କ୍ଷେତ୍ରରେ ସେଇ ଇଚ୍ଛା ଓ ଆସକ୍ତିର ଅଭାବ । କିନ୍ତୁ ଦାମ୍ପତ୍ୟପ୍ରେମରେ ଅବିଚଳ ଥାଇ ଶର୍ମିଳାପରି ତରୁଣୀ ପ୍ରତି କେବଳ ଭଲଲାଗିବାର ସୂତ୍ରରେ ଆକୃଷ୍ଟ ହେବା ହୁଏତ ସମ୍ଭବ ହୁଅନ୍ତା, ଯଦି ଶର୍ମିଳାର ମନର ସ୍ଥିରତା ଓ ସୁସ୍ଥତା ସମ୍ବନ୍ଧରେ ରମେନ ଆଶ୍ୱସ୍ତ ହୋଇ ପାରନ୍ତେ । ରମେନ ଯେତିକି ଚିନ୍ତା କରନ୍ତୁ, ସେତିକି ମନେହୁଏ ଆଜି ଈଶ୍ୱରଙ୍କ ପରି ଶର୍ମିଳା ବିଶ୍ଳେଷଣର ଅଜ୍ଞାତ ଏକ ରହସ୍ୟ । ଶର୍ମିଳା ଭିତରେ ସୃଷ୍ଟିର ସବୁ ଉପାଦାନ ଖୋଜିଲେ ମିଳେ । ମିଳେ ନାଇ କେବଳ ସେଇ ଶୁଭକେନ୍ଦ୍ରିକ ନିୟମ—ଯେଉଁ ନିୟମରେ ସୃଷ୍ଟି ତିଳେତିଳେ ଶାନ୍ତ ତପସ୍ୟାରେ ନିଜକୁ ସଂପୂର୍ଣ୍ଣ କରେ । ଶର୍ମିଳାର ମନ ଦୁର୍ଜ୍ଜୟକୌତୁକରେ ଭରା । କକ୍ଷଚ୍ୟୁତ ଗ୍ରହ ପରି ତାର ଗତି ନିୟମର ବାହାରେ । ତାର ଆଘାତରେ ଆଜ୍ଞ

କୌଣସି ଗ୍ରହ ଯେ ତାର ସମସ୍ତ ସୃଷ୍ଟି ଓ ସମ୍ଭାବନା ନେଇ ଚୂର୍ଣ୍ଣବିଚୂର୍ଣ୍ଣ ହୋଇପାରେ ସେ ସମ୍ବନ୍ଧରେ ସେ ନିରଙ୍କୁଶ ଉଦାସୀନ ।

ରମେନ ଥରେ ଥରେ ଭାବନ୍ତି ସ୍ତ୍ରୀକୁ ଥରେ ତାଙ୍କର ବର୍ତ୍ତମାନ ସମସ୍ୟାର କଥା ଖୋଲି କହିବେ । କିନ୍ତୁ କହନ୍ତି ନାହିଁ, ହୁଏତ ପାରନ୍ତି ନାହିଁ ; କେଉଁଠାରୁ ବାଧା ପାଆନ୍ତି । ଏ ସମସ୍ୟାରେ ଯେ ତାଙ୍କର କୌଣସି ହାତ ନାହିଁ ଏକଥା ଯଦି ସ୍ତ୍ରୀ ବିଶ୍ୱାସ ନ କରନ୍ତି । ବିଶ୍ୱାସ କରି ବି ଯଦି ଭବିଷ୍ୟତ ସମ୍ବନ୍ଧରେ କୌଣସି ଅନ୍ୟାଯ୍ୟ ସନ୍ଦେହ ପୋଷଣ କରନ୍ତି ସେ କଥା ଭାବି ରମେନ ସୋଜା ବାଟରେ ଯିବାକୁ ଇତସ୍ତତଃ କରନ୍ତି । ତା ଛଡ଼ା ରମେନ ଗୋଟାଏ ଏପାରି –ସେପାରିର ଯେପରି ପକ୍ଷପାତୀ ନୁହନ୍ତି । ଶର୍ମିଳା ଘଟିତ ସମସ୍ୟାର ପୂର୍ବାପର ସମାଧାନ ହୁଏତ ସମ୍ଭବପର ନୁହେଁ । ଆପୋଷରେ ରଖି ପାରିଲେ ହିଁ ତାର ଆଘାତ ଏଡ଼ାଇ ଚାଲିବା ସମ୍ଭବ ହୋଇପାରେ । ସମସ୍ୟାର ଗୋଟାଏ ଜଟିଳ ଅଙ୍କ ଫଳ ହେଉଛି ଆଧୁନିକ ମଣିଷ । ସମସ୍ୟାର ସମାଧାନ ହେଉଛି ମଣିଷର କାନ୍ତି, ସମସ୍ୟାର ବାଙ୍କଫଳ ହେଉଛି ସମଗ୍ର ମଣିଷ । କିଏ ଜଣେ ହୁଏତ ଆପୋଷରେ ରଖିପାରିଲେ ଏକ ବିଚିତ୍ର ସୂକ୍ଷ୍ମ ପ୍ରକ୍ରିୟାରେ ଶର୍ମିଳା ଘଟିତ ସମସ୍ୟା ତାଙ୍କ ଜୀବନରେ ଏକ ଅଭୂତପୂର୍ବ ଋଦ୍ଧି ଓ ଗମ୍ଭୀରତା ଆଣିଦେବ । ତାଙ୍କୁ ବଞ୍ଚାଇ, ଶର୍ମିଳାକୁ ବଞ୍ଚାଇ ସମସ୍ତଙ୍କୁ ବଞ୍ଚାଇ ଏଇ ସମସ୍ୟା ହାଲ୍‌କା ଜ୍ୱର ପରି ସ୍ୱଳ୍ପ କମ୍ପର ଆରାମ ଅପୂର୍ବ ଆଣି ଦେଉ । ସେ ତାଙ୍କର ସଂଯମ, ଦୃଢ଼ତା ଓ ଏକନିଷ୍ଠତାର ଶେଷ ଖୋଜି ହୋଇ ଏ କର୍ମ ଉପଭୋଗ କରି ପରମ ତୃପ୍ତି ଲାଭ କରିବେ । ଏଇପରି ଏକ ଆକାଂକ୍ଷା ବି ତାଙ୍କ ବିବେକର ଘରେ ଉଙ୍କି ମାରୁଥାଏ । ଏହା ହେଉଛି ସୂକ୍ଷ୍ମ ଗୋଇନ୍ଦା ମନର ରିପୋର୍ଟ । ରମେନ ସଜ୍ଞାନରେ ଯେପରି ଏଇ ରିପୋର୍ଟର ବିନ୍ଦୁବିସର୍ଗ ମଧ୍ୟ ଜାଣନ୍ତି ନାହିଁ, ଏଇ ବିଶ୍ୱାସରେ ଅବିଚଳିତ ଥାଆନ୍ତି ।

ବ୍ୟବହାରିକ ଜଗତର କାନୁନ ଓ ସମାଜର ଚଉକାଠ ରମେନଙ୍କୁ ରକ୍ଷାକରି ଚାଲନ୍ତି । ଯଥା ସମୟରେ ହାତରେ ଲେଖା ଲେଖା ଯୁକ୍ତିର ବାଣ ମଧ୍ୟ ଯୋଗାଇ ଦିଅନ୍ତି । ସଂଯମର ସୁଉଚ୍ଚ ଶିଖରରେ ବସି ରମେନ ଓ ଶର୍ମିଳା କ୍ଲାସରୁମ୍ ଉପରେ ନିଆ ଏକ ଦୃଷ୍ଟି କୋଣରୁ କୃପାକଟାକ୍ଷପାତ କରନ୍ତି । ବାରମ୍ବାର ସ୍ୱେଚ୍ଛାରେ ବିପଦର

ମୂର୍ତ୍ତିକୁ ଆଗେଇ ଯାଇ ଫେରି ଆସନ୍ତି । ଦିନେ ଦୁ'ଦିନ ତିନିଦିନ ପ୍ରାୟ ଗୋଟାଏ ଘଣ୍ଟା ଶର୍ମିଳା ଆଉକୁ ଷ୍ଟର୍ଣ୍ଣ ବର୍ଣ୍ଣସ୍ ପଢ଼ାଇଲେ, ଇର୍ପ୍ଟେଟ୍‌ସଙ୍କର ନୂତନ ଭାଷ୍ୟ ଦେଲେ, ରବୀନ୍ଦ୍ରନାଥଙ୍କୁ ତାଙ୍କ ସମାଧିରୁ ଉଠାଇଆଣି କାବ୍ୟମୂଲ୍ୟାୟନରେ ନୂତନ ଏକ ଜଗତରେ ପ୍ରତିଷ୍ଠା କଲେ । ଶର୍ମିଳାକୁ ଏପରି ଭାବରେ ଦୃଷ୍ଟି ବନ୍ଧ କରି ଏପରି ଘଣ୍ଟା ପରେ ଘଣ୍ଟା କିଛିମାତ୍ର ବିଚଳିତ ନ ହୋଇ ସ୍ୱାଭାବିକ ଭାବରେ ପଢ଼ାଇ ଯିବା କ୍ଲାସର ଇତିହାସରେ ଏକ ଅଭୂତପୂର୍ବ ଘଟଣା । କ୍ଲାସରେ ଚାପା ଉତ୍ତେଜନା ଓ କୌତୁହଳ ଯେପରି ଫାଟିପଡ଼େ; କିନ୍ତୁ ରମେନଙ୍କର ଗମ୍ଭୀର କଣ୍ଠ ଓ ତୀକ୍ଷ୍ଣ ଉଜ୍ଜ୍ୱଳ ଦୃଷ୍ଟି ଏକ ଅଦ୍ଭୁତ ଶକ୍ତିରେ କ୍ଲାସକୁ ନିୟମର ଗଣ୍ଡି ଭିତରେ ଚାପି ରଖେ ।

ତୃତୀୟ ଦିନ କ୍ଲାଶ ଶେଷ ହେବା ପରେ ଶର୍ମିଳା ଏକ ଫାଙ୍କରେ ରମେନଙ୍କ ସମ୍ମୁଖରେ ଆସି ଛିଡ଼ା ହେଲା । ଅଗତ୍ୟା ରମେନଙ୍କୁ ବି କମନରୁମ୍ ପଥରେ ଅଟକିବାକୁ ହେଲା ।

ଶର୍ମିଳା ମ୍ଳାନ ହସି କହିଲା, "ଭଲଲାଗିବା କଥା କହିଥିଲି ବୋଲି କଣ ଶିକ୍ଷକ ହିସାବରେ ଶାସ୍ତି ଦେଉଛନ୍ତି ?"

ରମେନ କହିଲେ, "ନା । ଯା ଅସ୍ୱାଭାବିକ ତା' ଯେ ବ୍ୟକ୍ତି ବିଶେଷ କ୍ଷେତ୍ରରେ ଅର୍ଥାତ୍ ମୋ କ୍ଷେତ୍ରରେ ସ୍ୱାଭାବିକ ହୋଇପାରେ ଏଇ ତିନିଦିନ ଏଇ ସହଜ ସତ୍ୟଟାରଇ ହାତକୁ ହାତ ପ୍ରମାଣ ଦେଲି ?"

ଶର୍ମିଳା କହିଲା, "ମୋର ଭଲ ଲାଗିବା ନ ଲାଗିବାରେ ଆପଣଙ୍କର କିଛି ଯାଏଆସେ ନାହିଁ, କିମ୍ବା ଆସିବା ନ ଆସିବା ଉଚିତ ନୁହେଁ, କେଉଁଟାର ପ୍ରମାଣ ଦେଲେ ?"

ରମେନ କହିଲେ, "ଦୁଇଟାରଇ ।"

ଶର୍ମିଳା କହିଲା, "ମୁଁ କୌଣସି ରକମର ବିଶେଷ କେହି ନୁହେଁ ?"

ରମେନ କହିଲେ, "ସେ କଥା ଠିକ ନୁହେଁ । ତୁମେ ଫାଷ୍ଟ ଗାର୍ଲ । ମୋଷ୍ଟ ଇମ୍ପୋର୍ଟାଣ୍ଟ ।"

ଶର୍ମିଳା କହିଲା, "କିନ୍ତୁ ବ୍ୟକ୍ତି ହିସାବରେ ।"

ରମେନ କହିଲେ, 'ସେ ପ୍ରଶ୍ନ ଉଠିବା ଉଚିତ ନୁହେଁ ।'

ଶର୍ମିଳା କହିଲା, "ଅଧ୍ୟାପକର କମ୍ଭା ସ୍ତ୍ରୀର ଭାବାର କଣ ବ୍ୟକ୍ତି ହେବାର ଅଧିକାର ନାହିଁ ?"

ରମେନ କହିଲେ, "ମୋ କ୍ଷେତ୍ରରେ ନାହିଁ ।" କିଛିକ୍ଷଣ ନୀରବ ରହି କହିଲେ, ଶର୍ମିଳା, ମୁଁ ବିବାହିତ । କାହା ଜୀବନ ଉପରେ ଜଗନ୍ନାଥଙ୍କ ରଥ ଚଳାଇ ନେଇ କେହି ସୁଖୀ ହୋଇ ପାରେ ନାହିଁ ।'

ଶର୍ମିଳା କହିଲା, 'ଜଗନ୍ନାଥଙ୍କ ରଥ କଥା ଛାଡ଼ନ୍ତୁ । ସୁଭଦ୍ରା ରଥ ତ ଅଛି ! ଏଇ ରଥ କଣ ଜୀବନ ନ ମଡ଼ାଇ ଚଲାଇ ନିଆଯାଇ ନ ପାରେ ? ତା' କଣ୍ଠରେ ଉତ୍ତେଜନାର ଆଭାସ ।

ରମେନ ତିକ୍ତ କଣ୍ଠରେ କହିଲେ, "ସୁଭଦ୍ରାଙ୍କ ରଥ ? ମଣିଷର ଜୀବନରେ ସ୍ବରଆଡ଼େ ତ ଜଗନ୍ନାଥଙ୍କ ରଥ ହିଁ ଦେଖିବାକୁ ପାଏ । ସୁଭଦ୍ରାଙ୍କ ରଥ କେଉଁଠି ?"

ଶର୍ମିଳା କହିଲା, 'ତାଙ୍କର ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ନାହିଁ ?"

ରମେନ କହିଲେ, 'ଯାହା ନାହିଁ ତା ବିଶ୍ୱାସ କରିବାର ପ୍ରଶ୍ନ ଉଠେ ନାହିଁ ।'

କିଛି ସମୟ ନୀରବ ରହିବା ପରେ ଶର୍ମିଳା ଭଙ୍ଗା ଗଳାରେ କହିଲା, 'ମୋତେ ମାର୍ଜନା କରିବେ । ଆପଣ ଅଧ୍ୟାପକ । ମୋର ଗୁରୁ । ତଥାପି ଆପଣଙ୍କୁ ଭଲ ଲାଗିଥିଲା । ମୁଁ ଆପଣଙ୍କୁ ଭଲ ଲାଗିଥିଲେ ଗୋଟାଏ ଲାଭ ହୋଇଥାନ୍ତା । ମଣିଷର ସବୁଠାରୁ ବଡ଼ ସାଧନା ମନଟାକୁ ଭରିବା । ଆପଣଙ୍କ ଭଲଲାଗିବା ନେଇ ମନଟାକୁ ଭରି ପାରିଥାନ୍ତି ।'

ରମେନ ମନେ ମନେ କଣ ଗୋଟାଏ ସାନ୍ତ୍ୱନାର କଥା ଖୋଜୁଥିଲେ । କିନ୍ତୁ ସେ କୌଣସି କଥା କହିବା ପୂର୍ବରୁ ହିଁ ଶର୍ମିଳା ମୁହଁ ଫେରାଇ ନେଲା । କେତୁଟା ମୁହୂର୍ତ୍ତ ଭିତରେ ସେ ନିଜକୁ ସମ୍ଭାଳି ନେଇ ଝିଅମାନଙ୍କ କମନ ରୁମ୍ ଆଡ଼କୁ ଚାଲିଗଲା ।

ଶର୍ମିଳା ନିଜକୁ ଯେପରି ସଜାଡ଼ି ନେଲା । କ୍ଲାସରେ ସେ ତାର ବ୍ୟକ୍ତିତ୍ୱର ସ୍ବରୂପରେ ଘଟାଟୋପ ଦେଇ ସମସ୍ତଙ୍କ ସଙ୍ଗରେ ମିଶିଗଲା । ପଡ଼ାଉ ପଢ଼ାଉ କେତେବେଳେ ଶର୍ମିଳା ଆଡ଼େ ଆଖି ପଡ଼ିଗଲେ ରମେନଙ୍କର ମନେ ହେଉଥିଲା ଅସ୍ତିତ୍ୱର ଗୂଢ଼ ଅର୍ଥରେ ଶର୍ମିଳା ଯେପରି ଅନୁପସ୍ଥିତ । ଏଇ ଅନୁପସ୍ଥିତି ଯେପରି ତାର ଉପସ୍ଥିତିଠାରୁ ବି ପ୍ରଖର ଓ ମୁଖର ! ଅଲକ୍ଷରେ ରମେନଙ୍କୁ ଆଘାତ କରି ଚାଲିଲା ।

ରମେନ ମୃତ ବୃକ୍ଷ ମାତ୍ର ଖାଆନ୍ତି । ତାଙ୍କର ଉପାୟ ନାହିଁ । ସମାଜର ଚକ୍ରକାଠ ଭାଙ୍ଗିବା କିଛି ଦୁଷ୍କର ବ୍ୟାପାର ନୁହେଁ । କିନ୍ତୁ ମଣିଷର ସୁଖଦୁଃଖର ହିସାବରେ, ଜୋର ଜବରଦସ୍ତି ନୂତନ ଦେଣା ପାଉଣାର ଅଙ୍କ ନିକାଶ କରିବା ଉଦ୍ଦେଶ୍ୟରେ କୌଣସି ପ୍ରକାରେ ଗରମିଲ୍ ଦେବାକୁ ଗଲେ ପରିଣାମଟା କଣ ହୁଏ, ସାହିତ୍ୟର ଅଧ୍ୟାପକ ରମେନଙ୍କୁ ଅନ୍ତତଃ ତା ଅଜଣା ନ ଥିଲା । ମଣିଷକୁ ତା'ର କାମଦାମରେ ପ୍ରତିଟିର ମୂଲ୍ୟ ଦେବାକୁ ହୁଏ । କିନ୍ତୁ ସବୁଠୁ ବଡ଼ ମୂଲ୍ୟ ସେ ଦିଏ ଯେତେବେଳେ ତାକୁ ହାତମୁଠାରେ ପାଇଥିବା ସୁଖ ଓ ଆନନ୍ଦ ବିସର୍ଜନ ଦେବାକୁ ହୁଏ । ଥରେ ଥରେ ରମେନଙ୍କର ମନେହୁଏ, ଅଦୃଷ୍ଟ ଯଦି ଦୁଇଟି ଭୁଲରୁ କୌଣସି ଗୋଟିକୁ ହେଲେ ସ୍ୱୀକାର କରିନିଏ ଏବଂ କୌଣସି ଲୌକିକ ବା ଅଲୌକିକ ଉପାୟରେ ଅସମ୍ଭବକୁ ସମ୍ଭବ କରି ପାରେ ତା'ହେଲେ ସେ ବଞ୍ଚି ଯା'ନ୍ତି । ଶର୍ମିଳା କେତେବେଳେ ନ ଥିଲା, ଅନ୍ତତଃ ତାଙ୍କ ସଙ୍ଗରେ ଶର୍ମିଳାର ପରିଚୟ କାଳ୍ପନିକ, ଅଦୃଷ୍ଟ ପକ୍ଷରେ ଜୋର କରି ତାଙ୍କ ମନଟାକୁ ଅତୀତରୁ ଛିଣ୍ଡାଇ ଆଣି ଏଇ ଭଳି ଏକ ପରିସ୍ଥିତି ସୃଷ୍ଟି କରିବା କଣ ସମ୍ଭବ ନୁହେଁ ? ଯଦି ଏକାନ୍ତ ତାହା ସମ୍ଭବ ନ ହୁଏ, ତେବେ ତାଙ୍କର ବିବାହ ? ଅତୀତର ଇତିହାସରୁ ତାଙ୍କର ବିବାହର ଦିନଟିକୁ କଣ କୌଣସି ପ୍ରକାରେ ଲିଭାଇ ଦିଆଯାଇ ନ ପାରେ ? ବିବାହର କଥା ମନେ ପଡ଼ିଲେଇ ଗ୍ରନ୍ଥି ଭିତରେ କେଉଁଠି ଯେମିତି ଗୋଟାଏ ଖଟକା ଅନୁଭବ କରନ୍ତି । ଭଲ ପାଇବା ଓ ବେଦନା ଯେ କିପରି ପାଖାପାଖି ହୁଏତ କୌଣସି ଏକ ବିଶେଷ ଅର୍ଥରେ ଅଭିନ୍ନ, ସ୍ତ୍ରୀ କଥା ମନେ ପଡ଼ିଲେ ରମେନଙ୍କର ବୁଝିବାକୁ ବାକି ରହେ ନାହିଁ; କିନ୍ତୁ ତଥାପି ଜୀବନ ବସି ରହେ ନାହିଁ । ସୃଷ୍ଟିର କାମ ମଣିଷର ସୁଖ-ଦୁଃଖର ହିସାବ ନ ରଖିକି ଆଗେଇଯାଏ । ରମେନଙ୍କ ମନ ଉପରେ ଅତୀତର ଖଡ଼ ମାଟି ପଡ଼ିରହେ । ଆଘାତଟା ଯେପରି ସହ୍ୟର ସୀମା ପର୍ଯ୍ୟନ୍ତ ଆସିଯାଏ ।

କାହାଣୀ ପ୍ରାୟ ଶେଷ ହୋଇ ଆସୁଚି, ନିଆଁ ଲିଭି ଶେଷ ହେବାକୁ ବାକି ନାହିଁ; ଏଇ ସମୟରେ ଗୋଟାଏ ଘଟଣା ନିଆଁଟାକୁ ତେଜ ତାଜା କରିଦେଲା । ଘଟଣା ଆଉ କିଛି ନୁହେଁ । ସାହିତ୍ୟରେ ମନସ୍ତତ୍ତ୍ୱ ଉପରେ ରମେନଙ୍କର ଖଣ୍ଡିଏ ପ୍ରମାଣ୍ୟ ବହି । ବିଶ୍ୱସାହିତ୍ୟରେ ମନସ୍ତତ୍ତ୍ୱ କାହା

ରଚନାରେ କଳ୍ପନା ଓ କାବ୍ୟ ଆଶ୍ରୟ କରି, ତାହା ରଚନାରେ ଶାସ୍ତ୍ର ଓ ଧ୍ୱଂସହର୍ମ୍ମ୍ୟଷ୍ଟ ନାନା ବିଶ୍ୱାସର ଭିତିରେ ଭରଦେଇ, କେଉଁଠି ଉଚିତ ଅନୁଚିତ ପ୍ରଶ୍ନର ଜବାବ ଦେଇ, କେଉଁଠିବା ଅଭିଜ୍ଞତାର ଭଣ୍ଡାରରୁ ପ୍ରମାଣ ଓ ଯୁକ୍ତି ଛଡ଼ା କରାଇ ଗୋଟିଏ ବିରାଟ ଜଟିଳ ଜଗତ ସୃଷ୍ଟି କରିଛି । ଏଇ ଦୁରୂହ ବିଷୟ ନେଇ ରମେନ ଅସମାନ୍ୟ ଦକ୍ଷତା ଓ ମୂଳସମ୍ବାନା ସଙ୍ଗେ ଆଲୋଚନା କରି କେତୋଟି ମୌଳିକ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ଏଇ ବହିଟି ନେଇ ଦେଶ-ବିଦେଶର ପଣ୍ଡିତ ସମାଜରେ ବେଶ୍ ହଇଚୋଳ ପଡ଼ିଗଲା ।

ସମାଲୋଚନା ଓ ପ୍ରଶଂସାର କ୍ଳାନ୍ତ ରମେନ ଦିନେ କମନରୁମ୍‌ରେ ତାଙ୍କରି ଗୋଟିଏ ସିଦ୍ଧାନ୍ତ ନେଇ ମନେ ମନେ ଖଣ୍ଡିନାଣ୍ଡି ବିଚାର କରୁଥିଲେ । ଏଇ ସମୟରେ ଶର୍ମିଳା ବହୁ ଦିନର ବ୍ୟବଧାନ ପରେ ଆସିଲା । ଅନେକଦିନ ତଳେ ଯେପରି ଆଜି ବି ସେପରି ତାଙ୍କ ଚେୟାର ପଛରେ ଆସି ଛିଡ଼ା ହେଲା । ରମେନ ଶର୍ମିଳାର ଉପସ୍ଥିତିର ପୂର୍ବାଭାଷରେ ଏକ ମୁହୂର୍ତ୍ତି ପାଇଁ ଉତ୍‌ଫୁଲ୍ଲ ହୋଇ ବି ବିଚଳିତ ହୋଇ ପଡ଼ିଲେ ।

ଶର୍ମିଳା ହିଁ ପ୍ରଥମେ କଥା କହିଲା—"ଆପଣଙ୍କ ବହି ବାହାରିଛି ଦେଖିଲି ।"

ରମେନ କେବଳ କହି ପାରିଲେ, 'ହିଁ ।'

ଶର୍ମିଳା କହିଲା, 'କେତେଟା ସମାଲୋଚନା ବି ପଢ଼ିଲି ।'

ରମେନ ଏଥର କହିଲେ, 'ବହିଟା ପଢ଼ିଛ ତ ?'

ଶର୍ମିଳା କହିଲା, 'କହି ଆଉ ପଢ଼ିନି ! ଯା ଦାମ···'

ରମେନ ହସି କହିଲେ—'ଦେଲେ ପଢ଼ିବ ?'

ଶର୍ମିଳା କହିଲା, 'ନିଶ୍ଚୟ ।'

ରମେନ ବ୍ୟାଗରୁ ଖଣ୍ଡେ କପି ବାହାର କରି ଶର୍ମିଳା ହାତକୁ ବଢ଼ାଇଦେଲେ । ଶର୍ମିଳା ବହିଟା ରମେନଙ୍କ ହାତକୁ ଫେରାଇ ଦେଇ କହିଲା, "ନା ଲେଖି ଦିଅନ୍ତୁ । କିଏ ଯେପରି ନ କହେ ଚୋରି କରିଛି ।'

ରମେନ ଫାଉଣ୍ଟେନ ପେନ୍ ବାହାର କରି ନାମ ଲେଖିବାକୁ ଯାଇ ଅଟକିଗଲେ । କଣ ଚିନ୍ତା କରି କହିଲେ, 'ନାଆଁଟା ତମେ ଲେଖି ନିଅ ।'

ଶର୍ମିଳା କହିଲା, "କିଣିଲେ ନଜେ ଲେଖିଥାନ୍ତି । କିନ୍ତୁ ଦେଉଛନ୍ତି ଯେତେବେଳେ, ତାର ଗୋଟିଏ ପ୍ରମାଣ ରହିଲେ ଆପତ୍ତି କଣ ?"

ରମେନଙ୍କ ହାତ ଉଠିଲା ନାହିଁ । ଫାଉଣ୍ଟେନ୍ ପେନ୍‌ଟା ନ ଘଞ୍ଚୌ ନ ତସ୍ଥୌ ଅବସ୍ଥାରେ ରହିଲା । ଶର୍ମିଳା ବିଷୟଟା ଅନୁମାନ କରି ସ୍ତବ୍ଧ ହୋଇଗଲା । ତାର ଆହତ ଦୃଷ୍ଟିରେ ରମେନଙ୍କ ମୂର୍ତ୍ତି ଅସ୍ପଷ୍ଟରୁ ଅସ୍ପଷ୍ଟତର ହୋଇ ଯେପରି ମିଳାଇଗଲା । ଜୀବନରେ ଏଇ ପ୍ରଥମ ଥର ତା ଆଖିର ପାଣି ବନ୍ଧ ଭାଙ୍ଗି ବହି ଆସିଲା ।

କେତେଟା ଦିନ ରମେନଙ୍କର ଗୋଟାଏ ଅଦ୍ଭୁତ ଅବସାଦ ଭିତରେ କଟିଲା । ଯନ୍ତ୍ରଚାଳିତ ପରି ସ୍ନାନାହାର, ନିଦ୍ରା, ଦାମ୍ପତ୍ୟ ଜୀବନ ଓ ଅଧ୍ୟାପନା ସବୁ କେଉଁଟା ଅଧ୍ୟାୟ ଭିତରେ ସେ ଅନ୍ୟ ସମସ୍ତଙ୍କ ପରି ସମୟର ଖାତାରେ ହାଜିରା ଦେଇ ଗ୍ଲଲେ । କିନ୍ତୁ ଜୀବନ ଯେ କେତେଟା ଭାରି ହୋଇ ଉଠିପାରେ, ଆଉ ଏକ-ଏକ ମୁହୂର୍ତ୍ତ ଯେ ପୁରା ଗୋଟାଏ ଦିନ-ରାତି ସମାନ ହୋଇପାରେ ଏଇ ପ୍ରଥମ ଯେପରି ସେ ଷୋଳଅଣା ବୁଝିଲେ । ଜୀବନବ୍ୟାପୀ ନିଦାରୁଣ ଅବସାଦ ହାତରେ ଆତ୍ମସମର୍ପଣ କରି ରମେନ ଯେତେବେଳେ ଟିକିଏ ହାଲକ୍ ହେବାକୁ ଚେଷ୍ଟା କରୁଥିଲେ, ତାରାନାଥ ସାନ୍ୟାଲଙ୍କର ଝିଅ୍ରେ ଚିଠି ଆସି ଉପସ୍ଥିତ ହେଲା । ଗ୍ଲହାର ନିମନ୍ତ୍ରଣରେ ଡାକିଛନ୍ତି । ରମେନଙ୍କର ମନେହେଲା, ଏ ଚିଠି ସାଙ୍ଗରେ ଶର୍ମିଳାର କୌଣସି ଯୋଗ ଥିବା ସମ୍ଭବ ନୁହେ । ଯଦି ଥାଆନ୍ତା, ଆଭାଷ ଇଙ୍ଗିତରେ ଶର୍ମିଳା—ଅଧ୍ୟାୟ ଏ ଚିଠିର ଭାଷାରେ ଓ ବକ୍ତବ୍ୟରେ ତାର ଛାପ ପକାଇଥାନ୍ତା ।

ତଥାପି କୌତୂହଳ ଓ ଭୟ । ସାଧାରଣ ଭୟ ନୁହେ; ଅଦ୍ଭୁତ ଅଥଚ ଏକାନ୍ତ ବାସ୍ତବ ଗୋଟାଏ ଭୟ ରମେନଙ୍କୁ କିଛିକ୍ଷଣ ପାଇଁ ବିମୂଢ଼ କରିଦିଏ । ଭୟ ଯେତେ ଅର୍ଥହୀନ ସେତେଇ ଭୟଙ୍କର । ଶର୍ମିଳା ଘଟିତ ବ୍ୟାପାରରେ ନିଦାରୁଣ ନାନା ଉପଲବ୍ଧି ଭିତରେ ଏଇ ଉପଲବ୍ଧି ହିଁ ପ୍ରକଟ ହୋଇଉଠେ ।

ତାରାନାଥ ସାନ୍ୟାଲ ସ୍ୱୟଂ ରମେନଙ୍କୁ ଅଭ୍ୟର୍ଥନା କରି ନେଇଗଲେ । ଡ୍ରଇଂରୁମରେ ରମେନଙ୍କୁ ଏକ ସୋଫାରେ ବସାଇ ପାଖରେ ଗୋଟାଏ ବର୍ମୀ ମୋଢ଼ା ଟାଣିନେଇ ବସିଲେ । କହିଲେ, 'ଭଦ୍ରଙ୍ଗ୍ ମ୍ୟାନ୍ !

ଇଉ ଡୋଣ୍ଟ୍ ନୋ ହାଓ ହ୍ୟାପି, ହାଓ ପ୍ରାଉଡ୍ ଆଇ ଆମ୍ । ତମ ବହି ସମ୍ବନ୍ଧରେ ଦେଶ-ବିଦେଶର ପଣ୍ଡିତମାନେ ଯାହା କହିଛନ୍ତି, ଶୁଣି ତମର ପ୍ରତିବେଶୀ ହିସାବରେ ଅହଙ୍କାରରେ ମୋର ବୁକୁ ଫୁଲି ଉଠୁଚି ।' ଆନନ୍ଦରେ ଉଚ୍ଛ୍ୱସିତ ବୃଦ୍ଧ ମୁଣ୍ଡ ହଲାଇ ହଲାଇ କହିଲେ, 'ତୁମେ ଏବେ ପାଖରେ । ଅଥଚ କେଉଁଠି ସହଜରେ ଅନାୟାସରେ ଢୋଲଟମକ ନ ବଜାଇ ବସ । ଖାଲି ଯେ ସ୍ୱୀକାର କରୁଚି ତା ନୁହେଁ, ସ୍ୱୀକାର କରି ଆନନ୍ଦ ହେଉଚି । ହାଓ ଓ୍ୱାଣ୍ଡରଫୁଲ ! ତେବେ ମୋର ଗୋଟାଏ ସାଙ୍ଘାତିକ ନାଲିଶ ଅଛି । ଶମି ! ଶମି ! ଦା ବୁକ୍ସ୍ ।'

ଶର୍ମିଳା ପର୍ଦ୍ଦା ଠେଲି ଡ୍ରଇଁରୁମକୁ ଆସିଲା । ତା ମୁହଁ ପ୍ରାୟ ଭାବଲେଶହୀନ । ତାରାନାଥଙ୍କ ଜଗତଠାରୁ ସେ ଯେପରି ବହୁ ଦୂରରେ ।

ତାରାନାଥ ଶର୍ମିଳାର ଶୂନ୍ୟ ହାତ ଆଡ଼କୁ ଅନାଇ କହିଲେ, "ଆହା ! ବହି ଦି'ଟା ଆଣ । ମୁଁ ଅଲରେଡ଼ି ନାଲିଶ କରି ବସିଚି । ନାଲିଶର କାରଣଟା ତ ହାତେ ହାତେ ପ୍ରମାଣ କରିବାକୁ ହେବ ।

ଶର୍ମିଳା ଭିତରକୁ ଚାଲିଯାଏ । କିଛିକ୍ଷଣ ପରେ ଦି' ଖଣ୍ଡ ବହି ଆଣି ତାରାନାଥଙ୍କ ହାତରେ ଦିଏ । ରମେନ ଦେଖି ବିସ୍ମିତ ହୁଅନ୍ତି, ତାଙ୍କର ସଦ୍ୟପ୍ରକାଶିତ ପୁସ୍ତକର ଦୁଇଟି କପି ।

ତାରାନାଥ କୃତ୍ରିମ କ୍ଷୋଭରେ ମୁଣ୍ଡ ହଲାଇ-ହଲାଇ କହିଲେ, "ମୋ ବେଳକୁ ଖଣ୍ଡେ ନୁଖୁରା କପି । ଏପରିକି ନାମଟି ପର୍ଯ୍ୟନ୍ତ ଲେଖିବାକୁ ଫୁରୁସତ ହୋଇନ; ଆଉ ଗୃହିଣୀଟି ବେଳକୁ ?"

ରମେନ ସଙ୍ଗରେ ଶର୍ମିଳାର ଦୃଷ୍ଟି ବିନିମୟ ହେଲା । ସେ ଯେପରି ପଥରରେ ଖୋଳା ଗୋଟିଏ ମୂର୍ତ୍ତି । କିନ୍ତୁ ତାର ଆଖି ଦୁଇଟା ଯେପରି ସାରାଟା ଜୀବନର ବ୍ୟଥା ଓ ଆକାଙ୍କ୍ଷା ନେଇ ନିଃଶବ୍ଦ ହାହାକାରରେ କଣ ଗୋଟାଏ କଥା କହିବାକୁ ଚେଷ୍ଟା କରୁଚି ।

ତାରାନାଥ ଆଉ ଖଣ୍ଡେ କପିର ମଲାଟ ଓଲଟାଇ ରମେନଙ୍କ ସାମ୍ନାରେ ପ୍ରଥମ ପୃଷ୍ଠାଟି ଖୋଲି ଧରିଲେ । ରମେନର ହସ୍ତାକ୍ଷର ଅନୁକରଣ କରି ଲେଖା—'ଟୁ ଡିଅର ଶମି ।'

ତାରାନାଥ କହିଲେ, "ମଝିରେ ମନଟା ମୋର ଟିକିଏ ଖରାପ ହୋଇ ଯାଇଥିଲା । ଶୁଣିଥିଲି ଶମି ତମକୁ ବିଶେଷ ଅଫେଣ୍ଡ୍ କରିଛି ।

ତୁମେ ଭୀଷଣ ଚଟି ଯାଇଛ । ବିଶ୍ୱାସ ହେଉନି । ଏଇନା ? ଏଇ ଯେ ଝଲଝଲ ଲେଖା—ଟୁ ଓଆର ଶମି—ହୋୟାଟ ଡଜ୍ ଇଟ୍ ପ୍ରୁଭ୍ ?"

ଥରେ ରମେନଙ୍କୁ ଏବଂ ଥରେ ଶର୍ମିଳାକୁ ଦୁ'ଜଣଙ୍କୁ ଆଡ଼ ଆଖିରେ ଦେଖି ନେଇ ତାରାନାଥଙ୍କ ବହିଟାକୁ ଥାପଡ଼ାଇ କହିଲେ—"ଏ କଥା ହିଁ ପ୍ରମାଣ କରୁଛି ଯେ, ଶମି ଇଜ୍ କ୍ଲିୟରଲି ଇଓର ଫେଭରିଟ୍ ନ ହୋଇ ପାରେ ନା ।" ପ୍ରଥମ ଦିନ ମୁଁ ତମକୁ କହିଥିଲି ନା "ଶମି ଇଜ୍ ଦି ମୋଷ୍ଟ ଇଂପୋର୍ଟାଣ୍ଟ୍ ଗାର୍ଲ ଇନ୍ ଦି ହୋଲ୍ କ୍ୟାମ୍ପସ୍ ।"

ତାରାନାଥ ଅନର୍ଗଳ କହିଗଲେ । ଗୋଟାଏ ଜଳପ୍ରପାତ ଯେପରି ଦୀର୍ଘକାଳପରେ ମୁକ୍ତି ପାଇଛି । ତାଙ୍କ ଦୃଷ୍ଟି ଆଢୁଆଳରେ ଯେ ଦୁଇଟି ପ୍ରାଣୀଙ୍କ ଭିତରେ ଏକ ମର୍ମାନ୍ତିକ ସଳାପ ଚାଲିଛି, ସେ ସମ୍ବନ୍ଧରେ ତାଙ୍କର ବିନ୍ଦୁ ମାତ୍ର ହୋସ୍ ନାହିଁ ।

ରମେନ ଓ ଶର୍ମିଳା ପରସ୍ପରକୁ ଦୂରତମ ନିକଟରୁ ଦେଖୁଛନ୍ତି । ଏତେ ପାଖରେ ! ହାତ ବଢ଼ାଇଲେହିଁ ଛୁଆଁ ଯାଏ । କିନ୍ତୁ ମିଳେ ନାହିଁ । ଏତେ ଦୂରରେ !

ତାରାନାଥଙ୍କ ଅଜ୍ଞାତସାରରେ ଘରର ହାଓୟା ତପ୍ତ ହୋଇ ଉଠୁଥିଲା । କିଛିକ୍ଷଣ ଧରି ଆକାଶରେ ମେଘର ପଟୁଆର ଚାଲିଥିଲା । ହଠାତ୍ ବୃଷ୍ଟି ଆସିଲା । ଅଜସ୍ର ଧାରରେ ତୁମୁଳ ବୃଷ୍ଟି । ଏଇ ବର୍ଷଣର ପ୍ରୟୋଜନ ଥିଲା ।

ତାରାନାଥଙ୍କର ହଠାତ୍ ହୋସ୍ ହେଲା । ରମେନଙ୍କ ଆଡ଼କୁ ଅନାଇଁ କହିଲେ, "ଭାବିଥିଲି କୌଣସି ବାହାନାରେ ତୁମକୁ ଧରି ରଖିବାକୁ । ଏଇଲାଗେ ଯେତେବେଳଯାଏ ବର୍ଷା ବନ୍ଦ ନ ହୋଇଛି, ନ ବସି ଉପାୟ କଣ ?"

ପ୍ରାୟ ଦେଢ଼ଘଣ୍ଟା ଧରି ଅଶ୍ରାନ୍ତ ବର୍ଷଣ ପରେ ରମେନ ବିଦାୟ ନେଇ ଉଠି ଠିଆ ହେଲେ । ଏଇ ଦୀର୍ଘ·ଦେଢ଼ ଘଣ୍ଟାରେ ରମେନ ଓ ଶର୍ମିଳା ଜୀବନର କେଉଁ ସ୍ତରରେ କେଉଁ ସତ୍ୟ ଆବିଷ୍କାର କଲେ, କେଉଁ ଯୁକ୍ତିରେ କେଉଁ ସତ୍ୟ ସଙ୍ଗେ ରଫା କଲେ ଏ ବିଷୟରେ ସଠିକ କିଛି କହିବା ସମ୍ଭବ ନୁହେଁ । କିନ୍ତୁ ଜୀବନ ଯେତେ ନିର୍ମମ ହେଉ, କେଉଁଠି ନା କେଉଁଠି କବିତା ପରି କିଛି ଗୋଟାଏ ମେଳ ରହିଯାଏ । ତାରାନାଥଙ୍କ ଅନୁରୋଧ ଉପେକ୍ଷା କରି ସେ ରାତିରେ ରମେନଙ୍କର ଗୋଡ଼ରେ ଚାଲି

ଘରକୁ ଫେରିବା ବେଳ ନାହିଁ । ସାମାନ୍ୟ ପଥ । ସୁଭଦ୍ରା ତାଙ୍କ ଟୁ-ସୀଟରରେ ରମେନଙ୍କୁ ପହଞ୍ଚାଇ ଦେବାକୁ ଗଲେ ।

ବହୁ ପ୍ରାଚୀନ ପୁରୁଣା ମଡେ଼ଲର ଗାଡ଼ିଟିରେ ଉଠ୍ ଉଠ୍ ରମେନ ନିଜ ମନର ଜମାଟ ଭାବନାକୁ ହାଲ୍କା କରିବା ପାଇଁକ ହିଁ ହୁଏତ କହିଥିଲେ, "ମନେ ହେଉଛି ଜୀବନର ପ୍ରାଚୀନତମ ସମସ୍ୟା ନେଇ ଏ ଯୁଗର ପ୍ରାଚୀନତମ ଗାଡ଼ିରେ ଆଜି ଘରକୁ ଫେରୁଛି ।"

ଶର୍ମିଳା ଜବାବରେ କହିଥିଲା, "ଜାଣେନା । ତେବେ ଏଇ ହେଉଛି ମୋର ସୁଭଦ୍ରାର ରଥ ।"

~~~

[ଶ୍ରୀ ସନ୍ତାକାନ୍ତ ଗୁହ ବଙ୍ଗଳାର କୃତୀ ଗାଳ୍ପିକମାନଙ୍କ ମଧ୍ୟରେ ଅନ୍ୟତମ । ସେ ତାଙ୍କର ଶିଶୁରଚନା ଏବଂ ଗଳ୍ପ ଉପନ୍ୟାସ କବିତା ପାଇଁ ମୌଳିକ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ଶ୍ରୀଗୁହଙ୍କର କେତେକ କବିତା ଓ ଗଳ୍ପ ଭାରତବର୍ଷ ଓ ବିଦେଶରେ ପ୍ରକାଶିତ ହୋଇ ରସିକ ମହଲରେ ଉଚ୍ଚ ପ୍ରଶଂସା ଲାଭ କରିଛି ।]
~~~

## ।। ଶ୍ରେଷ୍ଠ ଗଳ୍ପ ଆଜି ଓ କାଲିର ।।

ସଂକଳକ—ଶ୍ରୀ ମଦନମୋହନ ପଣ୍ଡା ଓ ଶ୍ରୀ ସଦାଶିବ ଦାଶ

ପ୍ରକାଶକ—ଶ୍ରୀ ବନମାଳୀ ବ୍ରହ୍ମଚାରୀ

ସମ୍ପାଦକ, ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ, ଝାଞ୍ଜିରି ମଙ୍ଗଳା, କଟକ

ମୂଲ୍ୟ—ବୋର୍ଡ଼ ବନ୍ଧେଇ ଟ ୬-୦୦, ସାଦା ଟ ୫-୦୦

ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ ବିଭିନ୍ନ ଗଳ୍ପ ଲେଖକମାନଙ୍କର ଗୋଟିଏ ଲେଖା ଗଳ୍ପକୁ ନେଇ ଶ୍ରୀ ମଦନମୋହନ ପଣ୍ଡା ଏବଂ ଶ୍ରୀ ସଦାଶିବ ଦାଶ "ଶ୍ରେଷ୍ଠ ଗଳ୍ପ ଆଜି ଓ କାଲିର" ଗ୍ରନ୍ଥଟିକୁ ସଂକଳନ କରିଛନ୍ତି । ଏଥିରେ ୩୭ ଜଣ ଗଳ୍ପକାରଙ୍କର ୩୭ଟି ଗଳ୍ପ ରହିଛି । ଏଥିରେ ପ୍ରୟୋଗବାଦୀ, ପ୍ରତୀକଧର୍ମୀ, ବସ୍ତୁବାଦୀ, ବାସ୍ତବଧର୍ମୀ ଏବଂ ପ୍ରଗତିଧର୍ମୀ ବିଭିନ୍ନ ଗଳ୍ପମାନ ସ୍ଥାନ ପାଇଛି । ଜଟିଳ ଜଞ୍ଜାଳ ଜ୍ୱାଳାମୟ ଜୀବନର ସକରୁଣ ଅଭିବ୍ୟକ୍ତି ବିଭିନ୍ନ ଗଳ୍ପରୁ ଦେଖିବାକୁ ମିଳିଥାଏ । କେତେକ ଗଳ୍ପରେ ମାର୍କସୀୟ ଦର୍ଶନ ଯେପରି ନିଖୁଣ ଭାବରେ ପ୍ରତିଫଳିତ ହୋଇଛି ସେହିପରି ଅନ୍ୟ କେତେକ ଗଳ୍ପରେ ଫ୍ରଏଡ଼ୀୟ ଦର୍ଶନ ସ୍ପଷ୍ଟ ମୁଦ୍ରାଙ୍କିତ ହୋଇଛି । ଜୀବନ ଏବଂ ଜଗତପ୍ରତି ଗଳ୍ପକାରମାନଙ୍କର ନିବିଡ଼ ଅନୁଭୂତି ଏହି ଗଳ୍ପଗୁଡ଼ିକରୁ ଦେଖିବାକୁ ମିଳିଥାଏ । ଦୀର୍ଘ ଗଳ୍ପଗୁଡ଼ିକ ଯେପରି କାହାଣୀଧର୍ମୀ ସେହିପରି ପ୍ରାଣସ୍ପର୍ଶୀ ଏବଂ ମିନି ଗଳ୍ପଗୁଡ଼ିକ ମଧ୍ୟ କାହାଣୀ ବିବର୍ଜିତ ହେଲେହେଁ ଆବେଗଧର୍ମୀ ଏବଂ ପାଠକର ଚିତ୍ତବୃତ୍ତିକୁ ଆଲୋଡ଼ିତ କରିବାରେ ଯଥେଷ୍ଟ ସାହାଯ୍ୟ କରେ । ଆଦର୍ଶଧର୍ମୀ କେତେକ ଗଳ୍ପ ମଧ୍ୟ ବେଶ୍ ଉପଭୋଗ୍ୟ ଏବଂ ପାଠକର ମନରେ ଗଭୀର ରେଖାପାତ କରେ । ଆଧୁନିକ ସମାଜର ବିଭିନ୍ନ ସ୍ତରର ମଣିଷର ଚିତ୍ର ମଧ୍ୟ ଏହି ସଂକଳନରେ ସ୍ଥାନ ପାଇଛି । ଶ୍ରୀ କୃଷ୍ଣଚରଣ ବେହେରାଙ୍କର ବହୁ ସମାଲୋଚିତ "ବେଶ୍ୟା" ଗଳ୍ପ ମଧ୍ୟ ଏଥିରେ ସ୍ଥାନ ପାଇଛି । ଏହା ଅଶ୍ଳୀଳ ଘଟଣାବହୁଳ ହେଲେହେଁ ପାଠକକୁ ଏକ ଚିରନ୍ତନ ସତ୍ୟ

ରାଜ୍ୟକୁ ନେଇଯାଏ । ଅଖିଳମୋହନ ପଟ୍ଟନାୟକଙ୍କର 'ଡମିର ଫୁଲ', କୃଷ୍ଣପ୍ରସାଦ ମିଶ୍ରଙ୍କର 'ନାଏଗ୍ରା ଓ ଦେବଯାନୀ', ପୂର୍ଣ୍ଣାନନ୍ଦ ଦାଶଙ୍କର 'ଅନ୍ଧାରର ଆଲୁଅ', ହରପ୍ରସାଦ ଦାସଙ୍କର 'ଅନ୍ୟଲୋକର କଥା', ମନୋଜ ଦାସଙ୍କର 'ଅନେକ ସିଂଚ ହସ', ସଦାଶିବ ଦାସଙ୍କର 'କ୍ୟାନ୍‌ସର୍', ଗୋପୀନାଥ ମହାନ୍ତିଙ୍କର 'ବଳଆ', ସୁରେନ୍ଦ୍ର ମହାନ୍ତିଙ୍କର 'କବ୍ଧ', ରାଜକିଶୋର ରାୟଙ୍କର 'ମ୍ଳେଚ୍ଛ ନିଧନ', ବୈଷ୍ଣବ ଚରଣ ସାମଲଙ୍କର 'ଏକ ଦୁଇ ତିନ୍', ପ୍ରସନ୍ନ ମିଶ୍ରଙ୍କର 'ଭିଡ୍', ଶାନ୍ତନୁ ଆଚାର୍ଯ୍ୟଙ୍କର 'ମୂଳ' ପ୍ରଭୃତି ଗଳ୍ପଗୁଡ଼ିକ ଗୋଟିଏ ଗୋଟିଏ ସାର୍ଥକ ସୃଷ୍ଟି ।

ଏ ସଂକଳନସ୍ଥ ଗଳ୍ପଗୁଡ଼ିକ ବ୍ୟତୀତ ଆଉ କେତେଜଣଙ୍କର ଗୋଟିଏଲେଖା ଗଳ୍ପ ନେଇଥିଲେ ସଂକଳନଟି ସର୍ବାଙ୍ଗସୁନ୍ଦର ହୋଇ ପାରିଥାନ୍ତା ।

ପ୍ରଚ୍ଛଦପଟ ବେଶ୍ ଉପଭୋଗ୍ୟ ହୋଇପାରିଛି ।

ସଂକଳନର ପ୍ରସାର କାମନା କରୁ ।



## ॥ ପଲ୍ଲବ—୨ ॥

ସମ୍ପାଦନା : ସ୍ନେହଲତା ଦେବୀ
ସରୋଜିନୀ ସାହୁ
ଓ
ଜଗଦୀଶ ମହାନ୍ତି

ମୂଲ୍ୟ : ପଚାଶ ପଇସା

'ପଲ୍ଲବ'ର ପ୍ରଥମ ମିନି ସଂକଳନ ପରେ ଏହି ଦ୍ୱିତୀୟ ସଂକଳନଟିରେ ବୀଣାପାଣି ମହାନ୍ତି, ଅଦ୍ୱୈତ ପ୍ରସାଦ ମହାନ୍ତି, ରତ୍ନାକର ଚଇନି, ପ୍ରସନ୍ନ ପାଟଶାଣୀ, ବୀଣା ମହାପାତ୍ର ପ୍ରମୁଖ ବହୁ ପୁରାତନ ଓ ନବୀନ ଗାଳ୍ପିକଙ୍କର ଗଳ୍ପ ପ୍ରକାଶ ପାଇଛି । ମିନି ଗଳ୍ପ ସଂକଳନରେ "ପଲ୍ଲବ"ର ଉଦ୍ୟମ ପ୍ରଶଂସନୀୟ ।



# ଓଡ଼ିଶା ବୁକ୍ ଷ୍ଟୋର

## ପ୍ରକାଶିତ ଓ ପରିବେଷିତ ସୁନିର୍ବାଚିତ ପୁସ୍ତକାବଳୀ

† ପ୍ରଖ୍ୟାତ ଔପନ୍ୟାସିକ, ବିଭୂତି ପଟ୍ଟନାୟକଙ୍କ

ବଧୂ ନିରୁପମା (ଉପନ୍ୟାସ) ଟ ୨-୫୦

ଉଦାସ ବେଳା ,, ଟ ୬-୫୦

ପରପୁରୁଷ ଟ ୩-୦୦

ଉଜାଣି ଯମୁନା ଟ ୨-୫୦

ତଳିଲ ପାଣିର ଢେଉ ,, ଟ ୪-୫୦

ପ୍ରିୟ ବାନ୍ଧବୀ ଟ ୨-୦୦

ପ୍ରେମ ଓ ପୃଥିବୀ ,, ଟ ୩-୦୦

ରାଜକନ୍ୟା ଓ କୃଷ୍ଣସର୍ପ କଥା ଟ ୪-୫୦

† ବାଗସ୍ମର ଗୋବିନ୍ଦ ଦାସ—

ଅମାବାସ୍ୟାର ଚନ୍ଦ୍ର ଉପନ୍ୟାସ ଟ ୪-୦୦

ମିଶ୍ରରାଗ ଗଳ୍ପ ଟ ୩-୦୦

† ନାଟ୍ୟକାର ଶ୍ରୀ କମଳଲୋଚନ ମହାନ୍ତିଙ୍କ —

ସଂଗ୍ରାମ (ନାଟକ) ଟ ୩-୦୦

ସୁବର୍ଣ୍ଣପୁର ,, ଟ ୩-୦୦

† ଡଃ: ମାୟାଧର ମାନସିଂହ —

ଶିକ୍ଷାବିତ୍‌ର ଗାଥା ଟ୧୦-୦୦

Dreams in Education Rs. 3-00

† ଅଧ୍ୟାପକ ତାରିଣୀ ଚରଣ ଦାସ—

ବିଶ୍ୱ ସାହିତ୍ୟ ସମୀକ୍ଷା ଟ ୨-୫୦

† ଶ୍ରୀମତୀ ତୁଳସୀ ଦାସ—

ଝିଙ୍କର ଝଙ୍କାର ଟ ୩-୫୦

† ଚନ୍ଦ୍ରାମଣି ଜେନା—ମୃଗତୃଷ୍ଣା ଟ ୧-୫୦

କୃଷ୍ଣଚୂଡ଼ା ଟ ୩-୦୦

† ଅଧ୍ୟାପକ ଗଙ୍ଗାଧର ବଳ—

ସାହିତ୍ୟ ଜିଜ୍ଞାସା ଟ ୬-୦୦

ଆତ୍ମ ଦର୍ଶନ ଟ ୬-୦୦

† ବିଚିତ୍ରାନନ୍ଦ କର—ଭିନ୍ନଦୃଷ୍ଟି ଟ ୫-୦୦

† କେଶବଚନ୍ଦ୍ର ମେହେର

ଜୀବନ ଓ ପ୍ରତିଭା ଟ ୪-୫୦

† ଡଃ କୃଷ୍ଣଚରଣ ବେହେରା—

ପ୍ରଗତି ସାହିତ୍ୟ ଟ ୩-୦୦

† କଲ୍ୟାଣୀ ଦେବୀ—

ଅରକ୍ଷଣୀୟ (ଅନୁବାଦ) ଟ ୩-୦୦

† ଉଦୟନାଥ ମିଶ୍ର—ତ୍ରିଷ୍ଟି ଟ ୨-୫୦

† ଶ୍ରୀ ବିରକିଶୋର ଦାସ—

ଶାନ୍ତିର ଶହୀଦ ଲାଲବାହାଦୂର ଟ ୫-୦୦

ବାପୁଜୀଙ୍କ ଅମର ବାଣୀ ଟ ୨-୦୦

† ସୂର୍ଯ୍ୟନାରାୟଣ ଦାସ, ଏମ୍. ଏ.—

ଯୁଗ ସ୍ରଷ୍ଟା ନେହେରୁ ଟ ୨-୫୦

ଯୁଗଜନକ ମହାତ୍ମା ଗାନ୍ଧୀ ଟ୧୦-୦୦

ଯୁଗ ପୁରୁଷ ଗୋପବନ୍ଧୁ ଦାସ ଟ୧୦-୦୦

† ମୁରଲୀ ମୋହନ ଜେନା ଏମ୍ ଏ —

ଓଡ଼ିଆ ସାହିତ୍ୟରୁ କିଛି ଟ ୧୦-୦୦

† ଶ୍ରୀ ବ୍ରଜମୋହନ ମହାନ୍ତି—

ବନ୍ଧୁଏ ନିଆଁ (ଉପନ୍ୟାସ) ଟ ୨-୫୦

କାହାଣୀ ତିନି ବର୍ଷର ,, ଟ ୫-୦୦

† କ୍ଷୀରୋଦ ଚନ୍ଦ୍ର—ଅଫିସରସ୍ କ୍ଲବ ଟ ୨-୫୦

† ପ୍ରବୋଧ କୁମାର — ଉର୍ବଶୀର କାବ୍ୟ ଟ୨-୦୦

†ଆଡ଼ଭୋକେଟ କୁଳମଣି ଜେନା—

ମହାଭାରତ ଟ ୨-୫୦

ରାମାୟଣ ଟ ୨-୦୦

† ରାଜେନ୍ଦ୍ର ବର୍ମା —

ନେତାଜୀ ସୁଭାଷଚନ୍ଦ୍ର ଟ ୨-୦୦

† ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି—

ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ସୋଭିଏଟ,
ଜର୍ମାନୀ ଓ ଇଟାଲିର ଶ୍ରେଷ୍ଠ ଗଳ୍ପ—

ପ୍ରଥମଖଣ୍ଡରୁ ଟ ୪-୦୦

ୟୁରୋପର ଶ୍ରେଷ୍ଠ ଗଳ୍ପ ଟ ୪-୦୦

ପ୍ରାପ୍ତିସ୍ଥାନ—**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦବିହାରୀ, କଟକ-୨ ଓ ଭୁବନେଶ୍ୱର

ଏବଂ **ବିଜୟ ବୁକ୍ ଷ୍ଟୋର,**
ବ୍ରହ୍ମପୁର [ଗଞ୍ଜାମ]

**ପ୍ରକାଶ ପାଉଛି !** **ପଢ଼ନ୍ତୁ !!**

ତରୁଣ ଲେଖକ—ଶ୍ରୀ ସୁଧାକର ଦାସଙ୍କ

## ॥ ଅବଧୂତର ଡାଏରୀ ॥

●

ଏବଂ ପଢ଼ନ୍ତୁ

ଜଗନ୍ନାଥ ଧର୍ମ ସମ୍ବଳିତ ଦାନ୍ତକାର ଦୀର୍ଘ କବିତା

କୁମାର ମହାନ୍ତିଙ୍କର

## ॥ ଅନାମର ଅଣାକାର ॥

## ସୂଚନା

★ ଏହି ଗଳ୍ପ ସଙ୍କଳନରେ କେବଳ ଗଳ୍ପ ଏବଂ ଗଳ୍ପ ସମ୍ବନ୍ଧୀୟ ପ୍ରବନ୍ଧ ଆଲୋଚନା ଗ୍ରହଣ କରାଯାଏ ।

★ ଗଳ୍ପ ସମ୍ବନ୍ଧୀୟ ପୁସ୍ତକ ସମୀକ୍ଷା କରାଯାଏ । କୌଣସି ଗଳ୍ପ ସମ୍ବନ୍ଧୀୟ ପୁସ୍ତକ ସମୀକ୍ଷା ପାଇଁ ଦୁଇଖଣ୍ଡ ପୁସ୍ତକ ପଠାଇବା ଆବଶ୍ୟକ ।

★ ଅମନୋନୀତ ଲେଖା ଫେରସ୍ତ ଦିଆଯାଏ ନାହିଁ । ଏଣୁ ଲେଖକ ଲେଖିକା ମାନେ ନିଜ ଲେଖାର କପି ରଖି ଆମ ନିକଟକୁ ପଠାଇବା ଆବଶ୍ୟକ ।

★ ବିଶେଷ ସଂଖ୍ୟା ବ୍ୟତୀତ ପ୍ରତି ସଂଖ୍ୟାର ମୂଲ୍ୟ ଏକ ଟଙ୍କା । ରେଜିଷ୍ଟ୍ରୀ ଡାକରେ ପାଇବାକୁ ହେଲେ ଅଗ୍ରୀମ ଟ ୧.୦୦ ପଠାଇବା ଆବଶ୍ୟକ ।

★ ଏଜେଣ୍ଟମାନଙ୍କୁ ସାଧାରଣତଃ ଭି. ପି. ପି. ରେ ପଠାଯାଏ ।

★ ବିଜ୍ଞାପନ ଦାତାଙ୍କଠାରୁ ବିଜ୍ଞାପନ ଗ୍ରହଣ କରାଯାଏ ଏବଂ ନିର୍ଦ୍ଧାରିତ ବିଜ୍ଞାପନ ହାର ଆବଶ୍ୟକ ସ୍ଥଳେ ହ୍ରାସ କରାଯାଏ ।



*Editor & Publisher* Shri Sisir Mohapatra.

*Managing Editor* Shri Subash Mahtab.

Office : Jobra Bazar, Cuttack-3, Orissa.

Price Rs. 2.00